JIBAN GANGOTRI-GAON MATI
by Dr.Bidyadhar Mishra
Published by Vidyapuri, Cuttack-753002

ISBN 81-7411-371-1

ପ୍ରଥମ ପ୍ରକାଶ ମେ ୨୦୦୧

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ବିଜୟ କୁମାର ପ୍ରଧାନ

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ରୟାଲ ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୧୦୦ ୦୦

# ମୁଖବନ୍ଧ

ମୋର ଜୀବନର ଅନୁଭୂତି ବିଷୟରେ ମୁଁ ଏହା ପୂର୍ବରୁ ତିନିଗୋଟି ବହି ଲେଖିଛି । ପ୍ରଥମ ବହି, 'ବିକଶିତ ପାଶ୍ଚାତ୍ୟ ଜଗତ', ଲଣ୍ଡନରେ ମୋର ଅଢ଼େଇବର୍ଷ ଅବସ୍ଥାନ ସମୟର ଅନୁଭୂତି, ଇଂଲଣ୍ଡର ପ୍ରାକୃତିକ ପରିବେଶ, ଶିକ୍ଷାପଦ୍ଧତି ଏବଂ ସାମାଜିକ ଜୀବନ, ଫ୍ରାନ୍ସ, ଇଟାଲୀ, ଗ୍ରୀସ୍, ସୁଇଜରଲାଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ା ପ୍ରଭୃତି ଦେଶମାନଙ୍କରେ ଭ୍ରମଣ କାଳରେ ମୋର ଅନୁଭୂତି ବର୍ଣ୍ଣିତ ହୋଇଛି । ଦ୍ୱିତୀୟ ପୁସ୍ତକ 'ନାନୀ'ରେ ମୋ ପରଲୋକଗତା ପତ୍ନୀଙ୍କ ଜୀବନ କାହାଣୀ ସହିତ ଆମ ପରିବାରର ସମ୍ବଲପୁର, କଟକ ଏବଂ ବାଣୀବିହାର ପ୍ରଭୃତି ସ୍ଥାନମାନଙ୍କରେ ରହିବା ସମୟର ଅଭିଜ୍ଞତା ବର୍ଣ୍ଣନା କରାଯାଇଛି । ତୃତୀୟ ବହି 'ବିଂଶଶତାବ୍ଦୀର ଓଡ଼ିଶା-ମୋ ଅନୁଭୂତି'ରେ ଆମ ସମୟ, ବିଂଶ ଶତାବ୍ଦୀରେ ଓଡ଼ିଶାରେ ଘଟିଥିବା ଘଟଣାବଳୀ, ବଢ଼ି, ମରୁଡ଼ି, ଦାରିଦ୍ର୍ୟ, ଦୁର୍ଭିକ୍ଷ, ରାଜା, ଜମିଦାର, ମହାଜନ ପ୍ରଭୃତିଙ୍କର ଅତ୍ୟାଚାର, ଶିକ୍ଷା ଓ ସାମାଜିକ ସମସ୍ୟା ପ୍ରଭୃତି ବିଷୟ ଆଲୋଚିତ ହୋଇଛି । ଏହି ପୁସ୍ତକମାନଙ୍କ ମଧ୍ୟରୁ ଗୋଟିଏ କିମ୍ବା ଅଧିକ, ବିଶେଷତଃ 'ବିଂଶଶତାବ୍ଦୀର ଓଡ଼ିଶା' ବହି ପଢ଼ିଥିବା ମୋର କେତେକ ବନ୍ଧୁ ମୋତେ ଏକାଧିକବାର କହିଛନ୍ତି ଯେ, ଏ ବହିଗୁଡ଼ିକରେ ବିଭିନ୍ନ ବିଷୟରେ ମୋର ଅନୁଭୂତିମାନ ବର୍ଣ୍ଣିତ ହୋଇଛି ସତ, ମାତ୍ର ସେଗୁଡ଼ିକରେ ମୋର ବ୍ୟକ୍ତିଗତ ଜୀବନ, ପରିବାର, ବନ୍ଧୁ, ଶିକ୍ଷକ ଏବଂ ଧାରାବାହିକ ଜୀବନ ଚରିତ ବିଶଦ ଭାବରେ ବର୍ଣ୍ଣିତ ହୋଇ ନାହିଁ ଏବଂ ସେ ସବୁ ବିଷୟମାନଙ୍କରେ ପାଠକର ଅନୁସଂଧିତ୍ସା ପୂରଣ ହୋଇ ନାହିଁ । ସେଥିଯୋଗୁଁ ମୁଁ ଏ ନୂତନ ବହିଟି ଲେଖିବାକୁ ଆରମ୍ଭ କଲି ।

ଲେଖିଲାବେଳକୁ ଚିନ୍ତାକରି ଦେଖିଲି ଯେ, ମୋ ଜୀବନ କେବଳ ଗାଁ ମାଟିରୁ ଆରମ୍ଭ ହୋଇ ନାହିଁ, ଜୀବନର ଶେଷ ପର୍ଯ୍ୟନ୍ତ ତାହା ଗାଁ ମାଟି ସହିତ ଜଡ଼ିତ ହୋଇ ରହିଛି । ଗାଁର ଗୋଟିଏ ଏକାନ୍ନବର୍ତ୍ତୀ ଚାଷୀ ପରିବାରରେ ମୁଁ ବଢ଼ିଥିଲି ଏବଂ ଗାଁର ପ୍ରାଥମିକ ସ୍କୁଲରୁ ମୋର ଶିକ୍ଷା ଆରମ୍ଭ ହୋଇଥିଲା । ଗାଁର ପ୍ରାଥମିକ ଓ ଉଚ୍ଚପ୍ରାଥମିକ ସ୍କୁଲର ଶିକ୍ଷକମାନେ ମୋ ଶିକ୍ଷାର ମୂଳଦୁଆ ପକାଇଛନ୍ତି ଏବଂ ଉଚ୍ଚଶିକ୍ଷାପାଇଁ ମୋତେ ପ୍ରେରଣା ଦେଇଛନ୍ତି । ମୋର ବାଲ୍ୟବନ୍ଧୁମାନେ ସମସ୍ତେ ସେହି ଗାଁର ଲୋକ ଏବଂ ସେଥିରୁ ଅନେକ ଅନଗ୍ରସର ଜାତିର ଲୋକ ଥିଲେ । ସେମାନେ ଶିକ୍ଷାକ୍ଷେତ୍ରରେ ଅଗ୍ରସର ହୋଇ ପାରି ନ ଥିଲେ, ସହର ବଜାରକୁ ଆସି ପାରି ନ ଥିଲେ କିମ୍ବା ଧନୀ ଓ ଶିକ୍ଷିତ ହୋଇ ପାରି ନ ଥିଲେ । ସେମାନେ ସମସ୍ତେ ସେହି ଗାଁ ମାଟିରେ ଜୀବନ କଟାଇ, କାଳ ଗର୍ଭରେ ଲୀନ ହୋଇ

ଯାଇଛନ୍ତି । ଗାଁର ପରିବେଶ ଏବଂ ଗାଁ ଲୋକମାନଙ୍କର ମୂଲ୍ୟବୋଧ ଏବଂ ଚରିତ୍ର ମୋ ଜୀବନକୁ ବିଶେଷ ଭାବରେ ପ୍ରଭାବିତ କରିଛି । ଶେଷଜୀବନ ପର୍ଯ୍ୟନ୍ତ ମୁଁ ଗାଁ ଲୋକଙ୍କୁ ଅତ୍ୟନ୍ତ ଭଲ ପାଇଛି ଏବଂ ଗାଁର ବିଭିନ୍ନ ସମସ୍ୟା ସହିତ ଓତପ୍ରୋତ ଭାବରେ ଜଡ଼ିତ ହୋଇଛି ।

କିଶୋର ବୟସରେ ମୁଁ କଟକ ଆସିଥିଲି ଏବଂ କଟକର ଗଳିକନ୍ଦିରେ ବସା ଘରମାନଙ୍କରେ ରହି ସହରବାସୀଙ୍କ ସାମାଜିକ ଜୀବନ ସହିତ ମିଶି ଯାଇଥିଲି । କଟକର ସର୍ବୋତ୍କୃଷ୍ଟ ବିଦ୍ୟାଳୟ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଚାରିବର୍ଷ ପଢ଼ିଥିଲି ଏବଂ ବିଶ୍ୱମ୍ଭର ମିଶ୍ର, କୁଳମଣି ଦାଶ, ଭୂତନାଥ ରାୟ ଏବଂ ହମିଦ୍ ଖାଁ ପ୍ରଭୃତି ଆଦର୍ଶ ଶିକ୍ଷକଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିଲି । ସ୍କୁଲ ଶିକ୍ଷା ପରେ ମୁଁ ରେଭେନ୍ସା କଲେଜରେ ଚାରିବର୍ଷ ପଢ଼ିଥିଲି ଏବଂ ତାହାର ଗୋଟିଏ ଛାତ୍ରାବାସରେ ଚାରିବର୍ଷଯାକ ରହିଥିଲି । ସେଠାରେ ମୁଁ ଶ୍ୟାମଚନ୍ଦ୍ର ତ୍ରିପାଠୀ, ପ୍ରାଣକୃଷ୍ଣ ପରିଜା, ସଦାଶିବ ମିଶ୍ର, ବିପିନ ବିହାରୀ ରାୟ, ରତ୍ନାକର ପତି, ଭୈରବନାଥ ରୋହାତଗୀ, ବଳଭଦ୍ର ପ୍ରସାଦ ଏବଂ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତି ବହୁ ମହାମନା ଅଧ୍ୟାପକଙ୍କ ନିକଟ ସମ୍ପର୍କରେ ଆସିଥିଲି ଏବଂ ବ୍ରଜବନ୍ଧୁ ମିଶ୍ର, ନୀଳମଣି ରାଉତରାୟ, ରାମକୃଷ୍ଣ ପତି, ବିଜୟ ଦାସ, ବିବୁଧେନ୍ଦ୍ର ମିଶ୍ର, ବୀରେନ୍ଦ୍ର ମୋହନ ପଟ୍ଟନାୟକ ଏବଂ ବନମାଳୀ ପଟ୍ଟନାୟକ ପ୍ରଭୃତି ପରବର୍ତ୍ତୀ କାଳରେ ଓଡ଼ିଶାରେ ପ୍ରତିଷ୍ଠା ଲାଭ କରିଥିବା ବ୍ୟକ୍ତିମାନଙ୍କୁ ଅନ୍ତରଙ୍ଗ ବନ୍ଧୁ ରୂପେ ପାଇଥିଲି ।

ତାହାପରେ ମୁଁ ପାଟନା କଲେଜରେ ଦୁଇବର୍ଷ ପଢ଼ିଥିଲି ଏବଂ ସେଠାରେ ଡକ୍ଟର ଜ୍ଞାନଚାନ୍ଦ, ଅଧ୍ୟାପକ ଗୋରଖନାଥ ସିହ୍ନା ଓ ସଚ୍ଚିନ୍ ଦତ୍ତ ପ୍ରଭୃତି ଅଧ୍ୟାପକଙ୍କ ପ୍ରିୟ ଛାତ୍ର ହୋଇଥିଲି । ପଢ଼ାଶେଷରେ ସମ୍ବଲପୁରର ଗଙ୍ଗାଧର ମେହେର କଲେଜରେ ଆଠ ବର୍ଷ ଅଧ୍ୟାପକ ହିସାବରେ ଚାକିରି କରିବା ସମୟରେ ନାରାୟଣ ମିଶ୍ର, ଗୋଲୋକବିହାରୀ ବାନାର୍ଜୀ, ଘନଶ୍ୟାମ ଦାସ, ପରଶୁରାମ ମିଶ୍ର ଏବଂ ମାୟାଧର ମାନସିଂହ ପ୍ରଭୃତି ଅଧ୍ୟକ୍ଷଙ୍କ ଅଧୀନରେ କାର୍ଯ୍ୟ କରିଥିଲି ଏବଂ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଦାଶରଥି ମିଶ୍ର, ପ୍ରହ୍ଲାଦ ପ୍ରଧାନ, ବଟକୃଷ୍ଣ ମହାନ୍ତି, ସର୍ବେଶ୍ୱର ଦାଶ (ଓଡ଼ିଆ ଅଧ୍ୟାପକ), ସର୍ବେଶ୍ୱର ଦାଶ (ଇଂରାଜୀ ଅଧ୍ୟାପକ) ଏବଂ ସତ୍ୟବାଦୀ ମିଶ୍ର ପ୍ରଭୃତି ବହୁ ଅଧ୍ୟାପକଙ୍କ ଅନାବିଳ ବନ୍ଧୁତ୍ୱ ଲାଭ କରିଥିଲି ।

ସମ୍ବଲପୁରରୁ ରେଭେନ୍ସା କଲେଜକୁ ଆସି ଅଳ୍ପଦିନ ପରେ ମୁଁ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ପିଏଚ୍.ଡି. ଡିଗ୍ରୀ ପାଇଁ ଗବେଷଣା କରିବାକୁ ଯାଇଥିଲି । ସେଠାରେ ଡକ୍ଟର ରେବର୍ଣ୍ଣଙ୍କ ଅଧୀନରେ ଗବେଷଣା କରିଥିଲି ଏବଂ ଅନେକ ବିଶ୍ୱବିଖ୍ୟାତ ଅଧ୍ୟାପକଙ୍କ ଶ୍ରେଣୀ ଓ ପାଠଚକ୍ରମାନଙ୍କରେ ଯୋଗ ଦେଇଥିଲି । ଲଣ୍ଡନରୁ ଫେରି ରେଭେନ୍ସା କଲେଜରେ ମାତ୍ର ଦୁଇବର୍ଷ ଚାକିରି କରିବା ପରେ, ମୁଁ ପ୍ରାୟ ସତର ବର୍ଷ କାଳ

ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରାମ୍ୟ ଅର୍ଥନୀତି ଏବଂ ସମାଜବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ରୂପେ କାର୍ଯ୍ୟକରି ଶେଷରେ ଉତ୍କଳ ବିଶ୍ୱବିଦ୍ୟାଳୟର ତିନିବର୍ଷ କୁଳପତି ହୋଇଥିଲି । ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିବାବେଳେ ଡକ୍ଟର ପରିଜା, ଡକ୍ଟର ସଦାଶିବ ମିଶ୍ର ଏବଂ ଡକ୍ଟର ରମାନାଥ ମହାନ୍ତି ପ୍ରଭୃତି କୁଳପତିମାନଙ୍କ ଅଧୀନରେ କାର୍ଯ୍ୟ କରିଥିଲି ଏବଂ ଅଧ୍ୟାପକ ଓ କୁଳପତି ଥିବାବେଳେ ବାଣୀବିହାରରେ ଅଠର ବର୍ଷ ସପରିବାର ରହିଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟ ମୋ ଜୀବନର ପ୍ରଧାନ କର୍ମସ୍ଥଳ ଥିଲା । କଲେଜମାନଙ୍କରେ ଅଧ୍ୟାପକ ଥିବାବେଳେ ଏବଂ ବିଶ୍ୱବିଦ୍ୟାଳୟ ଅଧୀନରେ ଚାକିରି କରିବାବେଳେ ପ୍ରାୟ ଛତିଶ ବର୍ଷ ମୁଁ ବିଶ୍ୱବିଦ୍ୟାଳୟର ସବୁ କୁଳପତି, ଅଧ୍ୟାପକ, କର୍ମଚାରୀ, ସିନେଟ ଓ ସିଣ୍ଡିକେଟ୍ ସଭ୍ୟମାନଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିଥିଲି । କଲେଜମାନଙ୍କରେ ଏବଂ ବିଶ୍ୱବିଦ୍ୟାଳୟରେ ଚାକିରି କରୁଥିବା ସମୟରେ ଆମ ଗାଁ ଅଞ୍ଚଳର ଶିକ୍ଷାନୁଷ୍ଠାନମାନଙ୍କ ସହ ମଧ୍ୟ ସଂପୃକ୍ତ ଥିଲି ଏବଂ ଅବସର ଗ୍ରହଣ ପରେ ଜଗତ୍‌ସିଂହପୁର କଲେଜର ଗଭର୍ଣ୍ଣିଂବଡ଼ିର ତିନିବର୍ଷ ସଭାପତି ହୋଇଥିଲି । ବାଲ୍ୟକାଳରୁ ଶେଷଜୀବନ ପର୍ଯ୍ୟନ୍ତ ଏହିସବୁ ସ୍ତରରେ ଲାଭ କରିଥିବା ଅଭିଜ୍ଞତାମାନ ଏ ପୁସ୍ତକରେ ବର୍ଣ୍ଣିତ ହୋଇଛି ।

ପୁସ୍ତକର ସାତଗୋଟି ପରିଚ୍ଛେଦରେ ଗ୍ରାମ୍ୟ ଜୀବନ, ପଲ୍ଲୀ ପରିବେଶ, ପଲ୍ଲୀ ଚରିତ୍ର, ସାମାଜିକ ସମସ୍ୟା ଓ ମୂଲ୍ୟବୋଧ ପ୍ରଭୃତି ବର୍ଣ୍ଣିତ ହୋଇଛି । ତିନିଗୋଟି ପରିଚ୍ଛେଦରେ ଉତ୍କଳ ବିଶ୍ୱବିଦ୍ୟାଳୟ ଏବଂ ବାଣୀବିହାରର ଇତିହାସ ଏବଂ ବିଶ୍ୱବିଦ୍ୟାଳୟର ସମସ୍ୟାମାନ ଆଲୋଚିତ ହୋଇଛି । ଗୋଟିଏ ପରିଚ୍ଛେଦରେ ଗଙ୍ଗାଧର ମେହେର କଲେଜ ବିଷୟ ବିଶଦ ଭାବରେ ବର୍ଣ୍ଣିତ ହୋଇଛି ଏବଂ ଅନ୍ୟ ପରିଚ୍ଛେଦମାନଙ୍କରେ କଟକ ସହର, ପାଟନା ସହର, ରେଭେନ୍ସା କଲେଜିଏଟ୍ ସ୍କୁଲ ଏବଂ ରେଭେନ୍ସା କଲେଜ ପ୍ରଭୃତିରେ ମୋର ଜୀବନ ବର୍ଣ୍ଣିତ ହୋଇଛି । ଶେଷରେ ଜଗତ୍‌ସିଂହପୁର କଲେଜରେ ମୋର ଅଭିଜ୍ଞତା ବର୍ଣ୍ଣନା କରାଯାଇଛି । ସାଧାରଣ ଭାବରେ ପୂର୍ବ ପ୍ରକାଶିତ ପୁସ୍ତକମାନଙ୍କରେ ବର୍ଣ୍ଣିତ କୌଣସି ବିଷୟର ଯେପରି ପୁନରାବୃତ୍ତି ନ ହୁଏ, ସେଥିପ୍ରତି ଦୃଷ୍ଟି ଦିଆଯାଇଛି । ଏ ପୁସ୍ତକରେ ବର୍ଣ୍ଣିତ ବିଷୟମାନ ପୂର୍ବ ପ୍ରକାଶିତ ବିଷୟମାନଙ୍କର ପୁନରାବୃତ୍ତି ନ ହୋଇ ସେଗୁଡ଼ିକର ପରିପୂରକ ହୋଇଛି ।

ମୁଁ ଚଳିଥିବା ସମାଜର ପରିବେଶ, ଜୀବନଯାପନ ପ୍ରଣାଳୀ, ଲୋକଚରିତ୍ର ଓ ସମସ୍ୟା ବର୍ଣ୍ଣନା ପୁସ୍ତକର ମୁଖ୍ୟ ଆଭିମୁଖ୍ୟ ହୋଇଛି । ବାଲ୍ୟକାଳରେ ଗାଁରେ ମୋର ଜୀବନ ବର୍ଣ୍ଣନାରେ, ପଲ୍ଲୀ ପରିବେଶ, ଗ୍ରାମ୍ୟ ସମାଜ ଓ ସାମାଜିକ ମୂଲ୍ୟବୋଧ ପ୍ରଭୃତିକୁ ଅଧିକ ପ୍ରାଧାନ୍ୟ ଦିଆଯାଇଛି । ସେହିପରି ଉତ୍କଳ ବିଶ୍ୱବିଦ୍ୟାଳୟ ଏବଂ ବାଣୀବିହାରର ଇତିହାସ ବର୍ଣ୍ଣନାରେ ବିଶ୍ୱବିଦ୍ୟାଳୟର ସମସ୍ୟାମାନଙ୍କର ଆଲୋଚନା ଉପରେ ଅଧିକ ଗୁରୁତ୍ୱ

ଦିଆଯାଇଛି । ଜଗତ୍‌ସିଂହପୁର କଲେଜର ସମସ୍ୟାମାନ କେବଳ ଆମ ରାଜ୍ୟର ବେସରକାରୀ କଲେଜମାନଙ୍କର କାର୍ଯ୍ୟପଦ୍ଧତିର ନମୁନାସ୍ୱରୂପ ବର୍ଣ୍ଣନା କରାଯାଇଛି ।

ଏ ପୁସ୍ତକର କେତେକ ତଥ୍ୟ ସଂଗ୍ରହ କରିବାରେ ଓଡ଼ିଶା ସଚିବାଳୟରେ ଅବସରପ୍ରାପ୍ତ ଅନୁଶାସନ ସଚିବ ଶ୍ରୀ ପରମାନନ୍ଦ ମିଶ୍ର ମୋତେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଦେଉଛି ଏବଂ କଟକର ବିଦ୍ୟାପୁରୀ ପୁସ୍ତକ ପ୍ରକାଶନ ଅନୁଷ୍ଠାନର ଅଧିକାରୀ ଶ୍ରୀ ପୀତାମ୍ବର ମିଶ୍ର ଏ ପୁସ୍ତକ ପ୍ରକାଶ କରିବାକୁ ରାଜି ହୋଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି ।

ଭୁବନେଶ୍ୱର — ବିଦ୍ୟାଧର ମିଶ୍ର

୨୦ ଜାନୁୟାରୀ ୨୦୦୧

# ସୂଚୀପତ୍ର

# ମୂଲ୍ୟବୋଧ

ସତୁରି ବାସ୍ତରି ବର୍ଷ ତଳର କଥା । ସେତେବେଳେ ମୁଁ ଆଠ ନଅ ବର୍ଷର ପିଲା । ଗାଁ ନିମ୍ନପ୍ରାଥମିକ ସ୍କୁଲରେ ପଢୁଥିଲି । ସେତେବେଳେ ମୁଁ ଆମ ଗାଁରେ ଏବଂ ଆମ ସାହିରେ ତିନି ପୁରୁଷର ଲୋକଙ୍କୁ ଦେଖୁଥିଲି । ପ୍ରଥମ ପୁରୁଷରେ ଆମ ସାହିରେ ସାତ ଆଠ ଜଣ ବୁଢ଼ାଲୋକ ଥିଲେ । ସେମାନଙ୍କର ସମସ୍ତଙ୍କର ବୟସ ଷାଠିଏ ବର୍ଷ ଉପରେ । ସେମାନଙ୍କ ବ୍ୟତୀତ ସେ ସମୟରେ ଆମ ଗାଁରୁ ଏବଂ ଅନ୍ୟ ଗାଁମାନଙ୍କରୁ ବ୍ରାହ୍ମଣ ଓ ଅବ୍ରାହ୍ମଣ ପନ୍ଦର କୋଡ଼ିଏ ଜଣ ସେହି ବୟସର ଲୋକ ଆମ ଘରକୁ ଅନେକ ସମୟରେ ଆସନ୍ତି । ମୁଁ ସେମାନଙ୍କୁ ସମସ୍ତଙ୍କୁ ଚିହ୍ନିଥାଏ । ସେମାନଙ୍କ ପରପୁରୁଷର ଲୋକ ଆମ ଗାଁରେ ଓ ନିକଟବର୍ତ୍ତୀ ଗାଁରେ ଅନେକ ଥା'ନ୍ତି । ସେମାନେ ଉପରୋକ୍ତ ବୁଢ଼ା ଲୋକଙ୍କ ପୁଅ, ପୁତୁରା, ଜ୍ୱାଇଁ, ଭଣଜା ଇତ୍ୟାଦି । ସେମାନଙ୍କ ବୟସ ସବୁ ପଇଁତିରିଶରୁ ପଇଁଚାଳିଶ ମଧ୍ୟରେ । ତାଙ୍କ ତଳ ପୁରୁଷର ଲୋକ ସମସ୍ତେ ପିଲା । ସେମାନେ ବୁଢ଼ାଲୋକମାନଙ୍କର ନାତିନାତୁଣୀ ଏବଂ ମଝି ପୁରୁଷର ଲୋକମାନଙ୍କର ପୁଅଝିଅ ।

ଦଦେଇ ଆମର ତାଙ୍କ ଯୁବକ ଅବସ୍ଥାରେ ଅମିନ ଥିଲେ । କିନ୍ତୁ ଅତି ପିଲାଦିନୁ ମୁଁ ତାଙ୍କୁ ଦେଖିଲାବେଳକୁ ସେ ବୁଢ଼ା ହୋଇ ଯାଇଥିଲେ । ସେ ଘରେ ଥା'ନ୍ତି, ସମ୍ପତ୍ତିବାଡ଼ି ଓ ମହାଜନୀ କାରବାର କଥା ବୁଝନ୍ତି । ମୋ ନନା (ବାପା) ମଧ୍ୟ ତାଙ୍କ ଯୁବକ ଅବସ୍ଥାରେ ଲୁଗା ଦୋକାନ କରିଥିଲେ ବୋଲି ଶୁଣିଛି । ମାତ୍ର ମୋ ପିଲାଦିନକୁ ସେ ମଧ୍ୟ ବୁଢ଼ା ହୋଇଯାଇଥା'ନ୍ତି । ଘରେ ରହି କେବଳ ଚାଷବାସ କଥା ବୁଝନ୍ତି । ଆମ ପରିବାର ନନା ଦଦେଇଙ୍କର ଏକାନ୍ନବର୍ତ୍ତୀ ପରିବାର ଥିଲା । ପରିବାରର କୋଡ଼ିଏ ପଚିଶ ଏକର ଜମି ଥିଲା । ସେଥିରୁ ଅନେକ ଜମି ଭାଗରେ ବା ସଞ୍ଜାରେ ଚାଷ ହୋଇଥାଏ; ପ୍ରାୟ ଦଶ ଏକର ଜମି ହାତରେ ଚାଷ ହେଉଥାଏ । ଆମ ଘରସବୁ ମାଟି କାନ୍ଥ, ଛଣଛପର ଘର ଥିଲା । ମାତ୍ର ଚାରିଟା ଅଗଣା ଥାଏ ଏବଂ ଚଳିବାକୁ ଜାଗା ପ୍ରଶସ୍ତ ଥାଏ । ଘରେ ଅନେକ ପିଲା ଥା'ନ୍ତି । ମୁଁ ପିଲାଥିବା ଆଗରୁ ମୋର ତିନି ଭଉଣୀ ଏବଂ ଦଦେଇଙ୍କର ଗୋଟିଏ ଝିଅ ବିଭାହୋଇ ଶାଶୁଘର ଯାଇସାରିଥାନ୍ତି । ତଥାପି ମୁଁ ପିଲା ଥିବାବେଳେ ଆମ ପରିବାର ଗୋଟିଏ ବଡ଼ ପରିବାର ଥାଏ ଏବଂ ସେଥିରେ ପିଲାଛୁଆ ମିଶି ପନ୍ଦର ଷୋହଳ ଲୋକ ଥା'ନ୍ତି । ଚାଷକାମ କରିବାକୁ କୋଠିଆମାନଙ୍କ ବ୍ୟତୀତ ଘରେ ଦୁଇତିନି ଜଣ ଚାକର ସବୁବେଳେ ଥା'ନ୍ତି । ଘରେ ଗୋରୁଗାଈ ମଧ୍ୟ ଅନେକ ଥା'ନ୍ତି । ମୋଟ ଉପରେ ଆମ ପରିବାରଟି ଗାଁରେ ଗୋଟିଏ ସ୍ୱଚ୍ଛଳ ଚାଷୀ ପରିବାର ଥିଲା । ଜମି ପରିମାଣ ଟିକିଏ

ବେଶୀ ଥିବାରୁ ଏବଂ କିଛି ମହାଜନୀ କାରବାର ଥିବାରୁ ଗାଁରେ ଆମ ପରିବାରର ପ୍ରତିପତ୍ତି ଥିଲା ।

ଆମ ସାହିର ଅନ୍ୟ ସାତଆଠ ପରିବାରର ଜମି ପରିମାଣ ପାଞ୍ଚ ଏକରରୁ କମ୍ ଥିଲା । ଗୋଟିଏ ଦୁଇଟି ପରିବାରର ମଧ୍ୟ ଜମି ପରିମାଣ ମୋଟେ ଦୁଇ ଏକର ପାଖାପାଖି ଥିଲା । ସେମାନେ ଚାଷବାସ କରି ନଡ଼ିଆ ପଇଡ଼ ବିକି କୌଣସିମତେ ଚଳି ଯାଉଥିଲେ । ଉଚ୍ଚ ବ୍ରାହ୍ମଣ ଜାତିର ଲୋକ ଥିବାରୁ ଚଳିବା ପାଇଁ କାହାରି ଦ୍ୱାରସ୍ଥ ହୁଅନ୍ତି ନାହିଁ । ଧାର କରଜ ମଧ୍ୟ ବେଶୀ କରନ୍ତି ନାହିଁ ।

ଗାଁର ବୁଢ଼ା ଲୋକଙ୍କର ଚଳଣି ମୁଁ ସେତେବେଳେ ଲକ୍ଷ୍ୟ କରିଥିଲି । ସମସ୍ତେ ମୁଣ୍ଡରେ ଛୋଟ ଚୁଟି ରଖିଥିଲେ ଏବଂ ନୈଷ୍ଠିକ ଭାବରେ ଚଳୁଥିଲେ । ପୋଖରୀରେ ଗାଧୁଅନ୍ତି, ମାତ୍ର ଗାଧୋଇଲାବେଳେ ମନ୍ତ୍ର ବୋଲୁଥାନ୍ତି – 'ଗଙ୍ଗେଚ ଯମୁନେ ଚୈବ, ଗୋଦାବରୀ ସରସ୍ୱତୀ ନର୍ମଦେ ସିନ୍ଧୁ କାବେରୀ, ଜଳେସ୍ମିନ୍ ସନ୍ନିଧିଂ କୁରୁ' ଗାଧୋଇସାରି ଓଦା ଗାମୁଛା କଛା ମାରି ପିନ୍ଧି ଗ୍ରାମଦେବୀ ଅମ୍ବିକାକୁ ବନ୍ଦନା କରି ନମସ୍କାର କରନ୍ତି । ଘରକୁ ଯାଇ ତୁଳସୀ ଚଉରାରେ ପାଣି ଦିଅନ୍ତି, ତାପରେ ଧୁଆ ହୋଇଥିବା ଶୁଖିଲା ଲୁଗା କିମ୍ବା କେହି କେହି ମଠା ବା ପାଟଲୁଗା ପିନ୍ଧି ଦିଅଁ ଗାଧୁଅନ୍ତି ଓ ପୂଜା କରନ୍ତି ଏବଂ ତାପରେ ଭାଗବତ ଏକ ଅଧ୍ୟାୟ ପାଠ କରନ୍ତି । ତାହାପରେ ଜଳଖିଆ ବା ପଖାଳଭାତ ଯାହାର ଯାହା ଥାଏ ଖାଆନ୍ତି । ବେଳବୁଡ଼େ ସନ୍ଧ୍ୟା କରନ୍ତି । ସନ୍ଧ୍ୟାପରେ ବିଶେଷତଃ ଆମ ଦାଣ୍ଡପିଣ୍ଡାରେ ପ୍ରତିଦିନ ପୁରାଣ ପାଠ ହୁଏ । ପୁରାଣ ମଧ୍ୟରେ ରାମାୟଣ, ମହାଭାରତ, ହରିବଂଶ ଓ ନୃସିଂହ ପୁରାଣ ପ୍ରଭୃତି ବୋଲାହୁଏ । ସାହିପଡ଼ିଶାର ଅନେକ ସ୍ତ୍ରୀ ଓ ପୁରୁଷ ଲୋକ ପିଣ୍ଡାମାନଙ୍କରେ ବସି ପୁରାଣ ଶୁଣନ୍ତି । ସନ୍ଧ୍ୟାବେଳେ ଭାତ ତରକାରି ରନ୍ଧା ହେବା ପରେ, ଦିଅଁପୂଜା ନ ହେଲେ, ଛୁଆପିଲା ସମେତ କେହି ଖାଆନ୍ତି ନାହିଁ । ଆଜିକାଲି ପରି ସେକାଳେ ରେଡ଼ିଓ ନ ଥିଲା । ଟେଲିଭିଜନ ତ ଆମେ ବୁଢ଼ାହେବା ପର୍ଯ୍ୟନ୍ତ ଦେଖି ନ ଥିଲୁ । ସେକାଳେ ତାର ନାମ ଶୁଣା ନ ଥିଲା । ବୟସ୍କ ଲୋକମାନେ ସେ ସମୟରେ ପିଲାମାନଙ୍କୁ ଖୁବ୍ ଆକଟ କରୁଥିଲେ । ବୟସ୍କ ଲୋକମାନଙ୍କ ମଧ୍ୟରେ ମଧ୍ୟ ମଝିରେ ମଝିରେ ବିଭିନ୍ନ ବିଷୟରେ କଳିଗୋଳ ଓ ଯୁକ୍ତିତର୍କ ହେଉଥିଲା । ମାତ୍ର କେହି କାହା ଉପରେ ହାତ ଲଗାଇ ମାରିବା ମୁଁ ଦେଖି ନାହିଁ । ସହନଶୀଳତା, ଧର୍ମଭାବ, ଈଶ୍ୱର ବିଶ୍ୱାସ, ପରସ୍ପର ପ୍ରତି ସହାନୁଭୂତି ସେମାନଙ୍କର ଉତ୍କୃଷ୍ଟ ଗୁଣ ଥିଲା । ସେମାନେ କଥାବାର୍ତ୍ତାରେ ସଂଯତ ଥିଲେ ଏବଂ ଗୁରୁଜନମାନଙ୍କୁ ଭକ୍ତି କରୁଥିଲେ ।

ବୁଢ଼ାମାନଙ୍କର ତଳ ପୁରୁଷର ଲୋକମାନଙ୍କର ନୈଷ୍ଠିକତା ଟିକିଏ କମ୍ ଥିଲା । ସେମାନେ ସମସ୍ତେ ଚୁଟି କାଟିଦେଇଥାନ୍ତି । ସେମାନଙ୍କ ମଧ୍ୟରୁ କେତେକ ମାଇନର କିମ୍ବା ମଧ୍ୟଓଡ଼ିଆ ପଢ଼ି ପ୍ରାଥମିକ ସ୍କୁଲରେ ଶିକ୍ଷକ ହୋଇଥା'ନ୍ତି । କେହି କେହି ମଧ୍ୟ ସଂସ୍କୃତ ଟୋଲ୍‌ରେ ପଢ଼ିଥା'ନ୍ତି । ଆଉ ଜଣେ ଦୁଇଜଣ ଅମିନ ଚାକିରି କରିଥା'ନ୍ତି । ସେ ସମୟଟା ୧୯୨୦ ମସିହାଠାରୁ ୧୯୨୮ ମସିହା ସମୟ । ସେତେବେଳକୁ ଇଂରେଜୀ ଶିକ୍ଷା ଆମ

ଗାଁରେ ପଶିଲାଣି । ମାତ୍ର ପୂରା ଗାଁରେ କେବଳ ଜଣ ଆଇ.ଏ. ଏବଂ ଆଉ ଜଣେ ମାଟ୍ରିକ୍ୟୁଲେସନ୍ ପାସ୍ କରିବା ପରେ ଶିକ୍ଷକ ଟ୍ରେନିଂ ପରୀକ୍ଷାରେ ପାସ୍ କରିଥିଲେ । ଆମ ସାହିରେ କେବଳ ମୋର ବଡ଼ଭାଇ ରେଭେନ୍ସା କଲେଜରୁ ଆଇ.ଏସସି. ପାସ୍ କରି ପାଟନାରେ ଇଞ୍ଜିନିଅରିଂ କଲେଜରେ ପଢୁଥିଲେ । ସେ ଆମ ଗାଁରେ ସବୁଠାରୁ ଅଧିକ ଉଚ୍ଚଶିକ୍ଷିତ ବ୍ୟକ୍ତି ହୋଇଥିଲେ ।

ସେତେବେଳକୁ ଭାରତବର୍ଷରେ ଗାନ୍ଧିଜୀଙ୍କ ଆବିର୍ଭାବ ହେଲାଣି ଏବଂ ଅସହଯୋଗ ସ୍ୱାଧୀନତା ଆନ୍ଦୋଳନ ଚାଲିଲାଣି । ମାତ୍ର ୧୯୩୦ ମସିହା ପୂର୍ବରୁ ଆମ ଗାଁରେ ସ୍ୱାଧୀନତା ଆନ୍ଦୋଳନର ପ୍ରଭାବ ଖୁବ୍ କମ୍ ପଡ଼ିଥିଲା । ଆମ ଗାଁ ଗୋଟିଏ ବ୍ରାହ୍ମଣ ପ୍ରଧାନ ଗାଁ ହୋଇ ମଧ୍ୟ ସେଥିରେ ଉଚ୍ଚଶିକ୍ଷାର ପ୍ରସାର ଖୁବ୍ କମ୍ ଥିଲା । ଗାଁ ପାଖରେ ପୋଷ୍ଟଅଫିସ ବା ମାଇନର ସ୍କୁଲ ନ ଥିଲା । ଅନ୍ୟ ବ୍ରାହ୍ମଣେତର ଜାତି ପ୍ରଧାନ ଗାଁମାନଙ୍କରେ ଉଚ୍ଚଶିକ୍ଷା ମୋଟେ ପ୍ରବେଶ କରି ନ ଥିଲା । ଗାଁର ସମାଜ ପୂର୍ବବତ୍ ରକ୍ଷଣଶୀଳ ରୀତିରେ ଚାଲିଥିଲା । ପୂର୍ବରୁ ଚାଲି ଆସିଥିବା ପରିବାର ଚଳଣି କେହି ଭାଙ୍ଗିବାକୁ ସାହସ କରୁ ନ ଥିଲେ । ଗୁରୁଜନମାନଙ୍କ କଥା କେହି ଭାଙ୍ଗି ପାରୁ ନ ଥିଲେ । ମୋର ମନେହେଉଛି ସେଥିଯୋଗୁଁ ପୁରୁଷାନୁକ୍ରମେ ଚଳିବା ପଦ୍ଧତି ଏବଂ ମୂଲ୍ୟବୋଧରେ ପରିବର୍ତ୍ତନର ଗତି ଅତି ଶିଥିଳ ଥିଲା । ସମାଜରେ ରକ୍ଷଣଶୀଳତାର ପ୍ରାଧାନ୍ୟ ଅଧିକ ଥିଲା । ଆଜିକାଲିଠାରୁ ସେ ସମୟରେ ଗାଁ ଲୋକମାନଙ୍କର ନାମସବୁ ଭିନ୍ନ ଥିଲା । ସେତେବେଳେ ବୁଢ଼ାମାନଙ୍କର ଓ ତାଙ୍କ ପିଲାମାନଙ୍କର ନାମସବୁ ଥିଲା ନାରାୟଣ, ଅଲେଖ, ପ୍ରାଣକୃଷ୍ଣ, ବାସୁଦେବ, ଆନନ୍ଦ, ପରିକ୍ଷିତ, ନରହରି, ରଘୁନାଥ, ଦୀନବନ୍ଧୁ, କୃପାସିନ୍ଧୁ ଇତ୍ୟାଦି । ପ୍ରକାଶ, ପ୍ରସନ୍ନ, କୈଳାସ, ସୁରେଶ, ସୁଭାଷ, ସତୀଶ ପ୍ରଭୃତି ନାମ ଗାଁରେ ପଶି ନ ଥିଲା । ଏ ନାମସବୁ ବଙ୍ଗାଳୀ ଲୋକମାନଙ୍କ ପ୍ରଭାବରୁ ଉଦ୍‌ଭବ । ତୃତୀୟ ପୁରୁଷର ପିଲାମାନଙ୍କ ମଧ୍ୟରେ ଏପରି ନାମ ସବୁ ପଶିଲା । ସେହିପରି ଝିଅମାନଙ୍କର ନାମସବୁ ସୀତା, ସାବିତ୍ରୀ, ଦ୍ରୌପଦୀ, ସରସ୍ୱତୀ, ମୋତି, ମୁକ୍ତା, ଚାନ୍ଦ, ଚମ୍ପା, ମଲ୍ଲି ପ୍ରଭୃତି ଥିଲା । ଆଶା, ସ୍ନିଗ୍ଧା, ମାୟା, ଅନୁପମା, ନିରୂପମା ଇତ୍ୟାଦି ନାମସବୁ ପଶି ନ ଥିଲା । ସନ୍ତାନର ମା ହେବା ପରେ ସ୍ତ୍ରୀ ଲୋକମାନଙ୍କୁ ସମସ୍ତେ ପୁଅ, ଝିଅଙ୍କ ମା ନାମରେ ଡାକୁଥିଲେ । ଯଥା : ଦୟାବୋଉ, ଲକ୍ଷିଆବୋଉ, ପଦୁଆଁବୋଉ, ଗଉରୀବୋଉ ଇତ୍ୟାଦି ।

ମୋ ପିଲାଦିନେ ଆମ ସାହିରେ ଷାଠିଏ ବର୍ଷରୁ ଅଧିକ ବୟସର ସ୍ତ୍ରୀଲୋକଙ୍କୁ ମୁଁ ବେଶି ଦେଖୁ ନ ଥିଲି । ବୁଢ଼ାଲୋକ ମଧ୍ୟରୁ କେତେକଙ୍କ ସ୍ତ୍ରୀ ଆଗରୁ ମରି ଯାଇଥିଲେ । ପଚାଶରୁ ଷାଠିଏ ବର୍ଷ ବୟସର କେତେକ ବିଧବା ଲୋକ ମଧ୍ୟ ଆମ ସାହିରେ ଥିଲେ । ସ୍ତ୍ରୀଲୋକମାନଙ୍କ ଚାଲିଚଳଣିରେ ବହୁ ପ୍ରକାର ପ୍ରତିବନ୍ଧକ ଥିଲା । ନୂଆ ହୋଇ ଶାଶୁଘରକୁ ଆସିଥିବା ବୋହୂ କିପରି ଓଢ଼ଣା ଦେବ, ଚିଟା ମୁରୁଜ ପକାଇବ, କାହା ସଙ୍ଗରେ କଥାବାର୍ତ୍ତା କରିବ, ସେସବୁ ଗତାନୁଗତିକ ଥିଲା । ବୋହୂ ସ୍ୱାମୀର ବଡ଼ଭାଇଙ୍କ ସହିତ ଜୀବନଯାକ କଥା କହିବ ନାହିଁ । ତାଙ୍କ ଅଇଁଠା ଛୁଇଁବ ନାହିଁ, ତାଙ୍କ ଛାଇ ମାଡ଼ିବ

ନାହିଁ ପ୍ରଭୃତି ପ୍ରଥା ଆଜିଯାଏ ସୁଦ୍ଧା ଅଛି । ସେକାଳେ ବୋହୂ ଶାଶୁଘରକୁ ଆସିଲେ ବହୁକାଳ ଯାଏ ଶାଶୁ, ବଡ଼ଯାଆ ପ୍ରଭୃତିଙ୍କ ସଙ୍ଗରେ ମଧ୍ୟ କଥା କହିବାକୁ ମନା ଥିଲା । ଅନେକ ବର୍ଷ ଶାଶୁଘରେ ଚଳିବା ପରେ ଏବଂ ସନ୍ତାନର ମା ହେବା ପରେ ଗାଁର ଅନ୍ୟ ସ୍ତ୍ରୀଲୋକମାନଙ୍କ ସହିତ ସାଧାରଣ ଭାବେ କଥାବାର୍ତ୍ତା ହେବା ଏବଂ ଗପସପ କରିବା ଚଳନୀୟ ଥିଲା । ବୋହୂମାନେ ଦଶପନ୍ଦର ବର୍ଷଯାଏ ମଧ୍ୟ ନିଜ ପରିବାରର ପୁରୁଷ ଗୁରୁଜନଙ୍କ ସହିତ କଥାବାର୍ତ୍ତା କରୁ ନ ଥିଲେ ।

ମୋତେ ସାତ ଆଠ ବର୍ଷ ବୟସ ହେବାବେଳକୁ ମୁଁ ଆମ ଘରେ ମୋ ବୋଉ ଦେଠେଇ ଏବଂ ଦୁଇଜଣ ବଡ଼ଭାଉଜଙ୍କ ଚାଲିଚଳଣି ଲକ୍ଷ୍ୟ କରିଥିଲି । ମୋ ବୋଉର ବୟସ ସେତେବେଳକୁ ପଚାଶ ପାଖାପାଖି ହୋଇଥିଲା । ଦେଠେଇଙ୍କୁ ମଧ୍ୟ ପଞ୍ଚାବନ ପାଖାପାଖି ବୟସ ହୋଇଥିଲା । ସେମାନଙ୍କର ଶାଶୁ ଶ୍ୱଶୁର ସେତେବେଳକୁ ମରି ଯାଇଥିଲେ । ବୋଉ ଦେଠେଇଙ୍କ ମଧ୍ୟରେ ବେଶି କଳିକଜିଆ ଲାଗେ ନାହିଁ । ମନୋମାଳିନ୍ୟ ମନ ଭିତରେ ରହିଯାଏ । ବୋହୂମାନେ ଶାଶୁ, ଖୁଡ଼ୀଶାଶୁଙ୍କ ସହିତ କଜିଆ କରନ୍ତି ନାହିଁ । ଦେଠେଇ ଯଦିଓ ମୋ ବୋଉଠାରୁ ମାନ୍ୟରେ ଏବଂ ବୟସରେ ବଡ଼ ଥିଲେ, ମୁଁ ଦେଖୁଥିଲି ଯେ ମୋ ବୋଉର ଆମ ଘରେ ସବୁ କାର୍ଯ୍ୟରେ ପ୍ରତିପତ୍ତି ଅଧିକ ଥିଲା, ଦଦେଇ ଘରର ମୁରବି ଥିଲେ ଏବଂ ଘରର ସମ୍ପତ୍ତିବାଡ଼ିର ସବୁ କଥା ବୁଝୁଥିଲେ । ମୋ ନନା ବଡ଼ଭାଇଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲେ । ସେ ଘରର କୌଣସି କଥା ବୁଝନ୍ତି ନାହିଁ । କେବଳ କେଉଁ ଜମିରେ କଣ ଚାଷ ହେବ, ମୂଲିଆ ଚାକର ଆସିଲେ କି ନାହିଁ, ବିଲରେ ସେମାନେ ଠିକ୍ କାମ କରୁଛନ୍ତି କି ନାହିଁ ସେହି କଥା ବୁଝନ୍ତି । ଅନ୍ୟଦିଗରେ ଦେଠେଇ ଘରର କର୍ତ୍ତ୍ରୀ ହୋଇ ସୁଦ୍ଧା, ଘର କଥା ବିଶେଷ କିଛି ବୁଝିପାରନ୍ତି ନାହିଁ । ସେଥିଯୋଗୁଁ ମୋ ବୋଉ ଆପେ ଆପେ କର୍ତ୍ତ୍ରୀ ହୋଇଯାଇଥିଲେ । ମନୁଷ୍ୟର ଗୁଣ ଓ ଶକ୍ତି ଅନୁସାରେ ସେ ଆପେ ଆପେ ବିଭିନ୍ନ କାମରେ ଲାଗିଯାଏ ଏବଂ ପରିବାରରେ କିମ୍ବା ସମାଜରେ ବିଭିନ୍ନ ଦାୟିତ୍ୱ ବହନ କରେ ।

ମୋର ବୋଉ କିଛି ପାଠ ପଢ଼ି ନ ଥିଲା ମାତ୍ର ଗୋଟିଏ ବଡ଼ ପରିବାର ଚଳାଇବା ପାଇଁ ତାର ସମସ୍ତ ଶକ୍ତି ଓ ଗୁଣ ଥିଲା । ଘରେ ବିଭିନ୍ନ ମାସରେ ଆବଶ୍ୟକ ଚାଉଳ, ଡାଲି ପ୍ରସ୍ତୁତ ହେଲା ନା ନାହିଁ; ପ୍ରତିଦିନ ଘରକୁ କିଏ କୁଣିଆଁ ମଇତ୍ର ଆସିଲେ, ପ୍ରତିଦିନ କଣ ଏବଂ କେତେ ପରିମାଣ ରନ୍ଧା ହେବ, ଘରେ ପୁନିଅଁ ପରବରେ କଣ କରାଯିବ, ବନ୍ଧୁବାନ୍ଧବମାନଙ୍କ ଘରକୁ ବିଭିନ୍ନ ଉତ୍ସବରେ କଣ ଭାର ବେଭାର ଦିଆଯିବ, ଗାଈମାନେ ଖାଇଲେ କି ନାହିଁ, କ୍ଷୀର ଦୁହାଁ ହେଲା କି ନାହିଁ, ପିଲାମାନେ ଏବଂ ଘରର ବିଭିନ୍ନ ଲୋକ ଖାଇଲେ କି ନାହିଁ, କାହାର ଦେହ ଖରାପ ହୋଇଯାଇଛି କି, ଗୋଟିଏ ଏକାନ୍ନବର୍ତ୍ତୀ ପରିବାରର ଏ ସବୁ କଥା ବୁଝେ ଏବଂ ଏସବୁ ବିଷୟରେ ପୁଅ, ପୁତୁରା, ବୋହୂ ଓ ଚାକର ଚାକରାଣୀ ସମସ୍ତେ ତାର ପରାମର୍ଶ ନେଇ କାର୍ଯ୍ୟ କରନ୍ତି । ତାର ନିଜର କିଛି ମହାଜନୀ କାରବାର ଥାଏ । ତାର ହିସାବଟା ସେ ଲେଖିପାରେ ନାହିଁ, ମାତ୍ର ସବୁ ମନେ ରଖିଥାଏ ।

ଘରେ କୌଣସି ପିଲାର ବିବାହ କିମ୍ବା ଉପନୟନ ହେଲେ ଆମ ଘରେ ସାହିପଡ଼ିଶା, ବନ୍ଧୁବାନ୍ଧବଙ୍କ ସମେତ ଦୁଇ ଚାରିଶ ଲୋକଙ୍କ ସମାଗମ ଓ ଖିଆପିଆ ହୁଏ । ରନ୍ଧାବଢ଼ା ଓ ଖିଆପିଆ କାମ ସବୁ ସେ ତୁଲାଏ । ନିମିତ୍ତପର୍ବରେ ରନ୍ଧାବଢ଼ା କାମ ପୁରୁଷ ଲୋକ କରୁ ନ ଥିଲେ ସବୁ ସ୍ତ୍ରୀଲୋକମାନେ କରୁଥିଲେ । ପୁରୁଷ ଲୋକମାନେ କେବଳ ପରଷି ଦିଅନ୍ତି । ବୋଉ ଖଞ୍ଜାଶାଳେ ବସି ରାନ୍ଧୁଣୀମାନଙ୍କ କାର୍ଯ୍ୟ ଟିକିନିଖି ଭାବରେ ଦେଖେ । ଲୁଣ, ମସଲା ପକାଇବା ପ୍ରଭୃତି ସମସ୍ତ କାମ ରାନ୍ଧୁଣୀମାନେ ତାକୁ ପଚାରି କରନ୍ତି । ବୋଉ ଭଲ ରନ୍ଧା ଜାଣେ ବୋଲି ଆମ ଗାଁରେ ତାର ଖ୍ୟାତି ଥିଲା, ସେଥିଯୋଗୁଁ ଆମର ଜ୍ଞାତିକୁଟୁମ୍ବ କିମ୍ବା ଗାଁରେ ଥିବା ବନ୍ଧୁବାନ୍ଧବଙ୍କର ନିମିତ୍ତ ହେଲେ ସେମାନେ ପ୍ରଥମେ ଆସି ବୋଉକୁ ନିମନ୍ତ୍ରଣ କରିନିଅନ୍ତି । ବୋଉ ସବୁ ରନ୍ଧାବଢ଼ାର ବରାଦ କରିଦିଏ ଏବଂ ଖଞ୍ଜାଶାଳେ ବସି ଅନ୍ୟ ସ୍ତ୍ରୀଲୋକମାନଙ୍କୁ ବିଭିନ୍ନ କାମ କରିବାକୁ ନିର୍ଦ୍ଦେଶ ଦିଏ । ଆଜିକାଲି ମହିଳାମାନଙ୍କ ବିଭିନ୍ନ କାର୍ଯ୍ୟରେ ଯୋଗଦେବା ଦେଖି ମୋର ମନେହୁଏ ଯେ ମୋ ବୋଉ ପାଠ ପଢ଼ିଥିଲେ ଏବଂ ସାଧାରଣ କାମରେ ଯୋଗ ଦେଇଥିଲେ ଅକ୍ଳେଶରେ ଜଣେ ନେତ୍ରୀ ହୋଇଥା'ନ୍ତା । ପୁରୁଷ ହୁଅନ୍ତୁ ବା ମହିଳା ହୁଅନ୍ତୁ ସମସ୍ତେ ସବୁ କାର୍ଯ୍ୟ କରିପାରନ୍ତି ନାହିଁ । ତାଲିମ୍ ପାଇ, ସମୟକ୍ରମେ କାମ କରିବା କିମ୍ବା ଦାୟିତ୍ୱ ବହନ କରିବା ଶିଖିଯାନ୍ତି । ମାତ୍ର ଚାଲାଖଚତୁର ହେବା, କାର୍ଯ୍ୟଦକ୍ଷ ହେବା, ଦାୟିତ୍ୱ ତୁଲାଇବା କ୍ଷମତା ପ୍ରଭୃତି ଅନେକ ସମୟରେ ପ୍ରକୃତିଦତ୍ତ ଗୁଣ ହୋଇଥାଏ ।

ମୋ ବୋଉ ମଧ୍ୟ ଅନେକ ରୋଗର ବିଶେଷତଃ ଛୋଟ ପିଲାମାନଙ୍କର ବିଭିନ୍ନ ରୋଗର ଚେର ଓ ମୂଳମୂଳିକା ଔଷଧ ଜାଣିଥାଏ । ଅନେକ ଲୋକ ତା ପାଖକୁ ଆସି ବିଭିନ୍ନପ୍ରକାର ଔଷଧ ନିଅନ୍ତି । ବୋଉ ସାଙ୍ଗରେ ମୁଁ ବହୁବାର ମୋର ମାମୁ ଘରକୁ ଯାଇଛି । ମାମୁଘର ଆମ ଘରଠାରୁ ଅସ୍ୱଚ୍ଛଳ ଥିଲେ । ମୁଁ ଦେଖେ, ମାମୁଙ୍କ ଗାଁରେ ବିଭିନ୍ନ ବ୍ରାହ୍ମଣ ଓ ବ୍ରାହ୍ମଣେତର ଲୋକଙ୍କ ସାହିରେ ଲୋକେ ବୋଉକୁ ବିଶେଷ ସମ୍ମାନ ଦେଖାଉଥିଲେ । ବୋଉର ପିଲାଦିନେ ନାମ ଥିଲା ଚମ୍ପା । ସୁତରାଂ ମାମୁ ଗାଁରେ ବୋଉକୁ ସମସ୍ତେ ଚମ୍ପାନାନୀ ବୋଲି ଆଦର କରନ୍ତି ଏବଂ ମୋତେ ଚମ୍ପାନାନୀ ପୁଅ ବୋଲି ସମସ୍ତେ କହନ୍ତି । ସେକଥା ଶୁଣି ମୋତେ ରାଗ ଲାଗେ । ମୋର ନନାଙ୍କ ନାମ ନ କହି ମୋତେ ଚମ୍ପାନାନୀ ପୁଅ କହିବା ଆଦୌ ଭଲ ଲାଗେ ନାହିଁ । ଆମ ଗାଁରେ ସମସ୍ତେ ବୋଉକୁ ଡାକନ୍ତି ପଦୁଆଁବୋଉ କାରଣ ତାର ପ୍ରଥମ ଝିଅ, ଆମ ବଡ଼ନାନୀର ନାମ ଥିଲା 'ପଦ୍ମା' । ସେଥିଯୋଗୁଁ ଗାଁର କେଉଟୁଣୀ, ଗଉଡୁଣୀ, ଗୁଡ଼ିଆଣୀ, ଧୋବଣୀ ଠାରୁ ଆରମ୍ଭ କରି ଆମ ସାହିର ତା ବୟସର କିମ୍ବା ତା'ଠାରୁ ବଡ଼ ସ୍ତ୍ରୀଲୋକମାନେ ସମସ୍ତେ ତାକୁ ଡାକନ୍ତି 'ପଦୁଆଁବୋଉ' । ତା'ଠାରୁ ସାନ ପୁରୁଷ ଓ ସ୍ତ୍ରୀଲୋକମାନେ ତାକୁ ମାଉସୀ, ଖୁଡ଼ୀ, ଦେଠେଇ, ନୂଆବୋଉ ପ୍ରଭୃତି ସମ୍ପର୍କ ଅନୁସାରେ ଡାକନ୍ତି ।

ମୋ ବୋଉର ଆଉ ଗୋଟିଏ ଦୁଇଟି ମହତ ଗୁଣ ମୁଁ ଆଜିଯାଏ ମନେ ରଖିଛି, ମୋର ଦଦେଇପୁଅ ଭାଇଙ୍କ ସ୍ତ୍ରୀଙ୍କର ଅଳ୍ପ ବୟସରେ ବିୟୋଗ ହେଲା । ମଲାବେଳକୁ ତାଙ୍କର

ତିନିଗୋଟି ବଡ଼ ପିଲା ଏବଂ ମାତ୍ର ଛଅମାସର ଗୋଟିଏ ଝିଅ ଥିଲା । ଆମ ଘରେ ବଡ଼ ପିଲାମାନଙ୍କର ଚଳିବାର କିଛି ଅସୁବିଧା ନ ଥିଲା । ଦୁଇଟି ଝିଅଙ୍କର ବିବାହ ହୋଇଥିଲା । ପୁଅଟି ମଧ୍ୟ ଆଠ ନଅ ବର୍ଷର ହୋଇଯାଇଥିଲା । ଘରେ ଅନ୍ୟ ପିଲାମାନେ ଥିଲେ । ସୁତରାଂ ସମସ୍ତଙ୍କ ସଙ୍ଗରେ ମିଶି ଏ ପିଲାମାନେ ଯେପରି ଚଳୁଥିଲେ ସେହିପରି ଚଳିବେ । କେବଳ ସେହି ଛଅମାସର ଝିଅଟି ପାଇଁ ଚିନ୍ତା ପଡ଼ିଲା । ତାର ଜଣେ ପିଇସୀ ଥିଲେ ଏବଂ ଜଣେ ବିଧବା ଖୁଡ଼ୀ ବି ଥିଲେ । ସେମାନେ ସ୍ୱଚ୍ଛନ୍ଦରେ ତାକୁ ରଖି ପାରିଥାନ୍ତେ । ଯେଉଁ ଭାଉଜ ମରିଗଲେ, ସେ ବଞ୍ଚିଥିବା ବେଳେ ବୋଉ ତାଙ୍କ ଉପରେ ଚିଡ଼ିଚିଡ଼ି ହୁଏ, କାରଣ ସେ କାମଧନ୍ଦା କିଛି କରିପାରନ୍ତି ନାହିଁ, କିନ୍ତୁ ସେ ମରିବାମାତ୍ରେ ମୋ ବୋଉ ସେ ଝିଅଟିକୁ ତା କୋଳକୁ ନେଲା ଏବଂ ଅତି ଯତ୍ନରେ ପାଳିଲା । ମା ମଲା ପିଲାଟାଏ ବୋଲି ଘରର ଅନ୍ୟ ସମସ୍ତେ ସେ ଛୁଆଟିକୁ ଅତ୍ୟନ୍ତ ଗେହ୍ଲା କଲେ । ସେ ଝିଅକୁ ପ୍ରାୟ ପଞ୍ଚଷଠି ବର୍ଷ ହେଲାଣି । କଟକରେ ତାର ସ୍ୱାମୀଘରେ ସୁଖରେ ଅଛି । ତାର ମଧ୍ୟ ଅନେକ ନାତିନାତୁଣୀ ହେଲେଣି, ଜୀବନଯାକ ତାର ମା ମରିଯାଇଛି ବୋଲି ସେ କେବେ ଦୁଃଖ କରି ନାହିଁ । ମୋ ବୋଉ ନିଜ ପିଲାଙ୍କ ଠାରୁ ତାକୁ ଅଧିକ ଯତ୍ନ କରୁଥିଲା ।

ବୋଉ ଦୁଃଖୀରଙ୍କୀଙ୍କୁ ସାହାଯ୍ୟ କରିବାକୁ ସବୁବେଳେ ତତ୍ପର ଥିଲା । ମୁଁ ପିଲାବେଳେ ଦେଖୁଥିଲି, ବହୁ ଗରିବ ଲୋକ ଆମ ଘରକୁ ଆସନ୍ତି । ବୋଉକୁ କହନ୍ତି, 'ମାଉସୀ ପିଲାଏ ଦୁଇଦିନ ହେଲା ଉପବାସରେ ଅଛନ୍ତି । ଘରେ ଚାଉଳ ନାହିଁ କି ମୋ ପାଖରେ ପଇସା ନାହିଁ, ଛଅମାଣ ଚାଉଳ ଧାର ଦେଇଥା, ମୁଁ ଅଳ୍ପଦିନ ପରେ ପଇସା ଦେଇଦେବି ।' ବୋଉର ଆଖି ଛଳଛଳ ହୋଇଯାଏ । ଚାଉଳ ନ ଦେଇ କାହାରିକୁ ଫେରାଇ ଦିଏ ନାହିଁ । ଧାର ନେଇଥିବା ଲୋକମାନେ ମଧ୍ୟ ତାର ବିଶ୍ୱାସ ରଖନ୍ତି । ବୋଉକୁ କେହି ଠକି ଦିଅନ୍ତି ନାହିଁ ।

ବହୁ ଯୋଗୀ ଭିକାରି ପ୍ରତିଦିନ ଆମ ଘରକୁ ଆସନ୍ତି । ଭିକାରିକୁ ଭିକ ନ ଦେଇ ଫେରାଇଦେବା ଆମ ସମାଜରେ ଚଳଣି ନାହିଁ । ଆମ ଘରେ ଗୋଟିଏ ହାଣ୍ଡିରେ ଭିକାରିଙ୍କ ପାଇଁ ଚାଉଳ ଥୁଆ ହୋଇଥାଏ । ଭିକାରି ଡାକିଲେ ଯେ ପାଖରେ ଥାଏ, ସେ ହାଣ୍ଡିରୁ ଦୁଇମୁଠା ଚାଉଳ ତାକୁ ଦେଇଦିଏ । ସକାଳ ନଅଟା ବା ଦଶଟାବେଳକୁ ଆସନ୍ତି ଗୁଡ଼ାଏ କେଳା କେଲୁଣୀ । କେଲୁଣୀମାନେ ସାଧାରଣତଃ ମୋଟୀ ମୋଟୀ ସ୍ତ୍ରୀଲୋକ ହୋଇଥା'ନ୍ତି । ଛୁଞ୍ଚିସୂତା, ଅଳତା, ସିନ୍ଦୂର ବେପାର କରନ୍ତି ଓ ଭିକ ମାଗନ୍ତି, ଡାକନ୍ତି, 'ଏ ପୁଅମା, ଗେଡ଼ୀନାନୀ, ଭିକ ଦିଅ ।' ସେମାନଙ୍କର ରୂପଭେକ ଓ ବେଶପୋଷାକ ଦେଖିଲେ, ଭିକାରି ବୋଲି ଦୟା ହୁଏ ନାହିଁ । ସେମାନେ ଭିକ ନେଇ ଚାଲିଯାଆନ୍ତି, ସାଧାରଣତଃ ଖାଇବାକୁ ମାଗନ୍ତି ନାହିଁ । ତା'ପରେ ବାରଟା ପାଖାପାଖି ସମୟରେ ଅନେକ ଦିନ ଆସନ୍ତି ସାପୁଆ କେଳା ବା ସଖୀନଚା କେଳା । ସେମାନଙ୍କ ଖେଳ ଦେଖିବାପାଇଁ ବହୁପିଲା ଆମ ଦାଣ୍ଡ ପିଣ୍ଡାରେ ବସିଥା'ନ୍ତି । ସେମାନେ ସାଧାରଣ

କେତେଙ୍କଠାରୁ ଟିକିଏ ଅଧିକ ପଇସା ଓ ଚାଉଳ ଦାବି କରନ୍ତି । ସେମାନେ ମଧ୍ୟ ପଇସା ଓ ଚାଉଳ ନେଇ ଚାଲିଯାନ୍ତି । ଅଧିକାଂଶ ଖାଇବାକୁ ମାଗନ୍ତି ନାହିଁ । ତାହାପରେ ଗୋଟାଏ ସାଢ଼େ ଗୋଟାଏ ବେଳକୁ ଆସନ୍ତି ଜଣେ ଦୁଇଜଣ ଯୋଗୀ । ସବୁଦିନେ ଏକାଲୋକ ଆସନ୍ତି ନାହିଁ । ସେମାନେ ଅତି କରୁଣ ରାଗରେ ବୋଲନ୍ତି—

'ଭଜୁକିନା ରାମ ନାମରେ ଗୋବିନ୍ଦ ଭଜୁକିନା ରାମନାମ
ଭଜି ନ ପାରିଲେ କୁଳ ଚନ୍ଦ୍ରମାରେ ଦଣ୍ଡିନେବ କାଳଯମ
ସେହି କାଳଯମ ବଡ଼ ଦାରୁଣରେ ନ ଜାଣଇ ସୁଖଦୁଃଖ
ବାଛିନେବ କଞ୍ଚା ରଖିବ ପାଚିଲା ଦେବଟି ଦାରୁଣ ଦୁଃଖ' ।

ସେମାନେ ସବୁବେଳେ ଖାଇବାକୁ ମାଗନ୍ତି । ଖାଇବା ବେଳଟାରେ ସେମାନେ ଆସନ୍ତି ଏବଂ କେଉଁ ଘରମାନଙ୍କରେ ଖାଇବାକୁ ମିଳିବ ସେମାନେ ଜାଣନ୍ତି । ସେମାନଙ୍କର କଂସାଏ ବା ଦେଢ଼କଂସା ଭାତ ଧରିବା ପରି ଶୁଖିଲା ଲାଉଥାଳ ଥାଏ । ଡାଲି ତରକାରି ପ୍ରଭୃତି ଖାଇବା ପାଇଁ ମଧ୍ୟ ଛୋଟ ଛୋଟ ଥାଳ ଥାଏ, ସେମାନଙ୍କୁ ଖାଇବାକୁ ଦେବାକୁ ବୋଉର ସବୁଦିନେ ବରାଦ ଥାଏ । ସେ ନିଜେ ଆଣି ଥାଳ ପୂରାଇ ପଖାଳ ଭାତ ଓ ଯାହା ତରକାରିପତ୍ର ହୋଇଥାଏ ଦେଇଦିଏ । ନିଜେ କାର୍ଯ୍ୟବ୍ୟସ୍ତ ଥିଲେ ଭିକାରିଙ୍କୁ ଖାଇବାକୁ ଦେବାକୁ ବୋହୂମାନଙ୍କୁ କହିଦିଏ । ଯୋଗୀ ଭିକାରି ଖାଇବାବେଳେ ଆମେ ସେମାନଙ୍କ ପାଖରେ ବସି ତାଙ୍କ ଖାଇବା ଦେଖୁ । ଦୁଃଖୀରଙ୍କୀକୁ ସାହାଯ୍ୟ କରିବା ଏବଂ କ୍ଷୁଧାର୍ତ୍ତକୁ ଖାଇବାକୁ ଦେବାପାଇଁ ତା ହୃଦୟରେ ସବୁବେଳେ ଥାଏ ଦୟା ଓ କରୁଣା । ପରିବାରର ସେବା କରିବା, ପିଲାମାନଙ୍କୁ ସ୍ନେହ କରିବା, ଦୁଃଖୀ ଦରିଦ୍ରଙ୍କୁ ଦୟା କରିବା, ଭାରତୀୟ ପରମ୍ପରାରେ ନାରୀମାନଙ୍କର ଅତି ମହତ୍ ଗୁଣ । ମୋ ବୋଉର ସେ ଗୁଣମାନ ଥିଲା । ଫକୀରମୋହନଙ୍କ ଆତ୍ମଜୀବନୀ ଚରିତରେ ତାଙ୍କର ଠାକୁରମା'ଙ୍କର ଚରିତ୍ର ପଢ଼ିବାବେଳେ ମୋର ସବୁବେଳେ ମୋ ବୋଉ କଥା ମନେପଡ଼େ ।

# ପାରମ୍ପରିକ ଗୋଷ୍ଠୀ ଜୀବନ

ପିଲାଦିନେ ଆମ ଗାଁରେ ମୁଁ ଦେଖିଥିଲି ଯେ ଲୋକମାନେ ଯେଉଁ ପଦ୍ଧତିରେ ଚଳୁଥିଲେ, ତାହା ସେମାନେ ନିଜର ସୁବିଧା ଅସୁବିଧା ପାଇଁ ନିଜେ ଗଢ଼ି ନ ଥିଲେ କିମ୍ବା ତାହାର ଭଲମନ୍ଦ ପାଇଁ ନିଜେ ବିଚାର କରୁ ନ ଥିଲେ । ସେ ପରମ୍ପରା, ପରିବାର, ଜାତି, ବୃହତ୍ ଗୋଷ୍ଠୀ ଏବଂ ତାହା ମଧ୍ୟରେ ଥିବା କ୍ଷୁଦ୍ର ଗୋଷ୍ଠୀ, ଗାଁ କୋଠ ସମ୍ପତ୍ତି, ସାହି ସମ୍ପତ୍ତି, ସେଥିରେ ପରିବାରର ଭାଗ, ଜାତି ଜାତି ମଧ୍ୟରେ ସମ୍ପର୍କ, ପ୍ରତି ଜାତିର କରଣୀୟ ଏବଂ ଅକରଣୀୟ କାର୍ଯ୍ୟନୀତି, ଅନୀତି, ପୁନିଅଁପରବ ସବୁ ଧରାବନ୍ଧା ଗତ ରୂପେ ଆଗରୁ ଚାଲିଥିଲା, ଯାହାଙ୍କର ପର୍ଯ୍ୟାଲୋଚନା କରି ଆମେ କହୁଛୁ ହିନ୍ଦୁ ଚଳିବା ପଦ୍ଧତି ଓ ଗ୍ରାମ ଗୋଷ୍ଠୀ ଜୀବନ । ସେ ଜୀବନ ପଦ୍ଧତି ଶହ ଶହ ବର୍ଷ ଧରି ଚାଲିଆସିଛି । ଖାଲି ଆମ ଗାଁରେ ନୁହେଁ, ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ଯେଉଁ ଗାଁକୁ ଯିବ ସେଠାରେ ସେହିପରି ପୂର୍ବ ପରମ୍ପରା ଚାଲିଛି । ସବୁ ଧର୍ମରେ ଓ ସବୁ ସମାଜରେ ସେହିପରି ପରମ୍ପରା ଅଛି । ବ୍ୟକ୍ତି ତାହାରି ମଧ୍ୟରେ ଜନ୍ମ ହେଉଛି । ସେହି ପାରମ୍ପରିକ ପଦ୍ଧତିରେ ଜୀବନ ଯାପନ କରୁଛି । ଶେଷରେ ସେ ପରମ୍ପରାକୁ ଉତ୍ତରପୁରୁଷ ହାତକୁ ବଢ଼ାଇଦେଇ ନିଜର ଜୀବନ ଶେଷ କରୁଛି । ପୁରୁଷ ପରେ ପୁରୁଷର ଲୋକ ସେ ସମାଜକୁ ଆସୁଛନ୍ତି । କେହି ସେ ପରମ୍ପରା ବାହାରକୁ ଗଲେ କିମ୍ବା ବଳପୂର୍ବକ ତାକୁ ଭାଙ୍ଗିଦେବାକୁ ଚାହିଁଲେ ତାକୁ ରକ୍ଷା କରୁଥିବା ଲୋକ, ଯେଉଁମାନଙ୍କୁ ଆମେ କହୁଛୁ ରକ୍ଷଣଶୀଳପନ୍ଥୀ, ସେମାନେ ତାକୁ ବାଧା ଦିଅନ୍ତି । ଦୁଇହଜାର ବର୍ଷ ତଳେ ଇହୁଦି ସମ୍ପ୍ରଦାୟର ରକ୍ଷଣଶୀଳ ଲୋକେ ଯିଶୁଖ୍ରୀଷ୍ଟଙ୍କୁ ଫାଶୀଖୁଣ୍ଟରେ କଣ୍ଟା ମାରିଦେଲେ । ଆମ ଦେଶରେ ମଧ୍ୟ ପୁରାକାଳରେ ରାଜାମାନେ ସମାଜବିପ୍ଳବୀମାନଙ୍କୁ ଫାଶୀ ଦେଉଥିଲେ କିମ୍ବା ଜେଲ୍ ମଧ୍ୟରେ ବନ୍ଦୀ କରି ରଖୁଥିଲେ । ମାତ୍ର ବହୁ ପୁରାକାଳରୁ ଆମ ଦେଶର ଗ୍ରାମଗୋଷ୍ଠୀମାନଙ୍କରେ ସାମାଜିକ ବାସନ୍ଦ ସାମାଜିକ ବିଦ୍ରୋହୀମାନଙ୍କ ପାଇଁ ପ୍ରଧାନ ଦଣ୍ଡ ହୋଇଛି । କେହି ସାମାଜିକ ପରମ୍ପରା ଭାଙ୍ଗିଲେ ତାହାର ନିଆଁ ପାଣି, ଧୋବା, ଭଣ୍ଡାରି, ଠାକୁର, ପୁରୋହିତ, ଭୋଜିଭାତ ବନ୍ଦ କରି ଦିଆଯାଏ । ବିକଳ୍ପ ବ୍ୟବସ୍ଥାର ଅଭାବରେ, ଏଗୁଡ଼ିକ ପୂର୍ବକାଳରେ ଖୁବ୍ କାର୍ଯ୍ୟକାରୀ ହେଉଥିଲା। ମାତ୍ର ଆଜିକାଲି ପରି ଘରେ ଦିଆସିଲି ରଖିଲେ, ବାଡ଼ିରେ କୂଅ ଖୋଳିଲେ, ଗ୍ୟାସ ଓ ବିଜୁଳିଶକ୍ତି ବ୍ୟବହାର କଲେ, ନିଆଁ ପାଣି ବନ୍ଦର କିଛି ଅର୍ଥ ନାହିଁ । ସେହିପରି ଗାଁରୁ ବାହାରି ସହରକୁ ଚାଲିଗଲେ ଧୋବା ଭଣ୍ଡାରି ଯଥେଷ୍ଟ ମିଳିବେ । ତଥାପି ଶବସଂସ୍କାର ନ କରିବା, ଶୁଦ୍ଧିକ୍ରିୟା ପ୍ରଭୃତି ବନ୍ଦ କରିବା ଇତ୍ୟାଦି ଦଣ୍ଡ ଆଜିକାଲି ସୁଦ୍ଧା କାର୍ଯ୍ୟକାରୀ ହୋଇପାରୁଛି ।

ନୀଳକଣ୍ଠ ଦାସ ସମାଜ ସଂସ୍କାର ନମୁନାସ୍ୱରୂପ ଗୋଟିଏ ନିଶ ଆନ୍ଦୋଳନ ଚଳାଇଥିଲେ । କେଡ଼େ ଛୋଟିଆ କଥାଟାଏ । ଜଣେ ନିଶଟାଏ ରଖିଲେ ବା ନ ରଖିଲେ, ଚୁଟି ରଖିଲେ ବା କାଟି ପକାଇଲେ, ଅନ୍ୟମାନଙ୍କର ସେଥିରେ କଣ ଲାଭ ବା କ୍ଷତି ହେଉଛି ? ତଥାପି ସେହି କଥା ଉପରେ ବହୁ ବାଦାନୁବାଦ ହେଲା ଏବଂ ସାମାଜିକ ବାସନ୍ଦ କରାଗଲା, କାରଣ ତାହା ସାମାଜିକ ପଦ୍ଧତିର ବାହାର କଥାଟାଏ ହୋଇଥିଲା ।

ପଚାଶ ବର୍ଷ ତଳେ ମୁଁ ନିଜେ ଏପରି ଗୋଟିଏ ଆନ୍ଦୋଳନ ଚଳାଇ ଅପଦସ୍ତ ହୋଇଥିଲି । ମୁଁ ସେତେବେଳେ ସମ୍ବଲପୁର କଲେଜରେ ଚାକିରି କରୁଥିଲି । ଗ୍ରୀଷ୍ମଛୁଟିରେ ଗାଁରେ ରହୁଥିଲି । ଆମଆଡ଼େ ପରମ୍ପରା ଅଛି ଯେ ବ୍ରାହ୍ମଣମାନେ ହଳ କରନ୍ତି ନାହିଁ । ଉଚ୍ଚ ଜାତିର ଲୋକମାନେ ହରିଜନ ପ୍ରଭୃତି ଜାତିର ଲୋକମାନଙ୍କ ମୁଣ୍ଡକୁ ବୋଝଟାଏ ଟେକିଦିଅନ୍ତି ନାହିଁ । ଆମେ ପଂଝାଏ ଯୁବକ ଲୋକମାନଙ୍କୁ କହିଲୁ, ଏହି କଥା କେଉଁ ଶାସ୍ତ୍ରରେ ଲେଖା ହୋଇଛି ? ଜଣେ ଲୋକ ଅନ୍ୟଜଣକ ମୁଣ୍ଡକୁ ବୋଝଟିଏ ଉଠାଇଦେଲେ ସେଥିରେ କଅଣ ପାପ ହେଲା ? ଯାହାର ମୋଟେ ଏକରେ ଦୁଇ ଏକର ଜମି ଅଛି, ଘରେ ହଳ ବଳଦ ରଖିଛି, ମୂଲିଆ ଲଗାଇବାକୁ ସମ୍ବଳ ନାହିଁ, ଚାଷ ଯଦି ତାର ବ୍ୟବସାୟ ହେଲା, ଜମିରେ ରୋଇଲେ, ବାଛିଲେ, ଫସଲ କାଟିଲେ ଯଦି କିଛି ଦୋଷ ନାହିଁ, ତେବେ ହଳ କରିଦେଲେ ଦୋଷ କ'ଣ ? ଆମେ ସୂଚନାତ୍ମକ ଭାବରେ ହଳ କରି ଦେଲୁ ଏବଂ ଜାତି ନିର୍ବିଶେଷରେ ଜଣେ ଅନ୍ୟଜଣକ ମୁଣ୍ଡକୁ ବୋଝ ଟେକିଦେଲୁ । ଅନେକ ଲୋକ ଆମକୁ ସମର୍ଥନ କଲେ, ମାତ୍ର ଆଉ ଅନେକ ଲୋକ ଆମକୁ ଘୋର ବିରୋଧ କଲେ । ସେ ବିବାଦରେ ଗାଁରେ ହଳୁଆ ନିହଳୁଆ ଦୁଇ ଦଳ ହୋଇଗଲେ ।

ଛୁଟି ସରିଯିବାରୁ, ମୁଁ ସମ୍ବଲପୁର ଚାଲିଗଲି । ପୂଜା ଛୁଟିରେ ଗାଁକୁ ଆସି ଦେଖିଲି ଯେ ଗାଁରେ କେହି ଦୁଇ ଦଳଙ୍କ ମଧ୍ୟରେ ବହୁ ବିବାଦ ଲାଗିଛି । ସେ ବିଷୟ ବାହାରେ ଅନ୍ୟ ବିଷୟମାନଙ୍କରେ ବହୁ କଳିକଜିଆ ଲାଗିଛି । କଳିର ପ୍ରଧାନ କାରଣ ଦୁଇ ଦଳଙ୍କ ମଧ୍ୟରେ ମତଭେଦ ଓ ମନୋମାଳିନ୍ୟ । ମୁଁ ଅନୁତାପ କଲି ଏବଂ ଭାବିଲି ତୁଚ୍ଛାଟାରେ ଆମେ ଗାଁଟାରେ ଏପରି ବିବାଦ ସୃଷ୍ଟି କଲୁ । ସେ ସମସ୍ୟା ସମାଧାନ ପାଇଁ ଆମେ ଦୁଇ ଦଳର ମୁଖିଆ ଲୋକଙ୍କର ଗୋଟିଏ ସଭା କଲୁ । ସଭାରେ ଆମେ ଦୁଇ ଦଳଙ୍କୁ ଅନୁରୋଧ କଲୁ ଯେ, ଦୁଇଦଳ ମିଶିଯାଅ, ଇଚ୍ଛା ହେଲେ ହଳ କର ନ ହେଲେ ନ କର । ଫଳରେ ଦୁଇ ଦଳ ମିଶିଗଲେ ଏବଂ ତାହା ପରେ କେହି ହଳ କରିବା କଥା ଉଠାଇଲେ ନାହିଁ । ଆଗରୁ ଯେଉଁ ପଦ୍ଧତି ଥିଲା, ଆଜିଯାଏ ମଧ୍ୟ ସେହି ପଦ୍ଧତି ଚାଲିଛି, କିନ୍ତୁ କେହି କାହା ମୁଣ୍ଡକୁ ବୋଝଟିଏ ଟେକିଦେବାରେ ବାରଣ ନାହିଁ ।

ପରିସ୍ଥିତି ବଦଳିଗଲେ ଅନେକ ପଦ୍ଧତି ଆପେ ଆପେ ଲୋପ ପାଇଯାଏ । କିନ୍ତୁ ବଳପୂର୍ବକ ବା ଜିଦ୍ କରି ଭାଙ୍ଗିଲେ ବହୁ କନ୍ଦଳ ଉପୁଜେ । ଆମ ପିଲାଦିନେ ଉପନୟନ ପରେ ଚଳୁ ନ କରି ଖାଇଲେ କିମ୍ବା ଅନ୍ୟ ଜାତି ଲୋକଙ୍କ ପଙ୍ଗତରେ ଖାଇଲେ ବାସନ୍ଦ ଭୋଗିବାର ଆଶଙ୍କା ଥିଲା । ମାତ୍ର ବହୁକାଳ ହେଲା ଆମେ ସହରରେ ଚଳୁଛୁ । ଯାହାର

ବିଶ୍ୱାସ ହେଉଛି ସେ ଚଳୁ କରୁଛି, ଅନ୍ୟମାନେ ଚଳୁ କରୁ ନାହାନ୍ତି । ଆମ୍ଭେମାନେ ସବୁ ଜାତି ଓ ଧର୍ମର ଲୋକମାନଙ୍କ ସହିତ ପଙ୍ଗତରେ ଖାଉଛୁ । ଗାଁ ସମାଜରେ ଲୋକମାନେ ସେ କଥା ଦେଖୁଛନ୍ତି ଏବଂ ଜାଣୁଛନ୍ତି । କିନ୍ତୁ ବାସନ୍ଦର ପ୍ରଶ୍ନ ନାହିଁ । ମୁଁ ଶୁଣିଛି ଯେ ଆମ ଇତିହାସ ଅଧ୍ୟାପକ ଘନଶ୍ୟାମ ଦାଶ ବିଲାତରୁ ଫେରି ସମ୍ବଲପୁର ବ୍ରାହ୍ମଣ ସମାଜରେ ମିଶିବା ପାଇଁ ଗୋଟିଏ ପ୍ରାୟଶ୍ଚିତ୍ତ କରିଥିଲେ । ମାତ୍ର ଆମେ ବିଲାତରେ ଏବଂ ପୃଥିବୀର ବହୁ ଖ୍ରୀଷ୍ଟିଆନ୍ ଓ ମୁସଲମାନ ଦେଶମାନଙ୍କରେ ବହୁକାଳ ରହିଲୁ । ଖାଦ୍ୟ ଅଖାଦ୍ୟ ସବୁ ଖାଇଲୁ । ଫେରିକରି ପୁଣି ସ୍ୱାଭାବିକ ଭାବରେ ଆମ ସମାଜରେ ମିଶିଲୁ । ପିଲାମାନଙ୍କର ବିବାହ ଓ ଉପନୟନ, ପିତୃଶ୍ରାଦ୍ଧ ଓ ଶୁଦ୍ଧିକ୍ରିୟା ପ୍ରଭୃତି କଲୁ । ସେଥିରେ ବାସନ୍ଦ କିମ୍ବା ପ୍ରାୟଶ୍ଚିତ୍ତର ପ୍ରଶ୍ନ ଉଠି ନାହିଁ । ସୁତରାଂ ପରିସ୍ଥିତି ବଦଳିଗଲେ ପଦ୍ଧତି ଆପେ ଆପେ ବଦଳିଯାଏ । ସେଥିପାଇଁ ବାଦବିବାଦ ଲାଗେ ନାହିଁ ।

ସେ ଯାହାହେଉ, ଆମ ପିଲାଦିନେ ଆମ ପିଲାମାନଙ୍କ ପାଇଁ ଏବଂ ସବୁ ବୟସର ଲୋକମାନଙ୍କ ଚଳିବା ପାଇଁ ଧରାବନ୍ଧା ନିୟମ ଥିଲା । ବର୍ଷକଯାକ ପରମ୍ପରାଗତ ପୁନିଅଁ ପରବ କେଉଁ ଦିନ ହେବ ତାହା ପାଞ୍ଜିରେ ଲେଖା ହୋଇଥାଏ । ଆଜିକାଲି ମଧ୍ୟ ସେହିପରି ପାଞ୍ଜିରେ ଲେଖା ହେଉଛି । ପାଞ୍ଜି ପଣାସଂକ୍ରାନ୍ତିଠାରୁ ଅନ୍ୟ ପଣାସଂକ୍ରାନ୍ତି ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୁଏ । କିନ୍ତୁ ତାହା ପୂର୍ବରୁ ଦୋଳପୂର୍ଣ୍ଣିମା ଦିନ ଦୋଳ ବେଦି ଉପରେ ନାହାକ ଆସନ୍ତା ବର୍ଷର ପାଞ୍ଜି ପାଠ କରେ । ସବୁ ଜାତିର ଲୋକ ଆଗ୍ରହ ସହିତ ତାହା ଶୁଣନ୍ତି । ପାଞ୍ଜି ପାଠକ ଆସନ୍ତା ବର୍ଷର ଗ୍ରହଣ ଓ ପରାଗ ବିଷୟତ କୁହେ, ତାହା ବ୍ୟତୀତ ପାଣିପାଗ ଓ ଫସଲ ଅବସ୍ଥା ବିଷୟରେ ମଧ୍ୟ ସୂଚନା ଦିଏ । ଆସନ୍ତା ବର୍ଷ ସୁଖସମୃଦ୍ଧିର ବର୍ଷ ହେବ କିମ୍ବା ଅନଟନର ବର୍ଷ ହେବ ତାହା ମଧ୍ୟ କହିଦିଏ । ବର୍ଷର ଅଢ଼ା କେଳୁଣୀ, ଗଉଡୁଣୀ କିମ୍ବା ବ୍ରାହ୍ମଣୀ କାହା ହାତରେ ରହିବ ତାହା କହେ । ବିଚିତ୍ର କଥା ଯେ ଲୋକମାନେ ବିଶ୍ୱାସ କରନ୍ତି ଯେ କେଳୁଣୀ ହାତରେ ଅଢ଼ା ରହିଲେ ଦେଶର ସମୃଦ୍ଧି ବଢ଼େ, ଗଉଡୁଣୀ ହାତରେ ଅଢ଼ା ରହିଲେ ମଧ୍ୟମ ପ୍ରକାର ଫଳ ହୁଏ । ମାତ୍ର ବ୍ରାହ୍ମଣୀ ହାତରେ ଅଢ଼ା ରହିଲେ ଦେଶର ଅଭାବ ଓ ଅନଟନ ହୁଏ । ବର୍ଷକଯାକ ପାରିବାରିକ ଉତ୍ସବ ଓ ପୁନିଅଁ ପରବ, ଯଥା ପଣାସଂକ୍ରାନ୍ତି, ଚନ୍ଦନଯାତ୍ରା, ଶୀତଳଷଷ୍ଠୀ, ଚମ୍ପକଦ୍ୱାଦଶୀ, ରଜ, ରଥଯାତ୍ରା, ଝୁଲଣଯାତ୍ରା, ଗହ୍ମାପୂର୍ଣ୍ଣିମା, ଜନ୍ମାଷ୍ଟମୀ, ଗଣେଶପୂଜା, ଦଶହରା, କୁମାରପୂର୍ଣ୍ଣିମା, ଦୀପାବଳୀ, ରାସପୂର୍ଣ୍ଣିମା, ଅଗ୍ନିଉତ୍ସବ, ଶିବରାତ୍ରୀ, ଦୋଳପୂର୍ଣ୍ଣିମା ପ୍ରଭୃତି ଗୋଷ୍ଠୀଗତ ଉତ୍ସବ । ଅକ୍ଷୟତୃତୀୟା, ଚିତାଲାଗି ଅମାବାସ୍ୟା, ମାଣବସା, ବକୁଳ ଅମାବାସ୍ୟା, ଶାମ୍ବଦଶମୀ ପ୍ରଭୃତି ପାରିବାରିକ ସ୍ତରରେ ପାଳିତ ହୁଏ ।

ସବୁ ଧର୍ମରେ ବର୍ଷରେ ବିଭିନ୍ନ ପର୍ବ ପାଳିତ ହୁଏ । ମାତ୍ର ମୋ ବିଚାରରେ ହିନ୍ଦୁଧର୍ମରେ ବର୍ଷରେ ଯେତେ ପୁନିଅଁ ପର୍ବ ପାଳିତ ହୁଏ, ପୃଥିବୀର ଅନ୍ୟ କୌଣସି ଧର୍ମରେ ଏତେ ପର୍ବ ପାଳିତ ହୁଏ ନାହିଁ । ଆମ ଓଡ଼ିଶାରେ ହିନ୍ଦୁମାନଙ୍କର ପ୍ରଥମାଷ୍ଟମୀ, ମାଣବସା, ବାଟଓଷା, ଖୁଦୁରୁକୁଣୀ, ସୋମନାଥ ବ୍ରତ ପ୍ରଭୃତି ହିସାବକୁ ନେଲେ ପ୍ରତିଦିନ ତ କିଛିନା କିଛି ପର୍ବ

ହେଉଛି । ସେଥିରେ ପୁଣି ବିଭିନ୍ନ ଜାତି ପାଇଁ ବିଭିନ୍ନ ପର୍ବର ପ୍ରାଧାନ୍ୟ ଅଧିକ । କୈବର୍ତ୍ତମାନଙ୍କର ଚୈତ୍ର ପର୍ବ ବଡ଼ ପର୍ବ ହେଲେ, ଗୋପାଳମାନଙ୍କର ଦୋଳ ବଡ଼ପର୍ବ, ବିଭିନ୍ନ ଅଞ୍ଚଳରେ ମଧ୍ୟ ବିଭିନ୍ନ ପର୍ବର ପ୍ରାଧାନ୍ୟ ଅଧିକ । ଓଡ଼ିଶାର ପଶ୍ଚିମାଞ୍ଚଳରେ ନୂଆଖାଇ ଗୋଟିଏ ପ୍ରଧାନ ପର୍ବ, କିନ୍ତୁ ଉପକୂଳବର୍ତ୍ତୀ ଅଞ୍ଚଳରେ ତାହା ଗୋଟିଏ ପ୍ରଧାନ ପର୍ବ ରୂପେ ପାଳିତ ହୁଏ ନାହିଁ । କେଉଁ ପର୍ବ ଗୋଷ୍ଠୀଗତ ଭାବେ ଏବଂ କେଉଁ ପର୍ବ ବ୍ୟକ୍ତିଗତ ଭାବେ ପରିବାରରେ କିପରି ପାଳିତ ହେବ, ତାହା ମଧ୍ୟ ପାରମ୍ପରିକ ଭାବରେ ସ୍ଥିର ହୋଇ ରହିଛି । ପାରମ୍ପରିକ ଭାବେ ରଜରେ ପୋଡ଼ପିଠା, ଚିତଉ ଅମାବାସ୍ୟାରେ ଚିତଉପିଠା, ଗହ୍ମାପୂର୍ଣ୍ଣିମା ଏବଂ ପ୍ରଥମାଷ୍ଟମୀରେ ଏଣ୍ଡୁରିପିଠା, ବଉଳ ଅମାବାସ୍ୟାରେ ମଣ୍ଡାପିଠା, ଶାମ୍ବଦଶମୀରେ ବୁଦ୍ଧାଚକୁଳି ସହିତ ବହୁ ପ୍ରକାରର ପିଠା ପରମ୍ପରାକ୍ରମେ ହେଉଛି । ଏ ପଦ୍ଧତିରେ ସାଧାରଣତଃ ଅଦଳ ବଦଳ ହୁଏ ନାହିଁ । ସେହିପରି ଗୋଷ୍ଠୀ ସ୍ତରରେ କେଉଁ ପର୍ବ କିପରି ପାଳିତ ହେବ ତାହା ମଧ୍ୟ ପାରମ୍ପରିକ ଭାବରେ ସ୍ଥିର ହୋଇଛି । ରଜରେ ଯୁବକମାନେ ବାଗୁଡ଼ି ଖେଳିବେ, ଝିଅମାନେ ଦୋଳିରେ ଝୁଲିବେ, ଦୋଳରେ ଗୋପାଳମାନେ ଲଉଡ଼ି ଖେଳିବେ, ଚୈତ ପୂର୍ଣ୍ଣିମାରେ କୈବର୍ତ୍ତମାନେ ଘୋଡ଼ା ନାଚ କରିବେ, ଏ ସବୁ କଥା ପାରମ୍ପରିକ ଭାବରେ ଚାଲିଛି । ପାଞ୍ଜିରେ ପୁଣି ଲେଖା ହୋଇଛି କେଉଁ ଦିନ ଲାଉ ଖାଇବ ନାହିଁ, କେଉଁ ଦିନ ଶିମ୍ବ ଖାଇବ ନାହିଁ, କେଉଁ ଦିନ ତେଲ ଲଗାଇବ ନାହିଁ । ତାହା ବ୍ୟତୀତ କେଉଁଦିନ କେତେବେଳେ କେଉଁ ଦିଗକୁ ଯାତ୍ରା ଶୁଭ, କେଉଁଦିନ କେତେବେଳେ ନୂଆ ଘର ତୋଳିବା, ପୋଖରୀ ଖୋଳିବା, ମନ୍ଦିର ଓ ଠାକୁର ପ୍ରତିଷ୍ଠା କରିବା ଶୁଭ ଇତ୍ୟାଦି । ପାଞ୍ଜି ଅନୁସାରେ ଚଳିଲେ ନିଜ ଇଚ୍ଛାରେ ସ୍ୱାଧୀନ ଭାବରେ କିଛି କରିବା ସହଜ ନୁହେଁ । ଆମ ପିଲାଦିନେ ଗାଁ ପରିବାରମାନଙ୍କରେ ପାଞ୍ଜିର ପ୍ରାଧାନ୍ୟ ଖୁବ୍ ଥିଲା । ପୁନିଅଁ ପରବ ସବୁ ପାଞ୍ଜି ଅନୁସାରେ ହେଉଥିଲା । ତାହା ବ୍ୟତୀତ ବିବାହ, ଉପନୟନ, ଗୃହ ପ୍ରବେଶ, ମନ୍ଦିର ବା ପୁଷ୍କରିଣୀ ପ୍ରତିଷ୍ଠା ସବୁ ପାଞ୍ଜି ଅନୁସାରେ ହେଉଥିଲା । ଅନୁକୂଳ କରି କେଉଁଆଡ଼କୁ ଯିବାକୁ ହେଲେ ଲୋକମାନେ ଆଗେ ପାଞ୍ଜି ଦେଖୁଥିଲେ । ଆଜିକାଲି ମଧ୍ୟ ଗ୍ରାମ କିମ୍ବା ସହରମାନଙ୍କର ଅଧିକାଂଶ ପରିବାର ପାଞ୍ଜିର ନିର୍ଦ୍ଦେଶ ଅନୁସାରେ ଏ ସବୁ କାର୍ଯ୍ୟ କରୁଛନ୍ତି । ପାଞ୍ଜିର ପ୍ରାଧାନ୍ୟ ଆମ ସମାଜରେ କମି ନାହିଁ । କିନ୍ତୁ ଆମ ପିଲାଦିନେ ପାଞ୍ଜିର ପ୍ରାଧାନ୍ୟ ଆହୁରି ବ୍ୟାପକ ଓ ଦୃଢ଼ ଥିଲା ।

ଆମ ଗାଁ ଯଦିଓ ଗୋଟିଏ ବ୍ରାହ୍ମଣ ଶାସନ, ତାହା ପୁରୀ ଅଞ୍ଚଳର ଶାସନ ପରି ଗୋଟିଏ ଶାସନ ନୁହେଁ । ପୁରୀ ଜିଲ୍ଲାରେ ବୀରନରସିଂହପୁର, ଶ୍ରୀରାମଚନ୍ଦ୍ରପୁର, ବୀରପୁରୁଷୋତ୍ତମପୁର, କପିଳେଶ୍ୱରପୁର ପ୍ରଭୃତି ଶାସନମାନ ମୁଁ ବୁଲିକରି ଦେଖିଛି । ସେ ସବୁ ଶାସନ ରାଜାମାନେ ଯୋଜନାବଦ୍ଧ ଭାବରେ ବସାଇଥିଲେ, ବ୍ରାହ୍ମଣମାନଙ୍କ ରହିବାପାଇଁ ଦକ୍ଷିଣ ଓ ଉତ୍ତରକୁ ମୁହଁ କରି ଲମ୍ବା ସାହିମୂଳିଆ ଘର, ମଝିରେ ଚଉଡ଼ା ରାସ୍ତା, ଶାସନର ଉଭୟ ମୁଣ୍ଡରେ ଦେବଦେବୀ ମନ୍ଦିର ଓ ପୁଷ୍କରିଣୀ କରା ହୋଇଥିଲା । ସହାୟକ ବ୍ରାହ୍ମଣ ଜାତିର ଲୋକମାନଙ୍କର ରହିବା ପାଇଁ ଭିନ୍ନ ବସତି ସାହି ସବୁ ଥିଲା ।

କଟକ ଜିଲ୍ଲାରେ ମଧ୍ୟ ଅନେକ ଶାସନ ପୁରୀ ଶାସନ ଢାଞ୍ଚାରେ ତିଆରି ହୋଇଥିବା ତାହା ମୁଁ ଦେଖିଛି । ମାତ୍ର ଆମ ଗାଁ ପୁରୀ ଶାସନ ପରି ନୁହେଁ । ଏହାକୁ ବିଧିବଦ୍ଧ ଭାବରେ କୌଣସ ରାଜା ବସାଇ ନାହାନ୍ତି । ବିଭିନ୍ନ ସମୟରେ ଜଣେ ଜଣେ ବ୍ରାହ୍ମଣ, ବିଶେଷତଃ ସେହି ପୁରୀ ଶାସନମାନଙ୍କରୁ ଆସି ସ୍ଥାନୀୟ ଜମିଦାରମାନଙ୍କଠାରୁ ବଡ଼ ବଡ଼ ଡିହ ନେଇ ଘର କରି ରହିଥିଲେ, କାଳକ୍ରମେ ଗୋଟିଏ ଗୋଟିଏ ପରିବାରରୁ ବହୁ ପରିବାର ହୋଇ ଗ୍ରାମରେ ମିଶ୍ର, ତିଆଡ଼ି, ଦାସ ପ୍ରଭୃତି ବିଭିନ୍ନ ବ୍ରାହ୍ମଣ ସାହି ହୋଇଯାଇଛି । ସେହିପରି ଅନ୍ୟ ସ୍ଥାନମାନଙ୍କରେ ରଯତ, ଗଉଡ଼, ଭଣ୍ଡାରି, ବଢ଼େଇ, କମାର, ପ୍ରଭୃତି ବ୍ରାହ୍ମଣେତର ଜାତିମାନଙ୍କର ସାହି କାଳକ୍ରମେ ଗଢ଼ିଉଠିଛି ଏବଂ ଗ୍ରାମଟି ବହୁଜାତି ଲୋକ ବିଶିଷ୍ଟ ଗ୍ରାମ ହୋଇଛି । ଗାଁର ବଡ଼ଦାଣ୍ଡ ପୂର୍ବରୁ ପଶ୍ଚିମକୁ ବଙ୍କା ଟଙ୍କା ହୋଇ ସାପ ପରି ଚାଲିଯାଇଛି । ତାହାର ବାମ ଓ ଡାହାଣ ପାଖରେ ସାହିସବୁ ଅଳ୍ପ ଦୂରରେ ଅଛି । ସାହି ଦାଣ୍ଡସବୁ ବଡ଼ ଦାଣ୍ଡରେ ମିଶିଛି । ଗାଁରେ ନଈ ନାହିଁ । ତିନିଟା ବଡ଼ ବଡ଼ କୋଠପୋଖରୀ ଅଛି । ସେଗୁଡ଼ିକ କେଉଁ ଯୁଗରେ ଖୋଳା ଯାଇଥିଲା ତାହାର ହିସାବ ନାହିଁ । ତାହା ବ୍ୟତୀତ ପରିବାରମାନଙ୍କର ବହୁ ବ୍ୟକ୍ତିଗତ କୂଅ, ପୋଖରୀ ଅଛି । ସବୁ ସାହି ମିଶି ଗୋଟିଏ ଯୋଜନାବଦ୍ଧ ବଡ଼ ଶାସନ ହୋଇଛି ।

ଗ୍ରାମର ମଧ୍ୟଭାଗରେ ଥିବା ନୀଳକଣ୍ଠେଶ୍ୱର ଓ ଗୋପୀନାଥ ମନ୍ଦିର ସମସ୍ତ ଶାସନବାସୀଙ୍କର । ଠାକୁରଙ୍କ ନୀତି ପାଇଁ ଜମି ଖଞ୍ଜା ଯାଇଛି । ମହାଦେବଙ୍କର ବର୍ଷକର ଚବିଶ ପକ୍ଷରେ ଚବିଶ ବେଢ଼ା ହୁଏ । ବିଭିନ୍ନ ସାହିର ବ୍ରାହ୍ମଣମାନେ ପାଳିକରି ବେଢ଼ା କରନ୍ତି । ମହାଦେବ ମନ୍ଦିରରେ ଶିବରାତ୍ରୀ, ଶୀତଳଷଷ୍ଠୀ ପ୍ରଭୃତି ପର୍ବ ପାଳିତ ହୁଏ । ଗୋପୀନାଥଜୀଉଙ୍କର ପ୍ରଧାନ ପର୍ବ ଦୋଳଯାତ୍ରା ଓ ଚମ୍ପକ ଦ୍ୱାଦଶୀ । ଦୋଳଯାତ୍ରାରେ ଗୋପୀନାଥ ବିମାନରେ ବସି ବିଭିନ୍ନ ବ୍ରାହ୍ମଣସାହିକୁ ଭୋଗ ଖାଇବାକୁ ଯାଆନ୍ତି । ଦୋଳପୂର୍ଣ୍ଣିମା ଦିନ ଗୋପୀନାଥ ବିମାନରେ ଝୁଲନ୍ତି । ସବୁ ସାହିର ବ୍ରାହ୍ମଣ ପରିବାରମାନଙ୍କରୁ ଭୋଗଡାଲା ବେଦି ଉପରକୁ ଆସେ । ସେହିଠାରେ ଠାକୁରଙ୍କ ଆଗରେ ପାଞ୍ଜି ପାଠ ହୁଏ । ସେଦିନ ଦୋଳ ବେଦି ପାଖରେ ପୂରା ଗାଁର ଶହ ଶହ ଲୋକଙ୍କର ସମାଗମ ହୁଏ । ଲୋକମାନେ ଆଗ୍ରହରେ ପାଞ୍ଜି ପାଠ ଶୁଣନ୍ତି । ଠାକୁରଙ୍କ ପୂଜାରୀମାନେ ଲୋକମାନଙ୍କୁ ଫୁଲଚନ୍ଦନ ଓ ଅବିର ଦିଅନ୍ତି । ଘଣ୍ଟ ବଜାଇବା ପ୍ରତିଯୋଗିତା ହୁଏ । ଗଉଡ଼ମାନେ ଘଣ୍ଟିବାନ୍ଧି ଶିଙ୍ଗା ବଜାଇ ଲଉଡ଼ିନାଚ କରନ୍ତି ।

ଚମ୍ପକ ଦ୍ୱାଦଶୀରେ ଗୋପୀନାଥ ବିମାନରେ ଯାତ୍ରାସ୍ଥଳକୁ ବିଜେ କରନ୍ତି । ତାଙ୍କରି ଆଗରେ ତିନିଦିନ ଲଢ଼େଇ ଯାତ୍ରା ହୁଏ । ସେ ତିନିଦିନ ଠାକୁର ମନ୍ଦିର ପାଖରେ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ହଜାର ହଜାର ସଂଖ୍ୟାରେ ଲୋକମାନେ ଆସି ଯାତ୍ରା ଦେଖନ୍ତି । ଯାତ୍ରାରେ ବହୁ ଟଙ୍କା ଖର୍ଚ୍ଚ ହୁଏ । ସେ ଟଙ୍କା ଠାକୁର ପାଣ୍ଠିରୁ ଖର୍ଚ୍ଚ ନ ହୋଇ ଗ୍ରାମବାସୀଙ୍କଠାରୁ ଚାନ୍ଦା ସଂଗ୍ରହ କରି ଖର୍ଚ୍ଚ ହୁଏ । ଠାକୁର ମନ୍ଦିର ରକ୍ଷଣାବେକ୍ଷଣ ଏବଂ ଠାକୁରଙ୍କର ବର୍ଷଯାକ ବିଭିନ୍ନ ନୀତି ପରିଚାଳନା ଦାୟିତ୍ୱ ସବୁ ସାହିର ବ୍ରାହ୍ମଣମାନେ ବହନ

କରନ୍ତି । ଠାକୁର ମନ୍ଦିର ପରିଚାଳନାରେ ବ୍ରାହ୍ମଣେତର ଜାତିଙ୍କର ଭାଗ ନାହିଁ । ମାତ୍ର ପରମ୍ପରାକ୍ରମେ ବିଭିନ୍ନ ସବର୍ଣ୍ଣ ଜାତିର ଲୋକଙ୍କୁ ଠାକୁର ନୀତିରେ ବିଭିନ୍ନ ସହାୟକ କାର୍ଯ୍ୟ କରିବା ଦାୟିତ୍ୱ ଦିଆଯାଇଛି ଏବଂ ସେଥିପାଇଁ ସେମାନଙ୍କୁ ଜମି ଖଞ୍ଜା ଯାଇଛି । ଦୋଳବିମାନ କାନ୍ଧେଇବା ଓ କାହାଳି ବଜାଇବା ରୟତମାନଙ୍କର କାର୍ଯ୍ୟ । ଠାକୁରଙ୍କ ଆଗରେ ମହୁଲ ଧରିବା ବାରିକମାନଙ୍କର କାମ । ଘଣ୍ଟ ବଜାଇବା ବ୍ରାହ୍ମଣମାନଙ୍କର କାମ । ଗାଁରେ ଢୋଲ ଓ ମହୁରୀ ବଜାଇବା ଲୋକ ନାହାନ୍ତି । ସେ କାମ ଅନ୍ୟ ଗାଁମାନଙ୍କରୁ ଲୋକ ଆଣି କରାଯାଏ । ଶଙ୍ଖ ମହୁରୀ ବଜାଇବା ବ୍ୟତୀତ ହରିଜନମାନେ ଠାକୁରଙ୍କର ଅନ୍ୟ କିଛି ନୀତି କରନ୍ତି ନାହିଁ ।

ସମଗ୍ର ଗ୍ରାମରେ ନୀଳକଣ୍ଠେଶ୍ୱର ଓ ଗୋପୀନାଥ ଠାକୁର ବ୍ୟତୀତ ପ୍ରତି ସାହିରେ ମଧ୍ୟ ଗ୍ରାମଦେବତା ଅଛନ୍ତି । ସେମାନଙ୍କର ଦୁର୍ଗାପୂଜା ପ୍ରଭୃତି ବର୍ଷର ବିଭିନ୍ନ ପର୍ବ ପାଳନ କରିବା ଦାୟିତ୍ୱ ସାହିଲୋକଙ୍କର । ସେଥିପାଇଁ ମଧ୍ୟ ପ୍ରତି ସାହିରେ ଜମି ଖଞ୍ଜା ଯାଇଛି । ଆମ୍ଭମାନଙ୍କର ଲକ୍ଷ୍ୟ କରିବା କଥା ଯେ ଏସବୁ କାର୍ଯ୍ୟ ପାଇଁ ଏବଂ ଦୈନନ୍ଦିନ ଜୀବନଯାପନ ପାଇଁ ଶହ ଶହ ବର୍ଷ ତଳେ ଟିକିନିଖି ଭାବରେ ଯୋଜନା କରାଯାଇଥିଲା ଏବଂ ସେହି ପଦ୍ଧତି ଶହ ଶହ ବର୍ଷ ଧରି ଚାଲିଛି । ହିନ୍ଦୁ, ମୁସଲମାନ, ମରହଟ୍ଟା ଓ ଇଂରେଜ ଶାସନ ସାମଗ୍ରିକ ଜୀବନ ନିୟନ୍ତ୍ରଣ କରିଛି । ମାତ୍ର ପାରମ୍ପରିକ ଗ୍ରାମଗୋଷ୍ଠୀ ଜୀବନ ଧାରାବାହିକ ରୂପେ ପୂର୍ବପରି ଚାଲିଛି । ସଂଗଠନ ସୁପରିକଳ୍ପିତ ଓ ଦୃଢ଼ ହୋଇ ନ ଥିଲେ ଏପରି ହୁଅନ୍ତା ନାହିଁ । ଏ ପଦ୍ଧତିରେ କାଳକ୍ରମେ ରାଜା, ଜମିଦାର, ମହାଜନ ଓ ଧନୀଲୋକମାନେ ସେମାନଙ୍କର ଆଧିପତ୍ୟ ବିସ୍ତାର କରିଛନ୍ତି କିନ୍ତୁ ସବୁକାଳେ ସାଧାରଣ ଲୋକମାନଙ୍କର ଏ ପଦ୍ଧତିରେ ସମ୍ମତି ଓ ସାହାଯ୍ୟ ଥିଲା ।

ଏହି ପରିବେଶ ଏବଂ ପାରମ୍ପରିକ ଜୀବନ ପଦ୍ଧତିରେ ଆମ୍ଭେମାନେ ପିଲାଦିନେ ଚଳୁଥିଲୁ । ପ୍ରତିଦିନ ପରିବାରରେ, ସାହିରେ ଓ ଗାଁରେ କଅଣ ହେବ, ତାହା ଆଗରୁ ସ୍ଥିର ହୋଇଛି ଏବଂ ପାଞ୍ଜିରେ ଲେଖା ହୋଇଛି । ପିଲାମାନଙ୍କର ପାଠପଢ଼ା, ଗ୍ରାମବାସୀଙ୍କର ଚାଷ, ବାଣିଜ୍ୟ, ବ୍ୟବସାୟ ଏବଂ ଲୌକିକ କାର୍ଯ୍ୟ, ବ୍ୟକ୍ତିଗତ ପରିବାରର ଶ୍ରାଦ୍ଧ, ମହଲା, ବିବାହ, ଉପନୟନ, ସୂତିକା, ମୃତ୍ତିକା କାର୍ଯ୍ୟ ଏ ପାରମ୍ପରିକ ଜୀବନ ପଦ୍ଧତିରେ ସମନ୍ୱିତ ଭାବରେ ଚାଲିଥାଏ । ଆମେ କେବଳ ସେ ସ୍ରୋତରେ ଭାସିଯାଉଥିଲୁ । ଦୋଳ, ରଜ, ଚମ୍ପକ, ଦ୍ୱାଦଶୀଯାତ୍ରା, ଝୁଲଣ, ଦଶହରା, ରାସପୂର୍ଣ୍ଣିମା, ଡଙ୍ଗା ଭସା, ଗଣେଶପୂଜା, ସରସ୍ୱତୀପୂଜା, ମକରସଂକ୍ରାନ୍ତି, ପଣାସଂକ୍ରାନ୍ତି ପ୍ରଭୃତି ପୁନିଅଁ ପରବ ପୂଜା ଉତ୍ସବ ଖରା, ବର୍ଷା, ଶୀତ ସହିତ ମାସକୁ ମାସ ଚାଲିଯାଏ । ଜୀବନ ଦୁର୍ବହ ଦୁଃଖରେ ନୁହେଁ, ସୁଖ ଓ ଆନନ୍ଦରେ ବିତି ଯାଉଥିଲା । ସତୁରି ବର୍ଷ ପରେ ପଛକୁ ଚାହିଁ ମନେହେଉଛି ଯେପରି ସେ ସମୟଟା ଅତି କ୍ଷିପ୍ର ଗତିରେ ଚାଲିଗଲା । ସମୟର ସ୍ମୃତି ମନରେ କେବଳ ସୁଖର ସ୍ମୃତି ହୋଇ ରହିଛି ।

ଆଜି ଦେଖୁଛି ଆମ ସାହିରେ ପିଲାଦିନେ ଦେଖିଥିବା ତିନି ପୁରୁଷର ଲୋକମାନଙ୍କ ମଧ୍ୟରୁ ଛୋଟ ଛୋଟ ଚୁଟି ରଖିଥିବା, ଗଙ୍ଗେଚ ଯମୁନେଚୈବ କହି ପୋଖରୀରେ ଗାଧୋଇଥିବା ଏବଂ ଓଦା ଗାମୁଛା ପିନ୍ଧି ଠାକୁରାଣୀଙ୍କୁ ସ୍ତୁତି କରୁଥିବା, ଗୋଷ୍ଠୀଗତ ଜୀବନର ପୂର୍ଣ୍ଣ ରକ୍ଷଣଶୀଳ, ନାରାୟଣ, ଅଲେଖ, ପ୍ରାଣକୃଷ୍ଣ, ବାସୁଦେବ ପ୍ରଭୃତି ବୁଢ଼ା ଲୋକମାନେ ପଞ୍ଚାବନ ବର୍ଷରୁ ଅଧିକକାଳ ହେଲା ଇହଧାମ ତ୍ୟାଗ କରି ଗଲେଣି । ସେମାନଙ୍କଠାରୁ ଅଳ୍ପ ନୈଷ୍ଠିକ ତାଙ୍କ ତଳପୁରୁଷର ଉଦୟନାଥ, ନରହରି, କୃତ୍ତିବାସ, ଆନନ୍ଦ ଓ ପରିକ୍ଷିତ ପ୍ରଭୃତି ମଧ୍ୟ ପ୍ରାୟ ପଚାଶ ବର୍ଷ ହେବ ଚାଲିଗଲେଣି । ତୃତୀୟ ପୁରୁଷର ଲୋକ ଧର୍ମାନନ୍ଦ, ବଳରାମ, ଜଗନ୍ନାଥ ପ୍ରଭୃତିଙ୍କ ମଧ୍ୟରୁ କେତେକ ଲୋକ ମରିଗଲେଣି । ସେମାନଙ୍କ ମଧ୍ୟରୁ ବଞ୍ଚିଥିବା ପ୍ରାୟ ସତୁରି ବର୍ଷ ପାଖାପାଖି ବୟସର ଲୋକଙ୍କର ପୂର୍ବ ନୈଷ୍ଠିକତା ଓ ରକ୍ଷଣଶୀଳତା କିଛି ନାହିଁ କହିଲେ ଚଳେ । ମାତ୍ର ସେମାନେ ପୂର୍ବ ଗୋଷ୍ଠୀ ଜୀବନର ପୂଜାପାର୍ବଣ, ପୁନିଅଁପରବ ବଞ୍ଚାଇ ରଖିବାକୁ ଯତ୍ନଶୀଳ । ସେଥିନିମିତ୍ତ ଚତୁର୍ଥପୁରୁଷ ରୂପେ ଆସିଥିବା ପ୍ରସନ୍ନ, ପ୍ରକାଶ, ରମେଶ ପ୍ରଭୃତି ଯୁବକମାନଙ୍କର ସାହାଯ୍ୟ ଲୋଡୁଛନ୍ତି । ମାତ୍ର ଏହି ଚତୁର୍ଥପୁରୁଷର ଲୋକ ଗାଁ ଛାଡ଼ି ବିଭିନ୍ନ ସହରରେ ଛୋଟ ବଡ଼ ଚାକିରି କରୁଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ପରିବାର ସହିତ ଚାକିରି ସ୍ଥାନମାନଙ୍କରେ ରହୁଛନ୍ତି । ଗାଁ ସହିତ ସେମାନଙ୍କ ସମ୍ପର୍କ ସାମୟିକ ଏବଂ ଗାଁର ପାରମ୍ପରିକ ଗୋଷ୍ଠୀ ଜୀବନ ସହିତ ସେମାନଙ୍କର ପରିଚୟ ସାମାନ୍ୟ । ଏହି ଚତୁର୍ଥ ପୁରୁଷର ଅନେକ ବେକାର ଯୁବକ କୌଣସି କର୍ମସଂସ୍ଥାନ କରି ନ ପାରି ଗାଁରେ ରହିଛନ୍ତି ଏବଂ ଆଳସ୍ୟ ଓ ହତାଶା ମଧ୍ୟରେ ଜୀବନ ଯାପନ କରୁଛନ୍ତି । ଗାଁରେ ରକ୍ଷଣଶୀଳପନ୍ଥୀ ଲୋପ ପାଇଯାଇଛନ୍ତି । ପୂର୍ବର ଗୋଷ୍ଠୀ ସଂଗଠନ ପରିବର୍ତ୍ତେ ଗାଁରେ ପଞ୍ଚାୟତ, ପଞ୍ଚାୟତସମିତି, ରାଜନୈତିକ ଦଳ ଏବଂ ଅନ୍ୟ ସରକାରୀ ଓ ବେସରକାରୀ ସଂଗଠନ ସବୁ ଗଢ଼ିଉଠିଛି । ଯୁବକମାନେ ଏସବୁ ସଂଗଠନମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାର ନିର୍ବାଚନରେ ମାତି ଯାଉଛନ୍ତି । ବିଭିନ୍ନ ମତବାଦୀ ଯୁବକମାନଙ୍କ ମଧ୍ୟରେ ବହୁ ବାଦାନୁବାଦ ଓ ମାଡ଼ଗୋଳ ହେଉଛି । ଚାନ୍ଦାଭେଦାର ରୂପ ବଦଳି ଯାଇଛି । ପୁରୁଣା କାଳରେ ଦୋଳ ମେଳଣ, ଝୁଲଣ ଯାତ୍ରା ପ୍ରଭୃତି ପାଇଁ ଯୁବକମାନଙ୍କର ଆଗ୍ରହ କମ୍ । ଚମ୍ପକ ଦ୍ୱାଦଶୀର ଲଢ଼େଇ ଯାତ୍ରା ବନ୍ଦ ହୋଇଯାଇଛି । ପୁରାତନପନ୍ଥୀ ଲୋକମାନେ ବିଧିରକ୍ଷା ପାଇଁ ରାତିଏ ବା ଦୁଇରାତି ଯାତ୍ରା କରାଉଛନ୍ତି । ସାଧାରଣତଃ ନୂତନ ପିଢ଼ିର ଯୁବକମାନଙ୍କର ଜୀବନ ଗୋଷ୍ଠୀ ବା ଧର୍ମକୈନ୍ଦ୍ରିକ ନ ହୋଇ ବ୍ୟକ୍ତି ଓ ରାଜନୀତିକୈନ୍ଦ୍ରିକ ହୋଇଛି । ପାଞ୍ଜିର ପ୍ରାଧାନ୍ୟ ଅଛି ଏବଂ ପୁନିଅଁ, ପରବ, ବିବାହ, ଉପନୟନ ପ୍ରଭୃତି ପାଞ୍ଜି ଅନୁସାରେ ପାଳିତ ହୋଇଛି । ପୁରୋହିତ ଗୋଷ୍ଠୀ ବିରଳ ହୋଇ ଯାଇଛନ୍ତି । ପୁରାତନ ପାଞ୍ଜି ପାଠକ ଗୋଷ୍ଠୀ ଉଭେଇ ଗଲେଣି । କେଳୁଣୀ ବା ବ୍ରାହ୍ମଣୀ ହାତରେ ଅଢ଼ା କଥା ବର୍ତ୍ତମାନ ହାସ୍ୟାସ୍ପଦ । ଦୋଳପୂର୍ଣ୍ଣିମାରେ ଦୋଳବେଦି ପାଖରେ ଚୁଆ, ଚନ୍ଦନ ଓ ଅବିର ଚର୍ଚ୍ଚା ପରିବର୍ତ୍ତେ ପୂର୍ଣ୍ଣମୀ ପରଦିନ ହୋଲିରେ ବିଭିନ୍ନ ରଙ୍ଗ ଖେଳ ହେଉଛି । ବର୍ତ୍ତମାନ ଗହ୍ମା ଝୁଲଣ ଅପେକ୍ଷା ରାକ୍ଷୀ ବନ୍ଧନର ପ୍ରାଧାନ୍ୟ ବେଶୀ । ଗାଁରେ ସାମାଜିକ

ବାସନ୍ଦ କରିବାକୁ ଲୋକ ନାହାନ୍ତି ବା ତାହାର ଅର୍ଥ କିଛି ନାହିଁ । ସବୁ କଥାଗତ ବିକଳ୍ପ ବ୍ୟବସ୍ଥା ଅଛି । ଚତୁର୍ଥ ପୁରୁଷର ସମାଜ ପୁରାତନ ସମାଜଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇଛି । ପରିବର୍ତ୍ତିତ ପରିସ୍ଥିତିରେ ସାମାଜିକ ଜୀବନ ପଦ୍ଧତି ବଦଳିଯାଇଛି । ଏ ପରିବର୍ତ୍ତନ କଥା ଆନ୍ଦୋଳନ କିମ୍ବା ଆମ ହଳ କରିବା ଆନ୍ଦୋଳନ ଠାରୁ ଭିନ୍ନ । ସେ ସବୁ ପୂରା ରକ୍ଷଣଶୀଳ ସମାଜ ମଧ୍ୟରେ ଏକ ବିନ୍ଦୁ ସଂସ୍କାର ପକାଇବା ପରି ଥିଲା । ବର୍ତ୍ତମାନ ରକ୍ଷଣଶୀଳବିହୀନ ଗ୍ରାମ୍ୟସମାଜରେ ସଂସ୍କାର ପାଇଁ ସବୁ ସୁବିଧା ଅଛି । ଏହି ପରିବର୍ତ୍ତନ ପାଇଁ ଏ ଶତାବ୍ଦୀରେ ସତୁରି ବର୍ଷରୁ ଅଧିକ ସମୟ ଲାଗିଗଲାଣି ।

# ବାଲ୍ୟବନ୍ଧୁ

ବାଲ୍ୟସ୍ମୃତି ରୋମନ୍ଥନ କରି ଦେଖୁଛି, ମୋର ପ୍ରଥମ ବାଲ୍ୟବନ୍ଧୁ ଥିଲା ହରିଆ ଜେନା । ତା ସହିତ ମୋର କେବେ ଦେଖାହେଲା ଏବଂ ସେ କେଉଁଦିନଠାରୁ ମୋର ବନ୍ଧୁ ହେଲା ତାର ହିସାବ ନାହିଁ । ହେତୁ ହେବା ପୂର୍ବରୁ ଏବଂ ହେତୁ ହେବା ପରେ ମୁଁ ବହୁ ପିଲାଙ୍କ ସହିତ ଖେଳିଛି କିନ୍ତୁ ଜଣେ ଜଣେ ଅନ୍ତରଙ୍ଗ ବନ୍ଧୁ ହିସାବରେ ସ୍ମୃତିପଟରେ ରହି ଯାଇଛନ୍ତି । ହରିଆ ଜେନାର ବାପା ରାମ ଜେନା ପାଗଳ ହୋଇ ଘର ଛାଡ଼ି ପଳାଇଗଲା, ଆଉ ଫେରିଲା ନାହିଁ । ସେମାନେ ଖଣ୍ଡାୟତ ଜାତିର ଲୋକ ଏବଂ ତାଙ୍କର ଜମିବାଡ଼ି କିଛି ନ ଥିଲା । ରାମ ଜେନା ମୂଲ ଲାଗି କୁଟୁମ୍ବ ପୋଷୁଥିଲା । ସେ ପଳାଇଯିବା ବେଳକୁ ତାର ଏକମାତ୍ର ପିଲା ହରିଆକୁ ମୋଟେ ଦୁଇବର୍ଷ ହୋଇଥିଲା । ବାପ ପଳାଇ ଯିବା ପରେ ତାର ମା ଅତି ଦୁଃସ୍ଥ ଓ ଦରିଦ୍ର ଅବସ୍ଥାରେ ପଡ଼ିଲା । ଆମଆଡ଼େ ଖଣ୍ଡାୟତ ଘରର ସ୍ତ୍ରୀଲୋକମାନେ ମୂଲ ଲାଗନ୍ତି ନାହିଁ । ତାଙ୍କର ଦୁଃସ୍ଥ ଅବସ୍ଥା ଦେଖି ମୋର ବୋଉ ବୋଧହୁଏ ହରିଆମା'କୁ ଆମ ଘରେ କାମଧନ୍ଦା କରିବାକୁ ଡାକି ଆଣିଥିଲା । ତାଙ୍କ ଘରଟା ଆମ ଘରଠାରୁ ଅତି ଅଳ୍ପ ଦୂରରେ ଥିଲା ।

ହରିଆମା' ଆମଘରେ ବାସନ ମାଜେ ନାହିଁ କିମ୍ବା ଖାଏ ନାହିଁ । ସେ ଅଗଣା, ଦାଣ୍ଡ, ବାଡ଼ିଆଡ଼ ଓଳାଇବା, ଜାଳ ଆଣିବା, ରୋଷାଇ ପାଇଁ ଯୋଗାଡ଼ କରିଦେବା, ଧାନ ଉଷେଇବା ଓ ଶୁଖାଇବା ପ୍ରଭୃତି କାର୍ଯ୍ୟରେ ସାହାଯ୍ୟ କରେ । ବେଳବୁଡ଼କୁ ପ୍ରତିଦିନ ଅଧସେର ଚାଉଳ ନିଏ । ବର୍ଷକୁ ମଧ କେତେଟଙ୍କା ଦରମା ନିଏ । ସେଥିରେ ସେ ଆଉ ହରିଆ ଚଳିଯାଆନ୍ତି । ପ୍ରତିଦିନ କାମ କରିବାକୁ ଆସିବାବେଳେ ହରିଆମା' ହରିଆକୁ ସଙ୍ଗରେ ଘେନି ଆମ ଘରକୁ ଆସେ । ମୋ ବୋଉ ହରିଆକୁ ଚୁଡ଼ା, ମୁଢ଼ି, ପିଠା ପ୍ରଭୃତି ଯାହା ଆମ ଘରେ ଥାଏ ତାକୁ ଖାଇବାକୁ ଦିଏ । ହରିଆର ବୟସ ମୋ ବୟସ ସହିତ ସମାନ ଥିଲା । ସୁତରାଂ ତିନି ଚାରିବର୍ଷ ବୟସରୁ ଆମେ ଦୁହେଁ ସାଙ୍ଗ ହୋଇ ଖେଳିଛୁ । ମାତ୍ର ଛଅ ସାତ ବର୍ଷ ବୟସ ହେବା ବେଳଠାରୁ ତା ସହିତ ଖେଳଟା ମୋର ମନେଅଛି ।

ଆମ ଦାଣ୍ଡରେ ଗୁହାଳ ପାଇଁ ଗୋଟିଏ ସାହାଲା ଚାଳଘର ଥିଲା । ସାହାଲାର ଗୋଟିଏ ବଡ଼ କୋଠରିରେ ଗୋଟିଏ ଦୋକାନ ଘର ହୋଇଥାଏ । ମୋର ମଝିଆଁଭାଇ ଗାଁର ଆଉ ଦୁଇଜଣଙ୍କ ସହିତ ମିଶି ଗୋଟିଏ ଖୁଚୁରା ତେଜରାତି ଦୋକାନ କରିଥାନ୍ତି । ସେ ଦୋକାନରୁ ବିଡ଼ି ଓ ଦିଆସିଲି ବଣ୍ଡଲ ପ୍ରଭୃତିରୁ ଚିତ୍ର ସବୁ ଆଣି ହରିଆ ଓ ମୁଁ ଚୁଡ଼ା ଅଠା କରି ଆମ ଶୋଇବା ଘର ଏକପଟିଆ କବାଟରେ ଲଗାଉଥାଉ । ବୟସ କମ୍‌ଥିବା ହେତୁ ଆମେ କୌଣସି ଗଛରେ ଚଢ଼ି ପାରୁ ନ ଥିଲୁ । କିନ୍ତୁ ଛୋଟ ଲଗିରେ ତୋଳି

ହେଉଥିବା ପିଜୁଳି, ଆମ୍ବ ଏବଂ ବିଭିନ୍ନ ପ୍ରକାର କୋଳି ତୋଳି କରି ଖାଉ । ପ୍ରାଥମିକ ସ୍କୁଲରେ ହରିଆ ମୋ ସହିତ ପଢୁ ନ ଥିଲା । ମାତ୍ର ଘରେ ଥିବାବେଳେ ମୁଁ ସବୁବେଳେ ତାହା ସହିତ ଖେଳୁଥିଲି । ବହିରେ ମଲାଟ ମଡ଼ାଇବା, ସ୍କୁଲକୁ ଖାତା ବହି ଆଦି ନେବାକୁ ବ୍ୟାଗ ତିଆରି କରିବା ପ୍ରଭୃତି କାମରେ ହରିଆ ମୋତେ ସାହାଯ୍ୟ କରୁଥିଲା । ସ୍କୁଲକୁ ଗଲା ପୂର୍ବରୁ ଏବଂ ସ୍କୁଲରୁ ଘରକୁ ଫେରିବା ପରେ ହରିଆ ସର୍ବଦା ମୋର ସାଥୀ ଓ ସହଚର ଥିଲା ।

ଆମ ଘରର ମୁରବି ମୋର ଦଦେଇ, ଗୁଡ଼ାଏ ଖଡ଼ାମଞ୍ଜି ଅମଳ କରି ରଖିଥାନ୍ତି । ଆମକୁ ସେତେବେଳେ ଆଠ ନଅ ବର୍ଷ ବୟସ ହୋଇଥାଏ । ଦିନେ ଆମ ଗାଁ ହାଟପାଳି ଦିନ, ଦଦେଇ ଆମକୁ ଡାକି କହିଲେ, ''ତୁମେ ଦୁଇଟା ପିଲା ସବୁବେଳେ ଖେଳୁଛ କାହିଁକି ? ଏ ଖଡ଼ାମଞ୍ଜିଗୁଡ଼ାକ ନେଇ ହାଟରେ ବିକି ଦିଅ ।'' ହାଟଟା ଆମ ଘର ଠାରୁ ବେଶୀ ଦୂରରେ ନ ଥିଲା । ଦଦେଇ ଗୋଟିଏ ପିତଳ ଚୂନଖାଇ ଖୋଳ ଦେଇ କହିଲେ, ''ପଇସାକୁ ଏ ଚୂନଖାଇ ଖୋଳରେ ଗୋଟିଏ ଖୋଳ ବିକିବ । ସେ ପ୍ରସ୍ତାବରେ ଆମକୁ ଅତି ଖୁସି ଲାଗିଲା । ତାକୁ ଆମେ ଗୋଟାଏ ବଡ଼ ଖେଳ ପରି ବିଚାରିଲୁ । ମିଛରେ ମିଛରେ ଦୋକାନ କରି ଆମେ ଅନେକଥର ଆମ ବାଡ଼ିରେ ଖେଳୁଥିଲୁ । ଦିନେ ହାଟପାଳିରେ ଉପରଓଳି ହରିଆ ଓ ମୁଁ ପୁଳାଏ ଖଡ଼ା ମଞ୍ଜି ନେଇ ହାଟରେ ବିକିବାକୁ ଗଲୁ । ହାଟରେ ଗୋଟିଏ ଜାଗାରେ ଚିରାଲୁଗା ବିଛାଇ ମଞ୍ଜିଗୁଡ଼ିକୁ ବିକିବାକୁ ରଖିଲୁ । ଦଦେଇ କହିଥିବାମତେ ପଇସାକୁ ଗୋଟିଏ ଖୋଳ ଆମର ଦର ହେଲା । ସେ ଦିନ ଆମେ ନଅ ପଇସାର ମଞ୍ଜି ବିକିଲୁ । ଆମେ ଅତି ଖୁସିରେ ଘରକୁ ଫେରି ଦଦେଇଙ୍କୁ ସେ ପଇସା ଦେଲୁ । ସେ ସାତ ପଇସା ରଖି ଆମର ପାରିଶ୍ରମିକ ରୂପେ ଆମକୁ ଦୁଇ ପଇସା ଦେଲେ । ସେତେବେଳେ ପଇସାକୁ ବହୁ କଥା ମିଳୁଥିଲା । ଆମେ ଅତି ଖୁସି ହେଲୁ । ପରବର୍ତ୍ତୀ ହାଟପାଳିରେ ଆମେ ଆଉ ପୁଳାଏ ମଞ୍ଜି ବିକିବାକୁ ନେଲୁ । ମାତ୍ର ସେଦିନ କେହି ଆମଠାରୁ ଖଡ଼ା ମଞ୍ଜି କିଣିଲେ ନାହିଁ । ଆମେ ମୁହଁ ଶୁଖାଇ ଆସି ସେ ମଞ୍ଜିତକ ଦଦେଇଙ୍କୁ ଫେରାଇ ଦେଲୁ । ବେପାରରେ ଜିନିଷ ବିକ୍ରି ହେଲେ ବା ନ ହେଲେ ମନର ଅବସ୍ଥା କ'ଣ ହୁଏ ତାହା ଆମେ ସେହିଦିନହିଁ ଅନୁଭବ କଲୁ ।

ସେହି ଆଠ ନଅବର୍ଷ ବୟସରେ ଦିନେ ଦଶ ଏଗାରଟା ସମୟରେ ମୁଁ ସ୍କୁଲରୁ ଫେରିବା ପରେ ଆମେ ଦୁହେଁ ଗୋଟିଏ କଟୁରୀ ନେଇ ଆମ ଘର ପାଖ ପୋଖରୀ କୂଳେ ଗୋଟିଏ କିଆଗଛ ହାଣି କନ୍ଦା ବାହାର କରୁଥିଲୁ । ଏହି ସମୟରେ ଆମ ଘରେ ମୋତେ ଖୋଜି କିଏ ମୋତେ ଡାକ ପକାଇଲା । ଆମେ ଦୁହେଁ ବାଡ଼ିବାଟେ ଘରକୁ ଆସିବାକୁ ଦଉଡ଼ିଲୁ । ଦେଖିଲୁ ଆମ ବାଡ଼ି ପିଣ୍ଡା ପାଖରେ ଗୋଟିଏ କୁକୁର ଠିଆ ହୋଇଛି । କୌତୁକ କରିବା ପାଇଁ ଆମେ ଦୁଇଜଣ ଦୁଇ ପାଖରୁ ଆସି ତାକୁ ମାରିବାକୁ ପାଞ୍ଚିଲୁ । ହରିଆ ଉତ୍ତରପଟରୁ ଏବଂ ମୁଁ ଦକ୍ଷିଣପଟରୁ ତା ପାଖକୁ ଯାଉଥିଲୁ । ସେ କୁକୁର ପାଖରେ ଆଗ ପହଞ୍ଚିଗଲା, ମୁଁ ପହଞ୍ଚି ନ ଥିଲି । ସେ କୁକୁର ତାର ଅଣ୍ଟା ଉପରେ ଚଢ଼ି ତାହାର ବାମ ବାହାକୁ

କାମୁଡ଼ିଦେଲା । ସେ ପାଟି କରି କାନ୍ଦିଲା, ମୁଁ ଡରିଗଲି । ସେତେବେଳେ ଆମ ପଡ଼ିଶା ଘର ଦଦେଇ ସେହି ବାଟେ ଯାଉଥିଲେ । ବାଡ଼ିରେ ସେ କୁକୁରଟାକୁ ମାରିବାରୁ କୁକୁର ପଳାଇଗଲା । ପରେ ଜାଣିଲୁ ଯେ ସେ କୁକୁର ଗୋଟାଏ ପାଗଳା କୁକୁର ଥିଲା ଏବଂ ଆଗରୁ ଆମ ଗାଁରେ ଆଉ ଦୁଇ ତିନି ଜଣଙ୍କୁ କାମୁଡ଼ିଥିଲା । ସେତେବେଳେ କୁକୁର କାମୁଡ଼ା ପାଇଁ ଗାଁରେ କେହି ଇଞ୍ଜେକ୍ସନ୍ ନେଉ ନ ଥିଲେ । ହରିଆକୁ ତା ମା ଝଙ୍କଡ଼ ଶାରଳା ଠାକୁରାଣୀଙ୍କ ପାଖକୁ ନେଲେ । ସେଠାରେ ଜଣେ ଗୁଣିଆ ତାର କ୍ଷତସ୍ଥାନରେ ବିଷ ଟାଣିବାପାଇଁ ଦୁଇଗୋଟି ଗୋଡ଼ି ଲଗାଇଦେଲା । ଏ ଘଟଣାର ଆଠ ନଅ ଦିନ ପରେ ତାକୁ ବସନ୍ତ ରୋଗ ହେଲା । ଜଳାତଙ୍କ ରୋଗ ହେବାପୂର୍ବରୁ ବସନ୍ତ ରୋଗରେ ଆଠ ନଅଦିନ ପରେ ହରିଆ ମରିଗଲା । ତାର ମୃତ୍ୟୁରେ ମୋ ମନରେ ଜୀବନରେ ପ୍ରଥମ ମୃତ୍ୟୁ ଶୋକ ଧକ୍କା ଲାଗିଥିଲା । ତାର ମା'ର ଶୋକ ବର୍ଣ୍ଣନା କରିବା ସହଜ ନୁହେଁ । ତାର ସଂସାରରେ ଆଉ କେହି ନ ଥିଲେ । ଦୁଃଖିନୀ ହରିଆମା' ତାପରେ ଆମ ଘରେ ଅଉ କେତେବର୍ଷ କାମ କରିଥିଲା । ସେ ଅଶୀବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲା । ତାର ଘର ବଖରାକ ତାର ପୁତୁରାକୁ ଦେଇ ଦେଇଥିଲା ଏବଂ ନିଜେ ଜଣେ ପଡ଼ୋଶୀ ଘରେ ଖଣ୍ଡେ କୁଡ଼ିଆ କରି ରହୁଥିଲା । ପ୍ରାୟ ୧୯୬୩ ମସିହା ପର୍ଯ୍ୟନ୍ତ ସେ ବଞ୍ଚିଥିଲା । ପ୍ରତିବର୍ଷ ଗ୍ରୀଷ୍ମଛୁଟିରେ ମୁଁ ଗାଁକୁ ଯିବା ସମୟରେ ସେ ବରାବର ଆମ ଘରକୁ ଆସେ ଏବଂ ମୁଁ ତାକୁ ଟଙ୍କାଏ ଦୁଇଟଙ୍କା ଦିଏ । ତାକୁ ଦେଖିଲେ ମୋର ହରିଆ କଥା ମନେପଡ଼େ । ମତେ ଦେଖିଲେ ସେ ହରିଆ କଥା ମନେପକାଇ କାନ୍ଦେ । ହରିଆ ଓ ହରିଆମା' ବହୁକାଳରୁ କାଳଗର୍ଭରେ ଲୀନ ହୋଇଗଲେଣି । ମାତ୍ର ସେମାନଙ୍କ ଦୁର୍ଦ୍ଦଶା ଆଜିଯାଏ ମୋ ସ୍ମୃତିରେ ଗୋଟିଏ ବଡ଼ ଦାଗ ହୋଇ ରହିଛି । ମୁଁ ଅନେକ ସମୟରେ ଭାବେ ସେଦିନ ହରିଆ ପରିବର୍ତ୍ତେ ମୁଁ ଯଦି ସେ କୁକୁର ପାଖକୁ ଆଗ ଯାଇଥାନ୍ତି ତେବେ ଏ ଜୀବନ କାହାଣୀ ସେହିଠାରେ ଶେଷ ହୋଇଥାନ୍ତା ।

ହରିଆର ମୃତ୍ୟୁ ପରେ ମାଗୁ ମୋର ଅନ୍ତରଙ୍ଗ ବନ୍ଧୁ ହୋଇଥିଲା । ମାଗୁ ମୋର ପିଇସୀପୁଅ ଭାଇର ପୁଅ । ମାତ୍ର ଆମ ସାହିର ମୋର ଭାଇ ହିସାବ ହେବ, ଭିକାରି ମିଶ୍ର ତାକୁ ପୁଅ କରି ନେଇଥିଲେ । ସୁତରାଂ ଦୁଇ ଆଡୁ ସେ ମୋର ପୁତୁରା । ମାଗୁକୁ ନଅ ଦଶ ମାସ ହୋଇଥିବାବେଳେ ତାର ମା ମରି ଯାଇଥିଲେ । ତାର ବାପା ତାକୁ ମୋର ବୋଉକୁ ପାଳିବାକୁ ଦେବାକୁ ଆଣିଥିଲେ । ସେତେବେଳକୁ ଭିକାରି ମିଶ୍ରଙ୍କର ଏକମାତ୍ର ପୁଅ ସାପ କାମୁଡ଼ାରେ ମରିଯାଇଥିଲା । ତାଙ୍କ ସ୍ତ୍ରୀ ଆମ ଘରକୁ ଆସି ପିଲାଟିକୁ ଅତି ଆଗ୍ରହରେ ପୁଅକରି ନେଇଯାଇଥିଲେ । ମାଗିକରି ନେଇ ଯାଇଥିବାରୁ ତାର ନାମ ଦେଇଥିଲେ ମାଗୁ । ଏ ସବୁ ଘଟଣା ମୋର ଜନ୍ମ ପୂର୍ବରୁ ଘଟିଥିଲା । ମାଗୁ ମୋଠାରୁ ତିନିବର୍ଷ ବଡ଼ ହୋଇଥିଲେ ମଧ ଆମେ ଦୁଇଜଣ ସମବୟସ୍କ ରୂପେ ଚଳୁଥିଲୁ ଏବଂ ମହାପ୍ରସାଦ ଖାଇ ଅବଢ଼ା ହୋଇଥିଲୁ । ମାଗୁକୁ ପୁଅ କରି ନେଇଥିବା ମା ମଧ ଅଳ୍ପ କାଳ ପରେ ମରିଗଲେ । ମାଗୁର ପାଳିତ ବାପା ଏବଂ ତାଙ୍କ ସାନଭାଇ ଏକ ଅନ୍ନରେ ଥାଆନ୍ତି । ସାନଭାଇର ସ୍ତ୍ରୀ ମରି ଯାଇଥିଲେ ଏବଂ ତାଙ୍କର କୌଣସି ସନ୍ତାନ ନ ଥିଲେ ।

ଦୁଇଭାଇ ମାଗୁକୁ ପୁଅ କରି ରଖିଥିଲେ । ମାଗୁର ପାଳିତା ମା ମରିଯିବା ପରେ ତାର ବିଧବା ଭଉଣୀ ତାକୁ ପାଳିଥିଲେ ।

ମାଗୁ ସହିତ ମୋର ଅନ୍ତରଙ୍ଗ ବନ୍ଧୁତା ପିଲାଦିନୁ ଗତ ତିନିବର୍ଷ ତଳେ ଏକାଅଶୀବର୍ଷ ବୟସରେ ତାର ମୃତ୍ୟୁ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ତାର ଜୀବନ ପଥ ପିଚ୍ଛିଳ ଥିଲା । ପିଲାଦିନେ ପ୍ରାଥମିକ ସ୍କୁଲରେ ସେ ଭଲ ପଢୁଥିଲା ଏବଂ ସ୍କୁଲର ପ୍ରଧାନ ଶିକ୍ଷକ ବୃତ୍ତି ପରୀକ୍ଷାପାଇଁ ତାର ବିଶେଷ ଯତ୍ନ ନେଉଥିଲେ । ମାତ୍ର ବୃତ୍ତି ପରୀକ୍ଷାରେ ସେ ବୃତ୍ତି ପାଇପାରିଲା ନାହିଁ । ପ୍ରାଥମିକ ବିଦ୍ୟାଳୟ ଶିକ୍ଷାପରେ ସେ ଆମ ଗାଁର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପଢ଼ିଥିଲା । ମାତ୍ର ପଞ୍ଚମ ଶ୍ରେଣୀ ପରେ ତାର ଶିକ୍ଷା ଶେଷ ହୋଇଗଲା । ପଞ୍ଚମ ଶ୍ରେଣୀରେ ପଢୁଥିବା ସମୟରେ ତାହାର ବିବାହ ହୋଇଥିଲା । ତାର ଶଶୁର ତାକୁ ଗୋଟିଏ ମାଇନର ସ୍କୁଲକୁ ପଠାଇବାକୁ ଯତ୍ନ କରୁଥିଲେ । ମାତ୍ର ତାହା ସଫଳ ହୋଇ ନ ଥିଲା । ତାପରେ ସେ କେତେବର୍ଷ ପୁରୀ ପଣ୍ଡାସାହିରେ ଗୃହ ଶିକ୍ଷକ ରୂପେ କାମ କରିଥିଲା ଏବଂ ପରେ କିଛିବର୍ଷ ବଙ୍ଗଳାଦେଶର ବରିସାଲ ସହରରେ ତାର ଶଶୁରଙ୍କର ଦୋକାନରେ କାମ କରିଥିଲା । ମାତ୍ର ଅଳ୍ପ କେତେବର୍ଷ ପରେ ସେ ସବୁ କାର୍ଯ୍ୟରୁ ଫେରିଆସି, ନିଜ ଘରେ ଚାଷବାସ କରି ରହିଥିଲା । ତାର ଅନେକ ପିଲା ହୋଇଥିଲେ । ମାତ୍ର ଧାର କରଜ ନ କରି ପରିଶ୍ରମ କରି ସଂସାର ଚଳାଇଥାଏ ।

ମାଗୁ ଅତି ସଚ୍ଚୋଟ ସ୍ୱଭାବର ଲୋକ ଥିଲା । ସେ ମିଥ୍ୟା ଆଚରଣ ଏବଂ ଜାଲ୍ ଫିସାଦି ପ୍ରଭୃତି କରିପାରେ ନାହିଁ । ସେଥିଯୋଗୁଁ ପିଲାଦିନୁ ମୁଁ ତାକୁ ଅତି ଭଲ ପାଉଥିଲି ଏବଂ ସେ ମୋତେ ଭଲ ପାଉଥିଲା । ପ୍ରୌଢ଼ ଅବସ୍ଥାରେ ନିଜ ଚେଷ୍ଟାରେ ସେ ସଂସ୍କୃତ ପଢୁଥିଲା ଏବଂ ଓଡ଼ିଆରେ କବିତା ଲେଖୁଥିଲା । ପ୍ରଥମେ ନଣବନ୍ଧି ପ୍ରଭୃତି ଉପରେ କବିତା ଛପାଇ ଲୋକ ଲଗାଇ ହାଟବଜାରମାନଙ୍କରେ ବିକାଉଥିଲା । ଆଧୁନିକ ଧରଣର କବିତା ଲେଖିବାକୁ ମୁଁ ତାକୁ ପରାମର୍ଶ ଦେଉଥିଲି । ତାପରେ ସେ କାଳିଦାସଙ୍କର ମେଘଦୂତ ପ୍ରଭୃତି କେତେକ କାବ୍ୟର ଅନୁବାଦ କରିଥିଲା ଏବଂ ନିଜେ କେତେକ ଓଡ଼ିଆ କାବ୍ୟ ଲେଖି ଛପାଇଥିଲା । ଶେଷରେ ନିମାଇଁ ସାଧନ ବସୁଙ୍କର ଇନ୍ଦିରାଗାନ୍ଧୀଙ୍କ ଜୀବନୀ ଓଡ଼ିଆରେ ଅନୁବାଦ କରି ତାର ପ୍ରକାଶ ନିମିତ୍ତ ଯତ୍ନ କରିବାକୁ ମୋତେ କହୁଥିଲା । ତାର ମୃତ୍ୟୁର ତିନି ଚାରିମାସ ପୂର୍ବରୁ ପ୍ରକାଶ ପାଇଥିବା ସେ ବହିରୁ ଖଣ୍ଡିଏ ମୋ ପାଖକୁ ପଠାଇଥିଲା । ବହିଟି ଖୋଲି ଦେଖିଲି ଯେ ସେ ବହିଟି ମୋ ନାମରେ ଉତ୍ସର୍ଗ ହୋଇଛି । ତାର ମୃତ୍ୟୁରେ ପ୍ରାୟ ବର୍ଷକ ଆଗରୁ ତା ସହିତ ମୋର ଦେଖା ହୋଇ ନ ଥିଲା । ଅତି ସାଧୁ ଓ ସରଳ ଜୀବନ ଯାପନ କରି ଏକାଅଶୀ ବର୍ଷ ଛଅମାସ ବୟସରେ ତାର ଦେହାନ୍ତ ହୋଇଥିଲା । ବଣମଲ୍ଲୀ ପରି ତାର କବି ପ୍ରତିଭା ସେହି ଗାଁରେ ବିଲୀନ ହୋଇ ଯାଇଥିଲା । ପିଲାଦିନୁ ଆମ୍ବ, କେନ୍ଦୁ ଖାଇବା ଏବଂ ମାଛ ଧରିବାଠାରୁ ଆରମ୍ଭ କରି ବୃଦ୍ଧ ବୟସ ପର୍ଯ୍ୟନ୍ତ ତାର ଓ ମୋର ସମସ୍ତ ପାରିବାରିକ କାର୍ଯ୍ୟରେ ଆମ ଦୁହିଁଙ୍କର ବିଶେଷ ସହଯୋଗ ଥିଲା ।

ପିଲାଦିନେ ମାଗୁ ଓ ମୋ ସହିତ ଆମ ଘର ପାଖର ଆଉଜଣେ ପିଲା ସାଙ୍ଗ ହୋଇଥିଲା । ତା ନାଁ ଭିକାରି ଷଡ଼ଙ୍ଗୀ । ଭିକାରିର ଡାକନାମ ଥିଲା ବିକଳା । ଗାଁରେ ସମସ୍ତେ ତାକୁ ବିକଳା ବା ବିକଳା ଷଡ଼ଙ୍ଗୀ ବୋଲି ଡାକୁଥିଲେ । ବିକଳା ପିଲା ହୋଇଥିବାବେଳେ ତାର ବାପା ମରିଯାଇଥିଲେ ଏବଂ ତାର ବଡ଼ଭାଇ ତାଙ୍କ ଘର ଚଳାଉଥିଲେ । ବିକଳାର ମା ଏବଂ ବଡ଼ଭାଇ ତାର ଯତ୍ନ ନେଉଥିଲେ । ବିକଳା ଆମ ସ୍କୁଲରେ ପଢୁଥିଲା, ମାତ୍ର ଅଧିକାଂଶ ଦିନ ସ୍କୁଲକୁ ଯିବାକୁ ମୋଟେ ରାଜି ହୁଏ ନାହିଁ । ତାଙ୍କ ଘରଟା ଆମ ଘରଠାରୁ ସ୍କୁଲକୁ ଯିବା ବାଟରେ ଥିଲା । ମୁଁ ପ୍ରତିଦିନ ସ୍କୁଲ ଯିବାବେଳେ ତାକୁ ସ୍କୁଲ ଯିବାପାଇଁ ଡାକେ । ମାତ୍ର ସେ ମୋଟେ ଘରୁ ବାହାରେ ନାହିଁ । ତାର ବୋଉ ତାକୁ ଯିବାକୁ ବାଧ କରେ ଏବଂ ତାକୁ ଗାଳିଦିଏ । ତଥାପି ସେ ବାହାରେ ନାହିଁ । ଶେଷରେ ତା ବୋଉ ମୋତେ କୁହେ "ହଉରେ ପୁଅ ତୁ ଯାଆ । ଚାଟ ଘର ପୁଅ ଚାଟ, ଭାଟ ଘର ପୁଅ ଭାଟ ।" ବିକଳାର ପାଠ ଦ୍ୱିତୀୟ ଶ୍ରେଣୀରୁ ଶେଷ ହେଲା । ଅଳ୍ପ ବର୍ଷ ପରେ ତାର ମା, ବଡ଼ଭାଇ ଓ ଭାଉଜ ମରିଗଲେ । ତାର ଗୋଟିଏ ବିଧବା ଭଉଣୀ ତାର ଯତ୍ନ ନେଉଥିଲେ । ତାଙ୍କର ଭଲ ଜମିବାଡ଼ି ଥିଲା, ମାତ୍ର କରଜ ହେତୁ ବହୁ ଜମିବାଡ଼ି ବିକ୍ରି ହୋଇଗଲା । ବିକଳାର ବିବାହ ବୟସ ହେଲା ମାତ୍ର ତାକୁ କନ୍ୟା ଦେବାକୁ କେହି ରାଜି ନ ହେବାରୁ ସେ ଅନେକ ଦିନ ଅବିବାହିତ ଥିଲା ।

ମୁଁ କଲେଜରେ ଆଇ.ଏ. ପଢୁଥିବାବେଳେ ପ୍ରଥମବର୍ଷ ଶେଷରେ ଗାଁରେ ଥିଲି । ସେ ବର୍ଷ ଆମେ ବିକଳା ଉପରେ ଗୋଟିଏ ନିଷ୍ଠୁର କୌତୁକ ଖେଳିଲୁ । ସେ ବର୍ଷ ରଜରେ ଦିନେ ସନ୍ଧ୍ୟାବେଳେ କେତେଜଣ ପିଲା କୌତୁକରେ କହିଲେ, "ବିକଳା ଘରକୁ ସବାରୀରେ ଗୋଟିଏ ବୋହୂ ନେବା" । ମୁଁ ତାଙ୍କ ସାଙ୍ଗରେ ସାଥୀ ହୋଇଗଲି । ଜଣେ ପିଲା ଆମ ଘରୁ କେତେକ ରୁପା ଅଳଙ୍କାର ଓ ଖଣ୍ଡିଏ ଶାଢ଼ି ନେଇ କନ୍ୟାବେଶ ହୋଇ ଆମ ଘରର ସୁଆରୀରେ ବସିଲା ଏବଂ ଅନ୍ୟ ପିଲାମାନେ ଗଉଡ଼ ସାଜି ତାକୁ ବିକଳା ଘର ଦାଣ୍ଡକୁ ନେଇଗଲେ । ତାଙ୍କ ଦାଣ୍ଡରେ ସବାରୀ ଥୁଆହେଲା । ବିକଳା ଏବଂ ତାର ନାନୀ ବାହାରକୁ ଆସିବା ପରେ ସମସ୍ତେ ଠୋ ଠୋ ହୋଇ ହସିଲେ । ପ୍ରଥମେ ବିକଳା ଓ ତା ନାନୀ ପିଲାଙ୍କ ସହିତ ହସରେ ଯୋଗ ଦେଇଥିଲେ, ମାତ୍ର ପରେ ସେମାନେ ଅପମାନିତ ମନେକଲେ । ତାର ନାନୀ କହିଲା ମୋ ଭାଇ ବିଭା ହୋଇପାରୁ ନାହିଁ ବୋଲି ଏମାନେ ଆମକୁ ଥଟ୍ଟା କରୁଛନ୍ତି । ଆମେ ସବାରୀ ଘେନି ଫେରିଆସିଲୁ । ଆମ ସାହିର କେତେକ ବୟସ୍କ ଲୋକ ଏପରି କରିବା ଉଚିତ ନୁହେଁ ବୋଲି ଆମକୁ କହିଲେ । ଆମ୍ଭେମାନେ ମଧ ଅନୁତପ୍ତ ହେଲୁ । କିନ୍ତୁ କୌତୁକ ବ୍ୟତୀତ ଆମର ଆଉ କୌଣସି ଉଦ୍ଦେଶ୍ୟ ନ ଥିଲା ।

ତା'ପରେ ସାତ ଆଠ ବର୍ଷ ବିତିଗଲା । ମୁଁ ସମ୍ବଲପୁର କଲେଜରେ ଚାକିରି କରୁଥିବାବେଳେ, ବିକଳା ଗୋଟିଏ ବାଳବିଧବା କନ୍ୟାକୁ ବିବାହ କରିବାକୁ ସ୍ଥିର କଲା । ସେ ବର୍ଷ ଗ୍ରୀଷ୍ମଛୁଟିରେ ମୁଁ ଗାଁରେ ଥିଲି । ସେହି ସମୟରେ ତାର ବିବାହ ହେଲା । ସମାଜ ସଂସ୍କାର ଉଦ୍ଦେଶ୍ୟରେ ମୁଁ ସେ ବିବାହରେ ଉପସ୍ଥିତ ଥିଲି । ସେଠରେ ଆହୁରି

ଅନେକ ଯୁବକ ମଧ୍ୟ ଉପସ୍ଥିତ ଥିଲେ । ତା'ପରେ ବିକଳାକୁ ସମାଜରେ ବାସନ୍ଦ ପ୍ରଭୃତି କରିବା ପାଇଁ ବିଶେଷ ଗୋଳମାଳ ହୋଇ ନାହିଁ । ବିକଳା ମଧ୍ୟ ତା ଘରେ ନୀରବରେ ଥାଏ । ତାପରେ ତାଙ୍କର ତିନିଗୋଟି କନ୍ୟାସନ୍ତାନ ହୋଇଥିଲା । ତାର ବଡ଼ଭାଇର ପୁଅ ତା'ଠାରୁ ଭିନ୍ନେ ହୋଇ ଯାଇଥିଲା । ବିକଳା ସତଷଠି ବର୍ଷ ବଞ୍ଚିଥିଲା, ମାତ୍ର ଜୀବନଯାକ ତାର ପରିବାର ଦରିଦ୍ର ଅବସ୍ଥାରେ ଚଳିଥିଲେ । ଦିନାକେତେ ବିକଳା ରଙ୍ଗପୁର ଯାଇ ଗୋଟିଏ ମିଠାଇ ଦୋକାନ କରିଥିଲା, ମାତ୍ର ସେ କେଉଁଥିରେ ସଫଳ ହୋଇ ପାରି ନ ଥିଲା । ତାର ମୃତ୍ୟୁର କିଛିମାସ ପୂର୍ବରୁ ମୁଁ ତାକୁ ଦେଖିବାକୁ ଯାଇଥିଲି । ତାର ଚିକିତ୍ସା ପାଇଁ ମାତ୍ର ପଚାଶଟି ଟଙ୍କା ଦେଇଥିଲି ।

ମାଗୁ ବିକଳାଙ୍କ ବ୍ୟତୀତ ପ୍ରାଥମିକ ସ୍କୁଲରେ ଆଉ କେତେଜଣ ସାଥୀଙ୍କ କଥା ମୋର ମନେଅଛି । ଧଡ଼ି ମହାଳିକ ସ୍କୁଲରେ ମୋର ଉପର ଶ୍ରେଣୀରେ ପଢୁଥିଲା । ସେ ଭଲ ପଢୁଥିଲା ଏବଂ ଅଙ୍କ ଓ ମାନସାଙ୍କରେ ଧୁରନ୍ଧର ଥିଲା । ସେ କେଉଟ ଘରର ପିଲା ଥିଲା ଏବଂ ତାର ବାପା ତାଙ୍କର କୌଳିକ ବ୍ୟବସାୟ, ଚୁଡ଼ାକୁଟା ଓ ଶୁଖୁଆ ବିକାକିଣା କରୁଥିଲେ । ପ୍ରାଥମିକ ଶିକ୍ଷା ପରେ, ଧଡ଼ି ମହାଳିକ ଉପରକୁ ପଢ଼ିବାପାଇଁ ସୁବିଧା ପାଉ ନ ଥିଲା । ଦୁଇ ବର୍ଷ ତଳେ ତାକୁ ଦେଖିଥିଲି । ତାକୁ ପ୍ରାୟ ଅଶୀ ବର୍ଷ ହେଲାଣି ଏବଂ ତାର ଶରୀର ସୁସ୍ଥ ଅଛି । ସେ ତାଙ୍କର ସେହି କୌଳିକ ବ୍ୟବସାୟ ଓ ଚାଷବାସ କରି ଚଳୁଛି । ତାର ପିଲାମାନେ ମଧ୍ୟ ସେହି ବ୍ୟବସାୟ କରି କୌଣସିମତେ ଚଳି ଯାଉଛନ୍ତି ।

ମୋର ଆଉଜଣେ ସାଥୀ ବୃନ୍ଦାବନ ସାହୁ ଜଣେ ଶୁଣ୍ଢିଘରର ପିଲା ଥିଲା । ସେ ଆମ ସ୍କୁଲ ହେଡ଼ପଣ୍ଡିତଙ୍କ ସାନଭାଇ । ସ୍କୁଲ ପାଖରେ ତାଙ୍କର ଗୋଟିଏ ଛୋଟ ଦୋକାନ ଥିଲା । ବୃନ୍ଦାବନର ପାଠରେ ମନ ଲାଗେ ନାହିଁ । ସେହି ଅଳ୍ପ ବୟସରୁ ସେ ତାଙ୍କ ଦୋକାନରେ ବସି ବିକୁଥିଲା । ଗାଁ ଲୋକେ ପଇସାକର ଗୁଡ଼, ପଇସାକର ଗୁଆ ଗୁଣ୍ଡି ଏବଂ ଅଧଲାକର ଲୁଣ, ଏହିପରି ସଉଦା କିଣନ୍ତି । ବୃନ୍ଦାବନ ନିକିତିଟାକୁ ଠିକ୍ ଭାବରେ ଧରିଥାଏ, ଲୋକଙ୍କୁ ଲାଭରେ ଗଣ୍ଡାଏ ଲୁଣ କିମ୍ବା ଟିକିଏ ଗୁଡ଼ ଦିଏ ନାହିଁ । ଗାଁ ଲୋକେ ତାକୁ କହନ୍ତି, ''ଏ ଗୋଟାଏ ଶନି''ଏବଂ ଶନି ନାମରେ ସେ ଗାଁରେ ବହୁକାଳ ପରିଚିତ ଥିଲା । ସେ ତାର ଜୀବନଯାକ ସେହିପରି ଛୋଟକାଟିଆ ଦୋକାନ ଗୋଟିଏ କରି ଜୀବିକା ନିର୍ବାହ କରୁଥିଲା । ବର୍ତ୍ତମାନ ତାକୁ ମଧ୍ୟ ପ୍ରାୟ ଅଶୀବର୍ଷ ବୟସ ହୋଇଛି । ଅଳ୍ପଦିନ ତଳେ ଦେଖିଥିଲି, ତାକୁ ପକ୍ଷାଘାତ ରୋଗ ହୋଇଛି ।

ପଛକୁ ଚାହିଁ ଦେଖୁଛି ଯେ ମୋ ସଙ୍ଗରେ ସେ ସ୍କୁଲରେ ପଢୁଥିବା କୌଣସି ପିଲା ସେ ସମୟରେ ମାଇନର ସ୍କୁଲରେ ସୁଦ୍ଧା ପଢ଼ିବାକୁ ଯାଇପାରି ନ ଥିଲେ । ଆମ ଘର ଆମ ଗାଁର ଶେଷ ସୀମାରେ ଅଛି । ଆମ ଘର ପଛ ପଟେ ପଡ଼ିଶା ଗାଁ କଲ୍ୟାଣପୁର । ସେହି ଗାଁରେ ସେ ପ୍ରାଥମିକ ସ୍କୁଲଟି ଥିଲା । ଆମ ଗାଁରେ ଥିବା ଉଚ୍ଚପ୍ରାଥମିକ ସ୍କୁଲଟି ଆମ ଘର ଠାରୁ ଦୂରରେ ଥିଲା । ସେଥିଯୋଗୁଁ ମୁଁ କଲ୍ୟାଣପୁର ପ୍ରାଥମିକ ସ୍କୁଲରେ ପ୍ରଥମେ ପଢୁଥିଲି । କଲ୍ୟାଣପୁର ଗାଁରେ ବ୍ରାହ୍ମଣ, କରଣ ପ୍ରଭୃତି ଉଚ୍ଚ ଜାତିର ଲୋକ ନ ଥିଲେ ।

ଅଧିକାଂଶ ପରିବାର କେଉଟ, ଗୁଡ଼ିଆ, ଚଷା, ଶୁଣ୍ଢି ପ୍ରଭୃତି ହାଟୁଆ ଜାତିର ଲୋକ ଥିଲେ । ସେହିମାନଙ୍କ ପିଲା ସେ ପ୍ରାଥମିକ ସ୍କୁଲ୍‌ରେ ପଢୁଥିଲେ ଏବଂ ସେମାନେ ମୋର ସାଙ୍ଗ ଥିଲେ । ସେମାନଙ୍କ ମଧ୍ୟରେ ଶିକ୍ଷା ପ୍ରସାର ହୋଇ ନ ଥିଲା ଏବଂ ସେମାନଙ୍କ ପିଲାମାନେ ଗାଁ ପ୍ରାଥମିକ ସ୍କୁଲ ପାଠ ଶେଷ ପରେ ଆଉ ଉପରକୁ ପଢ଼ି ପାରୁ ନ ଥିଲେ । ନିମ୍ନପ୍ରାଥମିକ ସ୍କୁଲ ଶିକ୍ଷା ପରେ ମୁଁ ଆମ ଗାଁର ଉଚ୍ଚ ପ୍ରାଥମିକ ସ୍କୁଲରେ ଚତୁର୍ଥ ଓ ପଞ୍ଚମ ଶ୍ରେଣୀରେ ପଢ଼ିଥିଲି । ସେଥିରେ ଆମ ଗାଁର ଏବଂ ପାଖଆଖ ଗାଁମାନଙ୍କର ଉଚ୍ଚ ଜାତିର ପିଲାମାନେ ପଢୁଥିଲେ ଏବଂ ମୁଁ ସେମାନଙ୍କ ସହିତ ସାଙ୍ଗ ହୋଇଥିଲି । ସେମାନଙ୍କ ମଧ୍ୟରୁ ମଧ୍ୟ ଅତି ଅଳ୍ପପିଲା ମାଇନର ସ୍କୁଲରେ ପଢ଼ିବାକୁ ଯାଇପାରିଥିଲେ । ସେ ସ୍କୁଲରେ ମୋ ସାଙ୍ଗରେ ପଢୁଥିବା ପିଲାମାନଙ୍କ ମଧ୍ୟରୁ ମୋଟେ ଜଣେ ଦୁଇ ଜଣ ପିଲା ରେଭେନ୍ସା କଲେଜରେ ପଢ଼ିବାକୁ ନାମ ଲେଖାଇଥିଲେ । ଆମ ଗାଁ ଓ ପାଖ ପାଞ୍ଚ ସାତ ଗାଁର ଜଣେ ପିଲା ସୁଦ୍ଧା ଏମ୍.ଏ. କ୍ଲାସରେ ପଢ଼ି ନ ଥିଲେ କିମ୍ବା ଏମ୍.ଏ. ପାସ୍ କରି ନ ଥିଲେ । ସେ ସମୟରେ ଶିକ୍ଷାର ସୁବିଧା ଖୁବ୍ ଅଳ୍ପ ଥିଲା । ଗାଁମାନଙ୍କରେ ଅଧିକାଂଶ ଲୋକ ପ୍ରାଥମିକ ଶିକ୍ଷା ପରେ ଆଉ ଉପରକୁ ପଢ଼ି ପାରୁ ନ ଥିଲେ । ଅତି ଅଳ୍ପସଂଖ୍ୟକ ଧନୀ ଓ ଉଚ୍ଚଜାତିର ପିଲା ହାଇସ୍କୁଲରେ ପଢ଼ି ପାରୁଥିଲେ । ସେମାନଙ୍କ ମଧ୍ୟରୁ ମାତ୍ର ଜଣେ ଦୁଇଜଣ କଲେଜରେ ପଢ଼ିବାକୁ ସମର୍ଥ ହେଉଥିଲେ । ଆଜିକାଲି ସେ ଅବସ୍ଥା ବଦଳିଯାଇଛି । ଶିକ୍ଷାର ମାନ ଯାହା ହେଉ ପଛକେ, ଗାଁମାନଙ୍କରେ ଶିକ୍ଷାର ପ୍ରସାର ହୋଇଛି, ଆମ ପିଲାକାଳେ ଗାଁମାନଙ୍କର ସାଧାରଣ ଲୋକ ଅଧିକ ଗରିବ ଏବଂ ଅଶିକ୍ଷିତ ଥିଲେ ।

# ପଲ୍ଲୀ ଚରିତ୍ର

ପିଲାଦିନେ ଗାଁ ଲୋକଙ୍କ ମଧ୍ୟରେ କେତେକ ମହତ୍ ଗୁଣ ଓ କେତେକ ଖରାପ ଗୁଣ ମୁଁ ଦେଖିଥିଲି । ସେତେବେଳେ ସେଗୁଡ଼ିକୁ ବିଶ୍ଳେଷଣ କରିବାକୁ ମୋର ଶକ୍ତି ନ ଥିଲା । ବର୍ତ୍ତମାନ ସେଗୁଡ଼ିକୁ ବିଶ୍ଳେଷଣ କରିପାରୁଛି । ସେତେବେଳେ ଆମ ବାଡ଼ିକୁ ଲାଗି ଠାକୁରାଣୀଙ୍କ ନଡ଼ିଆ ବଗିଚାରେ, ଧଡ଼ି ଓଝାର ବାପା, ମା, ଧଡ଼ିଆ ଓ ତାର ତିନି ଭଉଣୀଙ୍କ ସହିତ ଅନ୍ୟ ଗାଁରୁ ଆସି ରହିଥାନ୍ତି । ଧଡ଼ି ଓଝାକୁ ସେତେବେଳେ ପ୍ରାୟ ସତର ଅଠର ବର୍ଷ ହୋଇଥାଏ । ତାର ତିନି ଭଉଣୀଙ୍କ ମଧ୍ୟରୁ ଜଣେ ତା'ଠାରୁ ସାନ, ଅନ୍ୟ ଦୁଇଜଣ ତା'ଠାରୁ ବଡ଼ ଥିଲେ । ଧଡ଼ି ଓଝାର ବାପା ସେତେବେଳେ ଅତି ବୁଢ଼ା ହୋଇ ଯାଇଥିଲେ, କୌଣସି କାମଧନ୍ଦା କରି ପାରୁ ନ ଥିଲେ । ତାର ମା ଆମ ସାହିର ବିଭିନ୍ନ ପରିବାରରେ ଧାନ କୁଟେ, ଧଡ଼ିଆ ଆମ ଘରେ ଚାକର ଥିଲା । ସମୟକ୍ରମେ ତାର ତିନି ଭଉଣୀ ବିଭାହୋଇ ଅନ୍ୟ ଗାଁକୁ ଚାଲିଗଲେ ଏବଂ ତାର ବାପା ମରିଗଲେ । ଧଡ଼ିଆ ଗୋଟିଏ ଝିଅକୁ ବାହାହେଲା । ସେ ଝିଅଟି ପୂରା ଖନୀ । କିଛି କଥା କହିପାରେ ନାହିଁ । ଠାରରେ ଯାହା ଇଙ୍ଗିତ ଦିଏ । ଆମେ ସବୁ ପିଲା ମଜା ଦେଖିବାପାଇଁ ତାକୁ ପଚାରୁ 'ତୋର ଶାଶୁ କୁଆଡ଼େ ଯାଇଛି ?' ସେ ଗୋଟାଏ ଗୋଡ଼ ତଳେ ବାଡ଼ାଏ । ତାହାର ଅର୍ଥ ଶାଶୁ ଧାନ କୁଟିବାକୁ ଯାଇଛି । ଆଉ ବେଳେବେଳେ ଆଙ୍ଗୁଠି ଦେଖାଇ ଦୂରକୁ ଯାଇଥିବାର ସଙ୍କେତ ଦିଏ । ତା ମାନେ ଶାଶୁ ଝିଅଘରକୁ ଯାଇଛି । ଧଡ଼ିଆର ମା ମରିଯିବା ପରେ ଧଡ଼ିଆ ଦେଖିଲା, ଖନୀ ସଙ୍ଗରେ ଚଳିହେବ ନାହିଁ । ତେଣୁ ସେ ଖନୀକୁ ଛାଡ଼ପତ୍ର ଦେଇ ଆଉ ଗୋଟିଏ ବୟସ୍କା ସ୍ତ୍ରୀଲୋକ, କମଳୀକୁ ଦ୍ୱିତୀୟ ହେଲା । ବହୁକାଳରୁ ଗାଁମାନଙ୍କରେ ପଛୁଆ ଜାତିମାନଙ୍କ ମଧ୍ୟରେ ଜଣେ ସ୍ତ୍ରୀକୁ ଛାଡ଼ପତ୍ର ଦେବା ଏବଂ ଅନ୍ୟ ଜଣକୁ ଦ୍ୱିତୀୟ ହେବା ସାଧାରଣ କଥା ଥିଲା ।

ଧଡ଼ିଆର ଦ୍ୱିତୀୟ ସ୍ତ୍ରୀ, କମଳୀ ଅତି ସ୍ନେହୀ ଓ ଅମାୟିକ ସ୍ୱଭାବର ଲୋକ ଥିଲା । ଅତି ଅଳ୍ପ ସମୟ ମଧ୍ୟରେ ଆମ ସାହିର ସବୁ ପିଲା ତାକୁ ଅତି ଭଲ ପାଇଲେ ଏବଂ ସେ ସବୁ ପିଲାମାନଙ୍କୁ ଭଲ ପାଇଲା । ଆମ ସାହିର ସବୁ ପିଲା ଠାକୁରାଣୀଙ୍କ ବଗିଚାରେ ଧଡ଼ି ଓଝା ଘର ଆଗରେ ଖେଳିଲେ । କମଳୀ ଖୁସିରେ ସେମାନଙ୍କ ଖେଳ ଦେଖେ । କମଳୀ ଅତି କର୍ମଶୀଳା ଥିଲା । ଘର ଦ୍ୱାର ଲିପାପୋଛା କରି ସବୁବେଳେ ଅତି ପରିଷ୍କାର କରିଥାଏ । ଗାଈ ବାଛୁରୀ ପାଳିଥାଏ । ମାତ୍ର ବିଲବାଡ଼ିରେ କାମ କରେ ନାହିଁ । ଧଡ଼ି ଓଝା ଆମ ଘରେ ବହୁକାଳ ଚାକିରି କରିଥିଲା । କମଳୀ ଆସିବା ପରେ ଚାକିରି ଛାଡ଼ି କୋଠିଆପଣ କଲା । ଅନ୍ୟମାନଙ୍କଠାରୁ ମଧ୍ୟ କିଛି ଜମି ଆଣି ଭାଗ ଚାଷ କଲା ।

ସେମାନେ ସୁଖରେ ଅନେକବର୍ଷ ଚଳିଲେ । ସେମାନଙ୍କର ଏକମାତ୍ର ଦୁଃଖ ଥିଲା ଯେ ସେମାନଙ୍କର କିଛି ପିଲାଛୁଆ ନ ଥିଲା । ଦିନେ କମଳୀ ଆମକୁ କହିଲା ସେ ବଢ଼େଇ କୁଳ ରକ୍ଷା କରିବାପାଇଁ ଖନୀକୁ ଆଣିବାପାଇଁ ଖନୀର ବାପଘରକୁ ଯାଇଥିଲା । ସମସ୍ତେ ଶୁଣି ଆଶ୍ଚର୍ଯ୍ୟ ହେଲେ । କମଳୀ ନିଜେ ଗୋଟିଏ ସଉତୁଣୀକୁ ଆଣିବାକୁ ଯାଇଥିଲା । ତାର ମନରେ କୌଣସି ଈର୍ଷା ନ ଥିଲା । ଖନୀ ଆସିବାକୁ ରାଜି ହେଲା ନାହିଁ । ଆସିଥିଲେ ସେମାନଙ୍କ ମଧ୍ୟରେ କଳିକଜିଆ ହୋଇଥାନ୍ତା କି ନାହିଁ ଦେଖିବାର କଥା ଥିଲା । ମାତ୍ର ଗାଁର ସବୁ ସ୍ତ୍ରୀଲୋକମାନଙ୍କ ସହ ଖୁସିରେ ମିଶିବା, ପିଲାମାନଙ୍କୁ ସ୍ନେହ କରିବା, ସ୍ୱାମୀର ସେବା କରିବା, ଘରଦ୍ୱାର ନିର୍ମଳ ରଖିବା ଓ ପରିବାରର ଶ୍ରୀ ବୃଦ୍ଧି କରିବା ଏବଂ ଈର୍ଷା ନ କରି ବଢ଼େଇକୁଳ ରଖିବାକୁ ଛାଡ଼ପତ୍ର ନେଇଥିବା ସଉତୁଣୀକୁ ଆଣିବାକୁ ଯିବା ପ୍ରଭୃତି କମଳୀର ଗୁଣ ସବୁ ଅତି ମହତ୍ ଥିଲା । ଦୁର୍ଭାଗ୍ୟକୁ କିଛି କାଳ ପରେ କମଳୀର ମୃତ୍ୟୁ ହୋଇଗଲା ଏବଂ ଧଡ଼ିଆର ଗୃହ ଶୂନ୍ୟ ହୋଇଗଲା । ସେ ବାଧ ହୋଇ ଆଉ ଜଣେ ସ୍ତ୍ରୀକୁ ତୃତୀୟ ହେଲା । ମାତ୍ର ପ୍ରାୟ ମାସକ ପରେ ସେ ଧଡ଼ିଆ ଘରେ ରହିବାକୁ ରାଜି ହେଲା ନାହିଁ । ଶେଷରେ ଧଡ଼ିଆ ଚତୁର୍ଥଥର ପାଇଁ ନେତେଇ ବୋଲି ଜଣେ ସ୍ତ୍ରୀଲୋକକୁ ବିଭା ହେଲା ।

ଦୁର୍ଭାଗ୍ୟକୁ କମଳୀର ଯେଉଁ ଗୁଣମାନ ଥିଲା, ନେତେଇର ତାର ବିପରୀତ ଗୁଣସବୁ ଥିଲା । ନେତେଇ ଖୁବ୍ କାର୍ଯ୍ୟକ୍ଷମ ଥିଲା ଏବଂ ବିଲବାଡ଼ିରେ ଓ ଅନ୍ୟମାନଙ୍କ ଘରେ କାମ କରୁଥିଲା । ମାତ୍ର ସେ ଅତି କଳହପ୍ରିୟା ଓ ମୁଖରା ଥିଲା । ସେ ଧଡ଼ିଆକୁ ଅତି କର୍କଶ ଭାଷାରେ ଗାଳି ଦେଉଥିଲା ଏବଂ ଗାଁର ଅନ୍ୟ ସ୍ତ୍ରୀଲୋକମାନଙ୍କ ସହିତ କର୍କଶ ଭାଷାରେ କଳି କରୁଥିଲା । ଗାଁ ମାଇପେ ତାର କଳିକୁ ଡରି ତା'ଠାରୁ ଦୂରରେ ରହିବାକୁ ଚେଷ୍ଟା କରୁଥିଲେ । ପିଲାମାନେ ଡରରେ ତା ଦୁଆରକୁ ଯାଆନ୍ତି ନାହିଁ । ନେତେଇକୁ ବିଭା ହେବା ପରେ ଧଡ଼ିଆର ତିନିଗୋଟି ପୁତ୍ରସନ୍ତାନ ହୋଇଥିଲେ । ସବା ସାନପୁଅଟି ମରିଗଲା । ମାତ୍ର ଆଉ ଦୁଇ ପୁଅ ତାଙ୍କର ପରିବାର କରି ଆଜିଯାଏ ଅଛନ୍ତି । ବଢ଼େଇକୁଳ ରହିଲା, ମାତ୍ର ନେତେଇ ସହିତ ଧଡ଼ିଆର ଶେଷ ଜୀବନ ଦୁଃଖମୟ ଥିଲା । କେତେବର୍ଷ ପରେ ଧଡ଼ିଆ ମରିଗଲା । ଘରର ଶ୍ରୀ ମଧ୍ୟ ତୁଟିଗଲା । ଘରର ଅଗଣା ପାଚିରି ଭାଙ୍ଗି କେବଳ ଦୁଇଟି ବଖରା ଛପରଘର ଥାଏ । ନେତେଇ କାମଧନ୍ଦା କରି ଛୁଆ ଦୁଇଟିଙ୍କୁ ପାଳୁଥାଏ । ବହୁକାଳ ସେ ଆମ ବାଡ଼ିରେ ଥିବା କୂଅରୁ ପାଣି ନେଉଥିଲା । ପରେ ତା ଅଗଣାରେ ଗୋଟିଏ କୂଅ ଖୋଳିବାକୁ ମୁଁ ତାକୁ କିଛି ଟଙ୍କା ଦେଇଥିଲି । ଧଡ଼ିଆର ଜୀବନ ବିଶ୍ଳେଷଣ କରି ମୁଁ ଦେଖୁଛି ଯେ ମନୁଷ୍ୟର ସୁଖ ଶାନ୍ତି ତାର ଗୁଣ ଉପରେ ନିର୍ଭର କରେ । ଅନେକ ସମୟରେ ଟଙ୍କା ପଇସା, ଧନ ସମ୍ପତ୍ତି ମନୁଷ୍ୟକୁ ସୁଖଶାନ୍ତି ଦିଏ ନାହିଁ । ଉଭୟ ପୁରୁଷ ଓ ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ ବିଭିନ୍ନ ଗୁଣର ଲୋକ ଅଛନ୍ତି । ଲକ୍ଷ୍ମୀ, ମନ୍ଥରା, ରାକ୍ଷସ ପୁରାଣ ବର୍ଣ୍ଣିତ ବୈକୁଣ୍ଠ, ଅଯୋଧ୍ୟା ଓ ଲଙ୍କାରେ ନାହାନ୍ତି । ସେ ସମସ୍ତେ ଆମରି ମଧ୍ୟରେ ଅଛନ୍ତି ।

ଗାଁ ଲୋକଙ୍କର ଦୋଷ ମଧ୍ୟରେ ସେତେବେଳେ ଆମେ ଦେଖୁଥିଲୁ ଯେ ଉଭୟ ସ୍ତ୍ରୀ ଓ ପୁରୁଷ ଲୋକଙ୍କ ମଧ୍ୟରେ ଚୁଗୁଲିଟା ବିଶେଷ ଭାବରେ ପ୍ରଚଳିତ ଥିଲା । ସ୍ତ୍ରୀ ଲୋକମାନଙ୍କ ଚୁଗୁଲି ତାଙ୍କରି ଭିତରେ ହେଉଥିଲା, ଆମେ ସେଗୁଡ଼ାକ ଶୁଣିପାରୁ ନ ଥିଲୁ । ମାତ୍ର ପୁରୁଷ ଲୋକମାନଙ୍କ ମଧ୍ୟରେ ଚୁଗୁଲି ଦାଣ୍ଡରେ ହେଉଥିଲା । ଆମେ ସେଗୁଡ଼ିକୁ ସହଜରେ ଶୁଣି ପାରୁଥିଲୁ । ବୁଲେଇ ସାହୁ ମୃଷା ଖୁଣ୍ଟିଆ ନାଁରେ, ମୃଷା ଖୁଣ୍ଟିଆ କୁଶ ଖୁଣ୍ଟିଆ ନାଁରେ, ନାରଣ ଷଡ଼ଙ୍ଗୀ ମହି ରାଉତ ନାମରେ କରୁଥିବା ବିଭିନ୍ନ ଚୁଗୁଲି ଆମେ ଶୁଣୁ । ବେଳବୁଡ଼େ ହରପାର୍ବତୀ ମଣ୍ଡପ ଉପରେ କିମ୍ବା ଛୋଟ ଛୋଟ ଗାଁ ଦୋକାନମାନଙ୍କରେ, ଯେଉଁଠାରେ ଲୋକମାନେ ବସି ଗପସପ ହୁଅନ୍ତି, ସେଠାରେ ଚୁଗୁଲିର ପରିମାଣ ବେଶୀ ଥାଏ । ଚୁଗୁଲିର ଚୂଡ଼ାନ୍ତ ସୀମାରେ ଥରେ ଗୋଟିଏ ବଡ଼ ଗୋଳମାଳ ହେଲା । ଆମ ଗାଁ ଗଣି ମିଶ୍ର (ନାମଟା ବଦଳାଇ ଦେଇଛି) ତା ଘରେ ଗୋଟିଏ ଛୋଟିଆ ଗୁଆ ଗୁଣ୍ଡି ଦୋକାନ କରିଥାଏ । ସନ୍ଧ୍ୟାବେଳେ ସବୁଦିନେ ସେଠାରେ କେତେକ ଲୋକ ଆସି ଗପସପ ହୁଅନ୍ତି । ସ୍ୱଭାବତଃ ସେଠାରେ ବହୁ ପ୍ରକାର ଚୁଗୁଲି ହୁଏ । ଥରେ ଗଣି ମିଶ୍ର ବଙ୍ଗଳାର ନଦିଆ ସହରକୁ ବୁଲି ଯାଇଥିଲା । ସେଠାରେ ଆମ ଗାଁରୁ ଆଗରୁ କେତେଲୋକ ଯାଇ ବିଭିନ୍ନ କାମ କରୁଥିଲେ । ସେମାନେ ଗଣି ମିଶ୍ରଙ୍କୁ ଗାଁର ହାଲଚାଲ ଏବଂ ବିଭିନ୍ନ ପରିବାରର ଖବର ପଚାରିଲେ । ଗଣି ମିଶ୍ର ବହୁ ପରିବାରଙ୍କ ନାମରେ ବହୁ ମିଥ୍ୟା ଅପବାଦ କରିଥିଲେ । ନଦିଆରେ ରହୁଥିବା ଜଣେ ଲୋକ ଆମ ଗାଁର ଜଣେ ମାମଲତକାରଙ୍କ ପାଖକୁ ସେ ବିଷୟରେ ଖଣ୍ଡେ ଚିଠି ଲେଖିଥିଲେ । ଗାଁ ମାମଲତକାର ଗାଁରେ ସେ କଥା ପ୍ରଚାର କରିଦେଲା ଏବଂ ଗାଁର ବହୁଲୋକ ଗଣି ମିଶ୍ରଙ୍କ ଉପରେ ବହୁତ ରାଗିକରି ଥିଲେ । ଗଣି ମିଶ୍ର ଫେରିବା ପରେ ମୁକାବିଲା ପାଇଁ ହରପାର୍ବତୀ ମଣ୍ଡପ ଉପରେ ଗୋଟିଏ ସଭା ହେଲା ଏବଂ ଗଣି ମିଶ୍ରଙ୍କୁ ସେଠାକୁ ଡକା ହେଲା । ସେଠାରେ ବହୁ ପାଟିତୁଣ୍ଡ ହେଲା, ଗଣି ମିଶ୍ରଙ୍କୁ ବହୁଲୋକ ଗାଳି ଦେଲେ । ଗଣି ମିଶ୍ର ଅବଶ୍ୟ କହିଲେ ଯେ ସେ ବିଭିନ୍ନ ପରିବାର ନାମରେ ଅପବାଦ କଥାଗୁଡ଼ାକ ମୋଟେ କହି ନାହାନ୍ତି । ଚଷୁକୁଟିଲା ପରି ସେ ସଭାରେ ବହୁ ଯୁକ୍ତିତର୍କ ଓ ପାଟିତୁଣ୍ଡ ହୋଇ ସଭା ଶେଷ ହେଲା । ସେଠାରେ ମଧ୍ୟ କେତେକ ଲୋକ ପରସ୍ପରର ଗଳ ଖୋଳାଖୋଳି ହେଲେ । ଶେଷରେ ବହ୍ୱାରମ୍ଭ ଲଘୁ କ୍ରିୟା ପରି ସଭାରେ କିଛି ସିଦ୍ଧାନ୍ତ ନ ହୋଇ ଯେ ଯାହା ଘରକୁ ଫେରିଲେ । ପରିଣାମ ଏତିକି ହେଲା ଯେ ବହୁଲୋକ ବିଭିନ୍ନ ପରିବାର ବିଷୟରେ ଆହୁରି ଅନେକ ଚୁଗୁଲି ଶୁଣି ଘରକୁ ଫେରିଲେ ।

ଗାଁ ଲୋକଙ୍କ ମଧ୍ୟରେ ଆଉ ଗୋଟିଏ ବଡ଼ ଦୋଷ ସେତେବେଳେ ଆମେ ଦେଖୁଥିଲୁ । ଗାଁର କେତେକ ଲୋକ ଘରେ କଳିକଜିଆ କରି ତାଙ୍କ ସ୍ତ୍ରୀଙ୍କୁ ମାରନ୍ତି । ମାରିଲାବେଳେ ପାଟିତୁଣ୍ଡ ଓ କାନ୍ଦ ଶୁଭେ । କଳି ପାଖରେ ସାହି ପଡ଼ିଶାରୁ କେତେକ ଲୋକ ଜମିଯାଆନ୍ତି । ବେଳେବେଳେ କଜିଆ ପରେ ସ୍ତ୍ରୀ ଲୋକମାନେ ଆତ୍ମହତ୍ୟା କରିବାପାଇଁ କନିଅର ମଞ୍ଜି ଖାଇ ଦିଅନ୍ତି କିମ୍ବା ଦଉଡ଼ି ଲଗାଇ ମରିବାକୁ ଚେଷ୍ଟା କରନ୍ତି ।

ସେଥିରୁ ପୁଣି ଆଉ ଗୋଳମାଳ ବାହାରେ । ବେଳେ ବେଳେ ଜଣେ ଜଣେ ସ୍ତ୍ରୀଲୋକ ମରିଯାଆନ୍ତି । ପୁଲିସ ଆସି ତଦନ୍ତ କରେ । ଏପରି ଗୋଳମାଳରେ କେବଳ ସେହି ପରିବାରମାନଙ୍କର ଶାନ୍ତି ନଷ୍ଟ ହୁଏ ନାହିଁ, ସାହିପଡ଼ିଶାଙ୍କର ମଧ୍ୟ ଶାନ୍ତି ନଷ୍ଟ ହୁଏ । ଏପରି କଜିଆରେ ବଳ କମି ଥିବାରୁ ସ୍ତ୍ରୀଲୋକମାନେ ପୁରୁଷ ଲୋକଙ୍କୁ ମାରିପାରନ୍ତି ନାହିଁ । କେବଳ ପାଟିରେ ଗାଳି ଦିଅନ୍ତି ଏବଂ କାନ୍ଦନ୍ତି ।

ଥରେ କିନ୍ତୁ ଆମେ ଓଲଟା କଥା ଦେଖିଥିଲୁ । ଦିନେ ସକାଳ ଦଶଟା ବେଳେ ଆମେ ଦୁଇ ଚାରିଜଣ ପିଲା ସ୍କୁଲରୁ ଘରକୁ ଫେରୁଥିଲୁ । ବାଟରେ ବାଉରି ସାହିରେ ଦେଖିଲୁ କେତେକ ଲୋକଙ୍କ ମଧ୍ୟରେ କଜିଆ ଲାଗିଛି । କଜିଆ ଦେଖିବାପାଇଁ ଆମେ ମଧ୍ୟ ସେଠାରେ କିଛି ସମୟ ଠିଆ ହୋଇଗଲୁ । ଦେଖିଲୁ ଯେ ବାଉରି ସାହିର ଜଣେ ସ୍ତ୍ରୀ ଓ ପୁରୁଷ ଲୋକଙ୍କ ମଧ୍ୟରେ କଜିଆ ଲାଗିଛି । ଅନ୍ୟ ପାଞ୍ଚ ଛଅ ଜଣ ଲୋକ କେବଳ ଦେଖଣାହାରୀ ରୂପେ ଠିଆ ହୋଇଛନ୍ତି । ଏହି ସମୟରେ ପୁରୁଷ ଲୋକ ଜଣକ ସମସ୍ତଙ୍କ ଆଗରେ ସ୍ତ୍ରୀ ଲୋକଙ୍କୁ ଧରି ଦୁଇ ତିନି ବିଧା ମାଇଲା । ସ୍ତ୍ରୀଲୋକଟି ଓଲଟି ପଡ଼ି ପାଖରେ ପଡ଼ିଥିବା ଗୋଟିଏ ଝାଡୁରେ ପାଞ୍ଚ ଛଅ ପାହାର ମାରିଲା । ଏପରି ଅବସ୍ଥା ଦେଖି ପାଖରେ ଠିଆ ହୋଇଥିବା ଲୋକମାନେ ସେମାନଙ୍କୁ ଛଡ଼ାଛଡ଼ି କରିଦେଲେ ଏବଂ କଳି ଶାନ୍ତି ପଡ଼ିଗଲା । ଏ ଦୃଶ୍ୟ ଆମକୁ ବଡ଼ କୌତୁକପୂର୍ଣ୍ଣ ଲାଗିଲା । ଆମେ ହସି ହସି ସେହି କଳିକଥା ଗପି ଗପି ଘରକୁ ଫେରିଲୁ । ଜଣେ କହିଲା ବୀରାଙ୍ଗନା ଠିକ୍ କରିଛି । ଏ ପୁରୁଷଲୋକଗୁଡ଼ାଙ୍କର ବଳ ବେଶି ଥିବାରୁ ମାଇପମାନଙ୍କୁ ମାରୁଛନ୍ତି । ଆମେ ସେତେବେଳେ ମଧ୍ୟବୋଧ ଶେଷ କରି ବାଳବୋଧ ଆରମ୍ଭ କରିଥିଲୁ । ସେଥିରେ କୌଣସିଠାରେ ବୀରାଙ୍ଗନା ଶବ୍ଦ ନ ଥିଲା । ସେ ପିଲା ବୋଧହୁଏ ଯାତ୍ରା କିମ୍ବା ପାଲାରୁ ଶୁଣି ସେ ଶବ୍ଦ ବ୍ୟବହାର କରିଥିଲା ।

ଗାଁର ଏହି ସୁଖ, ଦୁଃଖ, ଦୋଷ ଓ ଗୁଣ ମଧ୍ୟରେ ଆଉ ଗୋଟିଏ କଥା ମୁଁ ସବୁବେଳେ ଶୁଣୁଥିଲି ଏବଂ ସେଥିରେ ମୋର ଦୃଢ଼ ବିଶ୍ୱାସ ଜନ୍ମି ଯାଇଥିଲା । ଏବେ ମଧ୍ୟ ବହୁ ବିପରୀତ ଅଭିଜ୍ଞତା ସତ୍ତ୍ୱେ, ସେଥିରେ ମୋର ଅନେକ ପରିମାଣରେ ବିଶ୍ୱାସ ରହିଛି । ଆମ ପିଲାକାଳେ ଆମ ଗାଁରେ ଚୋରି ମୋଟେ ନ ଥିଲା କହିଲେ ଚଳେ । କାଁ ଭାଁ କିଏ କାହା ବାଡ଼ିରୁ କଦଳୀ କାନ୍ଦିଏ କାଟି ନେଉଥିଲା କିମ୍ବା ନଡ଼ିଆଗଛରୁ ନଡ଼ିଆ ତୋଳି ନେଉଥିଲା । ସେଗୁଡ଼ାକ ଲୋକମାନେ ସାମାନ୍ୟ କଥା ବୋଲି ଭାବୁଥିଲେ । ଡକାୟତି ଏବଂ ହତ୍ୟା ଆମ ଗାଁରେ ମୋଟେ ନ ଥିଲା । ସେଗୁଡ଼ାକ ଆଜିଯାଏ ସୁଦ୍ଧା ଆମ ଗାଁରେ ବିରଳ । କିନ୍ତୁ କେତେକ ସ୍ଥଳରେ ଧନୀ ମହାଜନମାନେ ଜାଲ୍ ଫିସାଦି କରି ଗରିବଲୋକଙ୍କ ଜମିବାଡ଼ି ନେଇ ଯାଉଥିଲେ । କେତେକ ଲୋକ ମଧ୍ୟ କୋର୍ଟ କଚେରିରେ ମିଥ୍ୟା ସାକ୍ଷୀ ଦେଉଥିଲେ ଏବଂ ଠାକୁର ପାଖରେ ମିଛରେ ହଲପ କରୁଥିଲେ । କେତେକ ଲୋକ ମଧ୍ୟ ତାଙ୍କର ନିକଟସମ୍ପର୍କୀୟମାନଙ୍କୁ ଦୁଃଖ ନିର୍ଯାତନା ଦେଉଥିଲେ । ଏସବୁ କ୍ଷେତ୍ରରେ ନିଃସହାୟ ଲୋକମାନେ ଏବଂ ତାଙ୍କୁ ସହାନୁଭୂତି ଦେଉଥିବା ଲୋକମାନେ

ସବୁବେଳେ କହୁଥିଲେ, ଏ ସବୁ କାର୍ଯ୍ୟକୁ ଧର୍ମ ସହିବ ନାହିଁ । ଅର୍ଥାତ୍ ଏପରି ଅନ୍ୟାୟ କରୁଥିବା ଲୋକଙ୍କୁ ଈଶ୍ୱର ନିଶ୍ଚୟ ଦଣ୍ଡ ଦେବେ । ଧର୍ମ ଭୟଟା ଲୋକମାନଙ୍କ ମଧ୍ୟରେ ବହୁ ପରିମାଣରେ ଥିଲା । ଦୈନନ୍ଦିନ ଜୀବନରେ ଘଟିଯାଉଥିବା କେତେକ ଘଟଣାକୁ ଲୋକମାନେ ଦୈବ ଦଣ୍ଡ ବୋଲି କହୁଥିଲେ । ଦୈବ ଦଣ୍ଡ ଇହକାଳ କିମ୍ବା ପରକାଳରେ ହେବ ବୋଲି ଲୋକଙ୍କ ବିଶ୍ୱାସ ଥିଲା । ପରକାଳ ଦଣ୍ଡରେ ନରକ ଯାତନା ଭୋଗ ପ୍ରଭୃତି ବିଷୟରେ କାହାରି ପ୍ରତ୍ୟକ୍ଷ ଜ୍ଞାନ ନ ଥିଲା । ସେ ବିଷୟରେ କେବଳ ପୁରାଣ ବର୍ଣ୍ଣନା ବିଶ୍ୱାସ କରିବା କଥା । ମାତ୍ର ଜୀବିତ ଅବସ୍ଥାରେ, ସନ୍ତାନସନ୍ତତି ମରିଯିବା, ନିଜେ ବହୁକାଳ ରୋଗ ଭୋଗିବା ଏବଂ ମରିଯିବା, ନିଃସନ୍ତାନ ହୋଇଯିବା ଏବଂ ଅଳ୍ପବର୍ଷ ମଧ୍ୟରେ ଧନସମ୍ପତ୍ତି ଚାଲିଯିବା, ଦୈବୀଦଣ୍ଡର ନିଦର୍ଶନ ବୋଲି ଲୋକମାନେ ଭାବୁଥିଲେ ।

ଆମ ପିଲାଦିନେ ଦିନେ ଖରାବେଳେ ଈଶ୍ୱର ସାହୁ ମହାଜନ ଆମ ଘର ପାଖରେ ଯାଉ ଯାଉ ବାଟରେ ପଡ଼ି ମରିଗଲା । ତାର ବୋଧହୁଏ ହୃତ୍‌ପିଣ୍ଡ କ୍ରିୟା ବନ୍ଦ ହୋଇଗଲା । ସେ ଅତ୍ୟାଚାରୀ ମହାଜନ ଥିଲା କି ନାହିଁ ମୁଁ ଜାଣି ନାହିଁ । କିନ୍ତୁ ଲୋକେ କହିଲେ ସାହୁ ବହୁ ଅନ୍ୟାୟ କରିଥିବା ହେତୁ ବାଟରେ ପଡ଼ି ମରିଗଲା । ସେହିପରି ସୋମନାଥ ଜେନା ନିଃସନ୍ତାନ ହୋଇଗଲା । ତାର ଜମି ଡିହବାଡ଼ି ତାର ଭଣଜା ବିକ୍ରି କରି ଅନ୍ୟ ଗାଁରେ ରହିଲା । ଲୋକେ କହିଲେ ବହୁ ଅନ୍ୟାୟ କରିଥିବା ହେତୁ ତାହାର କୁଳ ବୁଡ଼ିଗଲା । କସ୍ତୁରୀ ମହାନ୍ତି ତାହାର ଘରଠାରୁ ଅଳ୍ପଦୂରରେ ବିଲ ପାଖରେ ଗୋଟିଏ ଟୁଙ୍ଗୀ ଘର କରିଥାଏ ଏବଂ ଅନେକ ଦିନ ରାତିରେ ସେ ସେ ଘରେ ରହୁଥିଲା । ଦିନେ ରାତିରେ ତାକୁ ସାପ କାମୁଡ଼ିଲା ଏବଂ ସେ ଘରେ ସେ ମରିଗଲା । ଲୋକେ ପ୍ରଚାର କଲେ ଯେ ଘଟଣାର ଦୁଇଦିନ ପୂର୍ବରୁ ସେ ଗାଦି ଗୋସାଇଁ ପାଖରେ ମିଛ ହଲପ କରିଥିଲା, ସେଥିଯୋଗୁଁ ତାକୁ ସାପ କାମୁଡ଼ିଲା । ଏହିପରି ବହୁ ଘଟଣା ଅନ୍ୟାୟର ଫଳ ବୋଲି ଲୋକମାନେ ଭାବୁଥିଲେ । କେତେକ ଲୋକ ଧର୍ମ ଭୟରେ ମଧ୍ୟ ସତ୍‌ମାର୍ଗରେ ଚାଲୁଥିଲେ । ଗାଁର ଉଛବ ସାହୁ ଗୋଟିଏ ଛୋଟିଆ ଦୋକାନ କରିଥିଲା । ଅନେକ ଲୋକ ତା ଦୋକାନରୁ ବାକିରେ ଜିନିଷ ନେଇ ପଇସା ଦେଲେ ନାହିଁ । ସେ ମଧ୍ୟ ବହୁ ଲୋକଙ୍କଠାରୁ ବହୁ ପଇସା ହାତଉଧାର କରିଥିଲା । ତାର ଦୋକାନ ଭାଙ୍ଗିଗଲା । କିନ୍ତୁ ସେ ତାର ସମ୍ପତ୍ତି ବିକ୍ରିକରି ସବୁ ଧାର ପରିଶୋଧ କରିଦେଲା । ଦିନେ ଆମ ଦଦେଇଙ୍କ ପାଖରେ ସେ କହୁଥିଲା "କେବେଇ ମୁଁ ଅସତିଆ ହେବି ନାହିଁ । ସମସ୍ତଙ୍କ ଧାର ପରିଶୋଧ କରିଦେବି ।" ଏକଥା ମୁଁ ନିଜେ ଶୁଣିଥିଲି । ବହୁବର୍ଷ ପରେ ଗାଁର ଝାଟୁଆ ମହାନ୍ତି ମୋ ଠାରୁ ଦଶଟି ଟଙ୍କା ଧାର ନେଇ ଦୁଇ ତିନି ଦିନ ପରେ ଦେବ ବୋଲି କହିଲା । ମୋତେ ଅନେକ ଲୋକ କହିଲେ ଝାଟୁଆ ବହୁ ଲୋକଙ୍କଠାରୁ ଧାର କରେ, ମାତ୍ର ପରିଶୋଧ କରେ ନାହିଁ । ମୋର ଟଙ୍କା ଦେବ ନାହିଁ । ଦଶଟି ମାତ୍ର ଟଙ୍କା ନେଇଥିବାରୁ ମୁଁ କିଛି ବ୍ୟସ୍ତ ହେଲି ନାହିଁ । କିନ୍ତୁ ଦୁଇଦିନ ପରେ ଝାଟୁଆ ମୋ ଟଙ୍କା ଫେରାଇ ଦେଲା । ମୁଁ ତାକୁ କହିଲି, "ହଇରେ ସମସ୍ତେ

କହୁଛନ୍ତି ତୁ ଧାର ନେଇ ମୋତେ ଫେରାଉ ନାହୁଁ ବୋଲି କିନ୍ତୁ ମୋ ଟଙ୍କା ଫେରାଇ ଦେଲୁ ।'' ଝାଟୁଆ କହିଲା । ''ଆଜ୍ଞା ସବୁ ଜିନିଷ ଖାଇ ପାଣିରେ ମୁହଁ ଧୋଇବ, ପାଣିକୁ ଖାଇଲେ କେଉଁଥିରେ ମୁହଁ ଧୋଇବ ?'' ମୁଁ କେବଳ ହସିଲି । ଆଗେ ବହୁ ଗାଁ ଲୋକ ଧର୍ମ ଭୟରେ ଅନ୍ୟାୟ କରିବାକୁ ସାହସ କରୁ ନ ଥିଲେ । ଆଜିକାଲି ସେ ଭୟଟା ଖୁବ୍ କମିଯାଇଛି । ଏ ବିଷୟରେ ମୋର ମନର ଦ୍ୱନ୍ଦ୍ୱ କିନ୍ତୁ ମୁଁ ଆଜିଯାଏ ସମାଧାନ କରି ପାରି ନାହିଁ । ପିଲାଦିନେ ମୁଁ ଧର୍ମଦଣ୍ଡ କଥାଟା ଦୃଢ଼ ଭାବରେ ବିଶ୍ୱାସ କରୁଥିଲି । ବିଗତ ସତୁରି ପଚସ୍ତରି ବର୍ଷ ମଧ୍ୟରେ ମୁଁ ମଧ୍ୟ ଦେଖିଛି ଯେ ଅନେକ ଲୋକ ଜୀବନରେ ବହୁ ଅନ୍ୟାୟ ଓ ଅପକର୍ମ କରିଛନ୍ତି ଏବଂ ତାର ଶେଷ ପରିଣତି ଅତ୍ୟନ୍ତ ଦୁଃଖାବହ ହୋଇଛି । ମାତ୍ର ଆଉ ଅନେକ ଲୋକ ଜୀବନରେ ମୋର ଜ୍ଞାତସାରରେ ବହୁ ଅନ୍ୟାୟ ଓ ଅପକର୍ମ କରିଛନ୍ତି । ମାତ୍ର ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କର ସାଂସାରିକ ଧନସମ୍ପତ୍ତି ଏବଂ କ୍ଷମତାରେ ଅବକ୍ଷୟ ଘଟି ନାହିଁ । ତାଙ୍କ ମନର ସୁଖଶାନ୍ତି କଥା ଅବଶ୍ୟ ମୋତେ ଜଣା ନାହିଁ । ଆହୁରି ମଧ୍ୟ ଅନେକ ଲୋକ ତାଙ୍କ ଜୀବନରେ ବହୁ ଦୁର୍ନୀତି, ଅନ୍ୟାୟ ଏବଂ ଦୁଷ୍କର୍ମ କରିଛନ୍ତି, କିନ୍ତୁ ସେ ସବୁ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଲୋକଲୋଚନକୁ ଆସି ନାହିଁ । ସେମାନେ ସସମ୍ମାନେ ଜଗତରୁ ବିଦାୟ ନେଇଛନ୍ତି । ସେଥିଯୋଗୁଁ ମୋ ମନରେ ସର୍ବଦା ଗୋଟିଏ ପ୍ରଶ୍ନ ରହିଛି, ସତରେ କଣ ଗୋଟାଏ ଧର୍ମଦଣ୍ଡ ଅଛି ?

# ପଲ୍ଲୀ ପରିବେଶ ଓ ରଥତୋଟା

ଆମେ ପ୍ରାଥମିକ ବିଦ୍ୟାଳୟରେ ପଢୁଥିବା ସମୟରେ ପ୍ରତିଦିନ ସନ୍ଧ୍ୟାବେଳେ ଆମ ଦାଣ୍ଡ ପିଣ୍ଡାରେ ପୁରାଣ ପାଠ ହେଉଥିଲା । ମହାଭାରତ, ରାମାୟଣ, ହରିବଂଶ, ନୃସିଂହ ପୁରାଣ ପ୍ରଭୃତି ଗୋଟିକ ପରେ ଗୋଟିଏ ବର୍ଷକଯାକ ବୋଲା ହେଉଥାଏ । ଜଣେ ଯୁବକ ବା ବୟସ୍କ ବ୍ୟକ୍ତି ଦୀପ ଆଲୁଅରେ ତାଳପତ୍ର ପୋଥିରୁ ବିଭିନ୍ନ ବୃତ୍ତରେ ଲେଖା ହୋଇଥିବା ବିଭିନ୍ନ ପୁରାଣ ବଡ଼ପାଟିରେ ବୋଲନ୍ତି । ସାହିର ବୁଢ଼ା, ବୁଢ଼ୀ, ପିଲା ଧାଡ଼ିମୂଳିଆ ପିଣ୍ଡାରେ ବସି ଶୁଣନ୍ତି । ଦିନେ ନରହରି ଆପଣେ ଦାଣ୍ଡି ରାମାୟଣ ଦାଣ୍ଡି ବୃତ୍ତ ବଡ଼ ପାଟିରେ ବୋଲୁଥିଲେ । ସମସ୍ତେ ତନ୍ମୟ ହୋଇ ଶୁଣୁଥିଲେ । ହଠାତ୍ ଆପଣେ ବନ୍ଦ ହୋଇଗଲେ ଏବଂ ବିସ୍ମିତ ହୋଇ ବୋଲୁଥିବା ତାଳପତ୍ର ଉପରେ ଆଖି ବୁଲାଇଲେ । ରାମାୟଣ କଥାବସ୍ତୁ ସହିତ ସେ ତାଳପତ୍ରରେ ଲେଖା ହୋଇଥିଲା ''ଆଜି ଗୋରୁ ପାଳିଥିବାରୁ ଲେଖା ଏଇଠି ବନ୍ଦ ରହିଲା ।'' ବନ୍ଦ ହୋଇଯିବାର କାରଣ ପଚାରିବାରୁ ଆପଣେ କହିଲେ ରାମାୟଣ ପଦ୍ୟ ସହିତ ଏହା ଲେଖାହୋଇଛି । ସମସ୍ତେ ଶୁଣି ହସିଲେ ଏବଂ ଏ ପୋଥିରେ ରାମାୟଣ କାବ୍ୟ କିଏ ଉତାରିଛି ପଚାରି ବୁଝିଲେ ଯେ ଆମ ପଡ଼ିଶା ଗାଁର ସୁଦର୍ଶନ ରଥ ସେ ପୋଥିରେ ରାମାୟଣ କାବ୍ୟ ଉତାରିଥିଲେ ।

ଆମ ଘର ପଛ ପଟେ ବାଡ଼ି ପୋଖରୀ ଆର ପଟେ କଲ୍ୟାଣପୁର ଗାଁ । ସେହି ଗାଁରେ ପୋଖରୀ ଠାରୁ ପ୍ରାୟ ପାଞ୍ଚ ସାତଶହ ହାତ ଦୂରରେ ନଡ଼ିଆ, ଆମ୍ବ, ପଣସ ତୋଟା ପରିବେଷ୍ଟିତ ଗୋଟିଏ ଡିହରେ ରଥ ଘର । ବହୁକାଳ ହେଲା ସେଠାରେ ରଥବଂଶ ବୃଦ୍ଧି ହୋଇ ରଥ ସାହି ହୋଇ ନାହିଁ । ଗୋଟିକିଆ ଘରଟିଏ ହୋଇ ରହିଛି । ପ୍ରାୟ ଅଶୀ ବର୍ଷ ପରେ ମୁଁ ଦେଖୁଛି, ଆଜି ମଧ୍ୟ ରଥଘର ଗୋଟିକିଆ ଘରଟିଏ ହୋଇ ରହିଛି । କଲ୍ୟାଣପୁର ଗାଁରେ ରଥ ଘରର ପଡ଼ିଶା ଜେନା, ମହାନ୍ତି ପ୍ରଭୃତି ଖଣ୍ଡାୟତ ଏବଂ ଚଷା ପ୍ରଭୃତି ଜାତିର ଲୋକ । ରଥଘର ସେମାନଙ୍କ ସହିତ ଗୋରୁପାଳି ପ୍ରଭୃତି ଦୈନନ୍ଦିନ ଚଳିବା କାର୍ଯ୍ୟରେ ସହଯୋଗ କରନ୍ତି କିନ୍ତୁ ବ୍ରାହ୍ମଣ ପଙ୍‌କ୍ତିରେ ଆମ ସାହି ସହିତ ତାଙ୍କର କାରବାର । ଗୋରୁପାଳି ଅର୍ଥ ଗାଁର ସବୁ ଘରର ଗୋରୁଗାଈ ଏକାଠି ଗୋଟିଏ ଗୋଠରେ ଏକତ୍ର କରି ଦଣ୍ଡା ପଡ଼ିଆ ଗୋଚର ଜମିରେ ଚରାଇବାକୁ ନିଆଯାଏ ଏବଂ ଗାଁର ବିଭିନ୍ନ ପରିବାର ପାଳିକରି ଗୋଠ ଜଗନ୍ତି । ଏହା ଗୋଟିଏ ପୁରାକାଳର ଗ୍ରାମ ଗୋଷ୍ଠୀ ସହଯୋଗ ।

ସୁଦର୍ଶନ ରଥ, ମୁଁ କଲ୍ୟାଣପୁର ପ୍ରାଥମିକ ସ୍କୁଲରେ ପଢୁଥିବା ସମୟରେ ସ୍କୁଲର ଦ୍ୱିତୀୟ ଶିକ୍ଷକ ଥିଲେ ଏବଂ ମାସକୁ ମାତ୍ର ଚାରିଗୋଟି ଟଙ୍କା ଦରମା ପାଉଥିଲେ । ସେ

ପିଲାମାନଙ୍କୁ ଅକ୍ଷରଲେଖା, ବର୍ଣ୍ଣମାଳା ଓ ପଣିକିଆ ପଢ଼ାଉଥିଲେ । ସେ ପୂର୍ବକାଳର ଚାଟଶାଳୀ ପ୍ରଣାଳୀରେ ପଢ଼ି ପ୍ରାଥମିକ ଶିକ୍ଷା ଶେଷ କରିଥିଲେ । କିନ୍ତୁ ତାଙ୍କର ତାଳପତ୍ରରେ ଲେଖା ଅକ୍ଷର ଅତି ସୁନ୍ଦର । ସେ ବିଭିନ୍ନ ପୋଥିରୁ ରାମାୟଣ ଓ ମହାଭାରତ ପ୍ରଭୃତି ନୂତନ ପୋଥିକୁ ଉତାରୁଥିଲେ । ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ମୁଁ ତାଙ୍କୁ ଦେଖିଛି । ଅତି ଅଳ୍ପ ଜମିବାଡ଼ି ସହିତ ସରଳ ଓ ଦରିଦ୍ର ଭାବରେ ତାଙ୍କର ପରିବାର ଜୀବନ ଯାପନ କରୁଥିଲେ ।

ଆମ ସାହିର ବୁଢ଼ା ଲୋକମାନେ କହୁଥିଲେ, ଧଳତଙ୍ଗଗଡ଼ ରାଜା ଆମ ମିଶ୍ର ପରିବାରକୁ ପୁରୀ ଶାସନରୁ ଅଣାଇ ଆମ ଗ୍ରାମରେ ରଖାଇଥିଲେ । କ୍ରମେ ଗୋଟିଏ ଘରୁ ଆଠ ଦଶ ଘର ହୋଇଛନ୍ତି । ମିଶ୍ର ପରିବାରମାନେ ତାଙ୍କ କୁଟୁମ୍ବର ସୂତିକା ବା ମୃତିକା ପ୍ରଭୃତି ଅଶୌଚ ସମୟରେ ଠାକୁର ପୂଜା କରିବାକୁ ସେହି ପୁରୀ ଶାସନରୁ ଗୋଟିଏ ରଥ ପରିବାର ଆଣି ଆମକୁ ଦିଆଯାଇଥିବା ବିରାଟ ଡିହବାଡ଼ିରୁ କିଛି ଅଂଶରେ ସେ ରଥ ପରିବାରକୁ ଥଇଥାନ କରିଥିଲେ । ମୁଁ କଲେଜରେ ଚାକିରି କରିବା ପର୍ଯ୍ୟନ୍ତ ଦେଖିଛି ଯେ ଆମ କୁଟୁମ୍ବର ଅଶୌଚ ସମୟରେ ରଥଘରର ଜଣେ ଆସି ଆମ ଘରମାନଙ୍କରେ ଦିଅଁଙ୍କୁ ଗାଧୋଇ ପୂଜା କରିଦିଅନ୍ତି । ଏ ବିଷୟରେ କୌଣସି ଲେଖାପଢ଼ା ଚୁକ୍ତି ନ ଥିଲା । ପରମ୍ପରାକ୍ରମେ ତାହା ଗଡ଼ି ଆସୁଥିଲା । କିନ୍ତୁ ରଥ ପରିବାରରେ ଅଶୌଚ ହେଲେ ଆମ କୁଟୁମ୍ବରୁ କେହି ଯାଇ ତାଙ୍କର ଘର ଠାକୁର ପୂଜା କରୁ ନ ଥିଲେ । ସେମାନେ ଆପୋସ ଭାବରେ ଆମ କୁଟୁମ୍ବରୁ କାହାକୁ ଡାକି ସେ କାର୍ଯ୍ୟ କରାଉଥିବେ ।

ରଥଘର ବିଷୟରେ ଏତେଗୁଡ଼ାଏ ଲେଖିବାର ଉଦ୍ଦେଶ୍ୟ ହେଉଛି, ରଥଘରର ଡିହବାଡ଼ିକୁ ଲାଗି ଆମ ପରିବାରର ଏକ ଏକରରୁ ଊର୍ଦ୍ଧ୍ୱ ଖଣ୍ଡିଏ ଜମିରେ ବଡ଼ ଆମ୍ବ ତୋଟାଟିଏ ଥିଲା । ସେଥିରେ ପ୍ରାୟ ପଚିଶ ଗଛ ଆମ୍ବ, ଦୁଇ ଚାରି ଗଛ ପଣସ, ପାଞ୍ଚ ଛଅଟି ନଡ଼ିଆଗଛ ଏବଂ ପାଖକୁ ଲାଗି ଖଣ୍ଡିଏ ଜମିରେ ଦଶପନ୍ଦର ବୁଦା ବାଉଁଶ ଥିଲା । ସେ ଆମ୍ବତୋଟାରେ ମଣିଷଙ୍କ ପରି ପ୍ରତି ଆମ୍ବ ଗଛରେ ଫଳର ଗୁଣ ଅନୁସାରେ ବ୍ୟକ୍ତିତ୍ୱ ଥିଲା । ଗଛ ସବୁର ନାମ ଚୋପାବହଳୀ, ବଡ଼ସୁନ୍ଦରୀ, ସାନସୁନ୍ଦରୀ, କାକୁଡ଼ିଆ, ନବାତିଆ, ଜହ୍ନା, ମାଈତାଳ, ଅଷାଢୁଆ ଇତ୍ୟାଦି । ସେ ତୋଟାକୁ ଲାଗି ଆମ ପଡ଼ୋଶୀ ଘରମାନଙ୍କର ମଧ୍ୟ ଆମ୍ବ, ପଣସ ଓ ନଡ଼ିଆର ତୋଟାମାନ ଥିଲା । ବାସ୍ତବ କ୍ଷେତ୍ରରେ ଆମ ବାଡ଼ିପଟ ବାଡ଼ିପୋଖରୀ ପରେ ଆମ ତୋଟା, ପଡ଼ୋଶୀମାନଙ୍କର ତୋଟା, ରଥଘର ଡିହବାଡ଼ି ମିଶି ପ୍ରାୟ ଦଶ ଏକରରୁ ଊର୍ଦ୍ଧ୍ୱ ଗୋଟିଏ ବିରାଟ ତୋଟା ଅଞ୍ଚଳ ଥିଲା । ଖରାଦିନେ ଆମ୍ବ, ପଣସ, ନଡ଼ିଆ ଏବଂ ଅନ୍ୟ ଫଳରେ ପୂର୍ଣ୍ଣ ସେ ଅଞ୍ଚଳ ଅତି ମନୋରମ ଥିଲା । ଖରାଦିନେ ଖୋଲା ଦକ୍ଷିଣା ପବନରେ ସେ ତୋଟାମାନଙ୍କରେ ବସିବା ବା ଶୋଇବା ଅତ୍ୟନ୍ତ ସୁଖକର ଥିଲା ।

ପିଲାଦିନୁ କଲେଜ ପଢ଼ା ଶେଷ ପର୍ଯ୍ୟନ୍ତ, ସେ ତୋଟାଟା ମୋର ସବୁଠାରୁ ଆଦରଣୀୟ ସ୍ଥାନ ଥିଲା । ପିଲାଦିନେ ଖରାବେଳେ ସେଠାରେ ଆମେ ଆମ୍ବ ଜଗୁଥିଲୁ ।

ସ୍କୁଲ କଲେଜରେ ପଢୁଥିବା ବେଳେ ଖରାବେଳେ ମୁଁ ଖଣ୍ଡିଏ ବହି ଏବଂ ଖଣ୍ଡିଏ ଶପ ନେଇ ସେହି ତୋଟାକୁ ଚାଲିଯାଏ । ସମସ୍ତ ଖରାବେଳ ଏବଂ ଅପରାହ୍ଣରେ ସେହି ତୋଟାରେ କଟାଏ । ଆମ ତୋଟାଟାକୁ ସମସ୍ତେ ରଥତୋଟା ବୋଲି କହନ୍ତି କାରଣ ରଥଘର କଡ଼ରେ ସେ ତୋଟାଟା ଥିଲା । ଅପ୍ରେଲ, ମେ, ଜୁନ୍ ମାସରେ ଆମ୍ବ ପାଚିଲାବେଳକୁ ଆମ୍ବ ତୋଳା ହୁଏ । ଖରାବେଳେ ପାଚିଲା ଆମ୍ବ ଝଡ଼େ । ପାଚିଲା ଆମ୍ବ ଗୋଟାଇବା ଏବଂ ବିଭିନ୍ନ ଗଛମାନଙ୍କରୁ ବେଡା, ବେଡା ଆମ୍ବ ତୋଳା ଦେଖିବା ଆମ ପିଲାଦିନେ ସବୁଠାରୁ ଅଧିକ ଆନନ୍ଦଦାୟକ ଅନୁଭୂତି ଥିଲା । ସେ ଆମ୍ବଗଛଗୁଡ଼ାକ ବୋଧହୁଏ ଆମ ଜେଜେବାପାଙ୍କ ଯୁବକ ଅବସ୍ଥାରେ ଲାଗିଥିଲା । କାରଣ ଆମ ପିଲାବେଳକୁ ସେ ଗଛ ସବୁ ବଡ଼ ହୋଇଯାଇଥିଲା ଏବଂ ସେଥିରେ ପ୍ରତିବର୍ଷ ସର୍ବାଧିକ ଫଳ ଫଳୁଥିଲା । ସେ ଆମ୍ବ ସବୁ ବନିବା ଅବସ୍ଥାରେ ତୋଳି ଆମ ଘରେ ଗୋଟିଏ କୋଠରିରେ ବାଲିରେ ବସାଯାଉଥିଲା । କାରଣ ଆମେ ଶୁଣୁଥିଲୁ ଯେ ବାଲିରେ ବସିଲେ ଆମ୍ବ ଭଲ ଭାବରେ ପାଚିଯାଏ ଏବଂ ଖଟା ଅଂଶ କମିଯାଏ ।

ଆମ ଆମ୍ବତୋଟାର ଉତ୍ତରରେ ମାଛଗାଁ କେନାଲର ଗୋଟିଏ ଶାଖା କେନାଲ ଥାଏ । କେନାଲ କଡ଼ ଯାଏ ଆମ୍ବ ଗଛ ସବୁ ଲଗା ଯାଇଥିଲା । କେନାଲର ଅନ୍ୟ ପାଖରେ ଜଳସେଚିତ ଧାନ ଗହୀର । ସେଥିରେ ମଧ୍ୟ ଆମର ବହୁ ଜମି ଥିଲା । ତୋଟାର ପଶ୍ଚିମରେ ରଥଘର ଡିହ ଏବଂ ଉତ୍ତର ପଶ୍ଚିମ କୋଣରେ ଆନନ୍ଦ ମଳିକର ଘର ଥିଲା । ଆନନ୍ଦ ମଳିକର ଘର ଆମ ତୋଟା ଜମିରେ ନ ଥିଲା । ତା ଘର ଆମ ପଡ଼ିଶାଘରର ନଡ଼ିଆ ବଗିଚାରେ ଥିଲା । ଆନନ୍ଦ ମଳିକ ତାର ଜୀବନଯାକ ଆମ ଘରେ କୋଠିଆ ଥିଲା ଏବଂ ତାର ପରିବାର ଆମ ତୋଟା ଜଗୁଥିଲେ । ତାର ପରିବାରମାନେ, ଆନନ୍ଦ, ଡାକ ନାମ ଆନ୍ଦା ଓ ତାର ସ୍ତ୍ରୀ ଗୁରୀ । ତାର କୌଣସି ପିଲାପିଲି ନ ଥିଲେ । ମୋ ଜନ୍ମ ପୂର୍ବରୁ ଆନନ୍ଦ ମଳିକର ବିଧବା ମା ଅନ୍ୟ ଗ୍ରାମରୁ ଦୁଇ ଗୋଟି ଛୋଟ ପୁଅ ଆନ୍ଦା ଓ ସାନ୍ଦାକୁ ଧରି ଆମ ଗାଁକୁ ଆସିଥିଲେ । ଆନ୍ଦା ମା ଆମ ଘରେ ଗୁହାଳ ଗୋବର ପୋଛାପୋଛି କାର୍ଯ୍ୟ କଲା ଏବଂ ଆନ୍ଦା ଅଳ୍ପ ବୟସରୁ ଆମ ଘରେ କୋଠିଆ ହୋଇଥିଲା । ସେମାନେ ଜାତିରେ କଣ୍ଡରା ଥିଲେ । ଆନ୍ଦା ମା ଆମ ଗାଁରେ ତାର ସାନପୁଅ ସାନନ୍ଦ, ଡାକ ନାମ ସାନ୍ଦାକୁ ଅନ୍ୟ ଜଣକୁ ପୁଅ କରି ଦେଇଥିଲା । ଘରେ ଆନ୍ଦା ଓ ତାର ମା ଥିଲେ । କାଳକ୍ରମେ ଆନ୍ଦା ମା ମରିଗଲା ଏବଂ ଆନ୍ଦା ଗୁରୀକୁ ବିଭା ହେଲା । ସୁତରାଂ ତାର ପରିବାରରେ ପଚାଶ ବର୍ଷରୁ ଅଧିକ କାଳ କେବଳ ଆନ୍ଦା ଓ ଗୁରୀ ଥା'ନ୍ତି । ଆନ୍ଦା ଆମ ଘରେ କୋଠିଆ ଥାଏ ଏବଂ ଗୁରୀ ଆମ ବିଲରେ ମଜୁରିରେ ଚାଷ କାମ କରେ । ଆନ୍ଦା ନଡ଼ିଆଗଛ ପ୍ରଭୃତି ଚଢ଼ିବାରେ ଅତି ଦକ୍ଷ ଥିଲା ଏବଂ ଆମ ସାହିର ବିଭିନ୍ନ ଲୋକଙ୍କ ନଡ଼ିଆଗଛରୁ ନଡ଼ିଆ ତୋଳି ଗୋଟିଏ ଗଛକୁ ଗୋଟିଏ ନଡ଼ିଆ ତାର ମଜୁରି ହିସାବରେ ନେଉଥିଲା । ଆନ୍ଦାର ପରିବାର ଦରିଦ୍ର ମୂଲିଆର ପରିବାର ଥିଲେ ସୁଦ୍ଧା ଅତି ସୁଖୀ ପରିବାର ଥିଲା । ଭକ୍ତକବି ମଧୁସୂଦନ ରାଓ ଯାହା ଲେଖିଛନ୍ତି, ''ବୈକୁଣ୍ଠ ସମାନ ଆହା ଅଟେ ସେହି ଘର ପରସ୍ପର

ସ୍ନେହ ଯହିଁ ଥାଏ ନିରନ୍ତର'', ତାହା ପଢ଼ିଲା ବେଳେ ମୋର ଦରିଦ୍ର ଆନ୍ଦା ମଳିକର ଘର କଥା ମନେ ପଡ଼େ । ପୁଣି ଫକୀରମୋହନଙ୍କ 'ବଗଲା ବଗୁଲୀ' କଥା ପଢ଼ିଲାବେଳେ ମୋର ସବୁବେଳେ ଆନ୍ଦା ଓ ଗୁରୀର କଥା ମନେପଡ଼େ । ସେମାନେ କଳ୍ପନାରାଜ୍ୟର ବଗଲା ବଗୁଲୀ ନ ଥିଲେ, ପ୍ରକୃତ ଜୀବନରେ ଆନ୍ଦା ଓ ଗୁରୀ ଥିଲେ ।

ଆନ୍ଦା ପ୍ରାୟ ପଚାଶ ବର୍ଷ ଆମ ଘରେ କୋଠିଆ ଥିଲା । ସେ ତା ଜୀବନରେ ଆଉ କାହା ଘରେ କାମ କରି ନାହିଁ । କାର୍ଯ୍ୟକ୍ଷମ ଥିବା ପର୍ଯ୍ୟନ୍ତ ଉଭୟ ଆନ୍ଦା ଓ ଗୁରୀ ଆମ ଘରେ କାମ କରୁଥିଲେ । ଆମ ଘର ଦୁଇ ଭାଗ ହୋଇଯିବା ସମୟରେ କୋଠିଆ ଚାକର ମଧ୍ୟ ବଣ୍ଟା ହୋଇ ଯାଇଥିଲେ, ଆନ୍ଦା ଆମ ଭାଗରେ ପଡ଼ିଥିଲା । ଏହି ବଣ୍ଟାବଣ୍ଟି ହେବା ସମୟରେ ମୋ ମନ ବିରକ୍ତିରେ ପୂର୍ଣ୍ଣ ହୋଇ ଯାଇଥିଲା । ମୁଁ କହୁଥିଲି କୋଠିଆ ଚାକର କଣ ଗୋରୁଗାଈ ହୋଇଛନ୍ତି କି ଏପରି ବଣ୍ଟା ହେବେ ? ସେମାନେ ନିଜ ଇଚ୍ଛାରେ ଯାହା ଘରେ କାମ କରିବେ । ମାତ୍ର କୋଠିଆ ଚାକର ବାଣ୍ଟିବାରେ କେହି ଆପତ୍ତି କଲେ ନାହିଁ । କୋଠିଆ ଚାକର ମଧ୍ୟ କାହା ଭାଗରେ ଯିବାକୁ ଆପତ୍ତି କଲେ ନାହିଁ । ସେମାନଙ୍କ ମତ ଥିଲା ଯେ ସେହି ଜମିରେ ତ ସେମାନେ କାମ କରୁଥିଲେ । ସେ ଜମି କାହା ଭାଗରେ ପଡ଼ିଲା ସେଥିରେ ତାଙ୍କର ଯାଏ ଆସେ କେତେ ?

ଆନନ୍ଦ ମଳିକ ଅତି ବିଶ୍ୱସ୍ତ ଲୋକ ଥିଲା ଏବଂ ଆମ ପରିବାରର ଜଣେ ଲୋକ ହିସାବରେ ଚଳୁଥିଲା । ଆମ ପରିବାରର ଅନ୍ୟ କୌଣସି ପରିବାର ସହିତ ଗଣ୍ଡଗୋଳ ହେଲାବେଳେ ଆନନ୍ଦ ମୋ ଦଦେଇଙ୍କର ଅଙ୍ଗରକ୍ଷୀ ହିସାବରେ କାମ କରୁଥିଲା । ଦଦେଇଙ୍କ ମୃତ୍ୟୁ ପରେ ଆନନ୍ଦ ଆମ ଘରର ମୁରବି ତଥା ମୋର ବଡ଼ଭାଇଙ୍କର ମଧ୍ୟ ଅଙ୍ଗରକ୍ଷୀ ହିସାବରେ କାମ କରୁଥିଲା । ଦୂର ଗାଁରୁ ଆମ ଘରକୁ କାହାକୁ ଡାକିବାକୁ ହେଲେ କିମ୍ବା ଆମର ଅନ୍ୟ ଗାଁମାନଙ୍କରେ ବନ୍ଧୁବାନ୍ଧବଙ୍କ ଘରକୁ କୌଣସି ଖବର ଦେବାକୁ ହେଲେ, ଆନନ୍ଦ ମଳିକ ବାର୍ତ୍ତାବହ ଓ ବରକନ୍ଦାଜର କାମ କରୁଥିଲା ।

କେଉଁ କଥାତ ଚିରକାଳ ଚାଲେ ନାହିଁ । ବୃଦ୍ଧାବସ୍ଥାରେ ଆଗ ଆନ୍ଦା ମରିଗଲା । ତାର ବର୍ଷେ ଦେଢ଼ବର୍ଷ ପରେ ଦିନେ ଦେଖାଗଲା ଯେ ଗୁରୀ ତା'ଘରେ ରାତିରେ ଶୋଇଥିବାବେଳେ ମରିଯାଇଛି । ସେମାନଙ୍କର ମୃତ୍ୟୁ ପରେ ତାଙ୍କ ଘର ଭାଙ୍ଗିଗଲା । ଘର ଭାଙ୍ଗି ପଡ଼ିବା ପରେ କାଳେ ତାର କୌଣସି ସମ୍ପର୍କୀୟ ଲୋକ ଘର ଡିହ ଦାବି କରିବ, ସେହି ଭୟରେ ନଡ଼ିଆବଗିଚାର ମାଲିକ ଆମ ପଡ଼ୋଶୀ ପରିବାର ଆନ୍ଦାର ଡିହକୁ ସମାନ କରି ନଡ଼ିଆ ବଗିଚାରେ ମିଶାଇ ଦେଲେ । ସେ ସ୍ଥାନରେ ଯେ ଆନ୍ଦାମା' ଥିଲା ଏବଂ ଆନ୍ଦା ଓ ଗୁରୀର ସୁଖୀ ପରିବାର ପଚାଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ଚଳିଥିଲା, ସେ ସ୍ମୃତି ସଂପୂର୍ଣ୍ଣରୂପେ ଲିଭିଗଲା ।

ଆମ ଆମ୍ବତୋଟାର ସମୟ ମଧ୍ୟ ପ୍ରାୟ ଦେଢ଼ଶହ ବର୍ଷ ପରେ ଶେଷ ହୋଇଯାଇଛି । ଆମ ଗାଁରେ ଗୋଟିଏ ପ୍ରବାଦ ଅଛି, ''ବାପ କିଣାରାମ, ପୁଅ ବାବୁରାମ୍, ନାତି ବିକାରାମ୍'' ଅର୍ଥାତ୍ ବାପ ବହୁ ପରିଶ୍ରମ କରି ଧନ ଅର୍ଜନ କରି ଜମିବାଡ଼ି କିଣାକିଣି କରେ

ଏବଂ ଘରଦ୍ୱାର କରେ, ପୁଅ ଅଳସୁଆ ହୋଇ ବାବୁ ହୋଇ ତାର ସୁଫଳ ଭୋଗ କରେ, ନାତି ଆହୁରି ଅକର୍ମା ହୋଇ ସେ ସମ୍ପତ୍ତିକୁ କ୍ରମେ କ୍ରମେ ବିକ୍ରି କରେ । ଆମ ଆମ୍ବତୋଟାର ଇତିହାସ ସେ ପ୍ରବାଦର ଯଥାର୍ଥତା ଅନେକ ପରିମାଣରେ ପ୍ରତିପାଦିତ କରୁଛି । ଦେଢ଼ଶହ ବର୍ଷ ତଳେ ଆମ ଜେଜେବୋପାଙ୍କ ଅମଳରେ ସେ ଆମ୍ବତୋଟାର ଗଛଗୁଡ଼ାକ ଲାଗିଥିଲା । ଆମ ପିଲାକାଳେ ଆମ ନନା, ଦଦେଇଙ୍କ ଅମଳରେ ସେ ଗଛଗୁଡ଼ିକ ସର୍ବାଧିକ ଫଳ ଦେଉଥିଲେ । ଆମ ଭାଇମାନଙ୍କ ଅମଳକୁ ଗଛଗୁଡ଼ାକ ବୁଢ଼ା ହୋଇ ଆସୁଥିଲା । ସେଗୁଡ଼ାକର ଫଳ କମି ଯାଇଥିଲା ଏବଂ ସେଗୁଡ଼ିକ ଗୋଟିକ ପରେ ଗୋଟିଏ ବିକ୍ରି ହେବାକୁ ଲାଗିଥିଲା । ବହୁବାର ମୁଁ ମୋର ବଡ଼ଭାଇଙ୍କ ସହିତ ଯୁକ୍ତିତର୍କ କରୁଥିଲି ଯେ ଯେଉଁ ଗଛଗୁଡ଼ାକ ବିକ୍ରି କରୁଛ, ତା ସ୍ଥାନରେ ନୂଆ ଗଛ ଲଗାଉ ନାହଁ କାହିଁକି ? ସେ କହନ୍ତି ଗୋରୁ ଖାଇଯିବେ, ଅନ୍ୟ ଗଛ ଛାଇରେ ମଧ୍ୟ ନୂଆ ଗଛ ଉଧାଇବ ନାହିଁ । ଗଛଗୁଡ଼ିକର ଅବକ୍ଷୟ ହୋଇ ଚାଲିଲା । ଦେଢ଼ଶହ ବର୍ଷ ପରେ ଏ. ଶତାବ୍ଦୀ ଶେଷରେ ମୁଁ ଦେଖୁଛି ସେ ତୋଟାରେ ଗୋଟିଏ ମାତ୍ର ଆମ୍ବଗଛ ଅଛି । ନୂଆ ଗଛ ଗୋଟିଏ ଦୁଇଟି ଆରମ୍ଭ ହେଉଛି । ବାଉଁଶବୁଦା ସବୁ ଚାଲିଯାଇଛି । ଅନେକ ବାଉଁଶ ଆମ ପରିବାର ହାଣି କରି ଆଣିଥିଲେ; ଅନ୍ୟ ଅନେକ ବାଉଁଶ ଚୋରମାନେ ହାଣିକରି ନେଲେ । ଶେଷରେ ସବୁ ବାଉଁଶବୁଦା ନିର୍ମୂଳ ହୋଇଗଲା । ତୋଟା ଯେଉଁ ବିଲ ପଡ଼ିଆ ଥିଲା ସେହିପରି ହୋଇଗଲା । ସେ ତୋଟାରେ ଆମ ପରିବାର ପିଲାଙ୍କର ଷାଠିଏ ସତୁରି ବର୍ଷ କାଳର ସବୁ ଖେଳ, କୌତୁକ, ଆନନ୍ଦ ଓ ଉଲ୍ଲାସର ସ୍ମୃତି ଲୋପ ପାଇଗଲା । ଆନନ୍ଦ ମଳିକ ପରିବାର ନିଶ୍ଚିହ୍ନ, ସୁଦର୍ଶନ ରଥ ପରିବାର ସେହି ଗୋଟିକିଆ ଘର, ଆମ୍ବତୋଟାର ଆମ୍ବ, ପଣସ, ବାଉଁଶ ଗଛ ସବୁ ବିଲୀନ । ଆଉ କେତେ ବର୍ଷ ପରେ ସେ ତୋଟାର ମଧୁର ସ୍ମୃତି ସବୁ ଲୋପ ପାଇଯିବ । ଏହାହିଁ କାଳର ଗତି ।

# ବାଲ୍ୟଶିକ୍ଷା ଓ ବାଲ୍ୟଗୁରୁ

ମୁଁ ପ୍ରାଥମିକ ଶିକ୍ଷା ଆମ ଘରପାଖ ଦୁଇଟି ପଡ଼ୋଶୀ ଗାଁରେ ଥିବା ଦୁଇଟି ପ୍ରାଥମିକ ସ୍କୁଲରେ ଏବଂ ଉଚ୍ଚ ପ୍ରାଥମିକ ଶିକ୍ଷା ଆମ ଗାଁରେ ଥିବା ଉଚ୍ଚ ପ୍ରାଥମିକ ସ୍କୁଲରେ ପାଇଥିଲି । ମୋର ନିମ୍ନପ୍ରାଥମିକ ଶିକ୍ଷା ୧୯୨୬ ମସିହା ଶେଷରେ ଏବଂ ଉଚ୍ଚ ପ୍ରାଥମିକ ଶିକ୍ଷା ୧୯୨୮ ମସିହା ଶେଷରେ ଶେଷ ହୋଇଥିଲା । ସେତେବେଳକୁ ଆମ ଗାଁ ଓ ପଡ଼ୋଶୀ ଗାଁମାନଙ୍କରେ ପୁରାତନ ଧରଣର ଚାହାଳି ସବୁ ନ ଥିଲା । ସେଗୁଡ଼ିକ ସ୍ଥାନରେ ବର୍ତ୍ତମାନ ପରି ସରକାରୀ ଅନୁମୋଦିତ ପ୍ରାଥମିକ ସ୍କୁଲ ସବୁ ପ୍ରତିଷ୍ଠିତ ହୋଇଥିଲା ଏବଂ ସେଥିରେ ସରକାରୀ ଅନୁମୋଦିତ ପାଠ୍ୟପୁସ୍ତକ ସବୁ ପଢ଼ା ହେଉଥିଲା । ମୁଁ ପଢୁଥିବା ପ୍ରାଥମିକ ସ୍କୁଲ ଦୁଇଟି କଟକ ଲୋକାଲ ବୋର୍ଡ଼ ଏବଂ ଉଚ୍ଚ ପ୍ରାଥମିକ ସ୍କୁଲଟି କଟକ ଜିଲ୍ଲା ବୋର୍ଡ଼ ଦ୍ୱାରା ପରିଚାଳିତ ହେଉଥିଲା । ସ୍କୁଲ ପରିଦର୍ଶନ ଓ ପରୀକ୍ଷା ଦାୟିତ୍ୱ ଶିକ୍ଷା ବିଭାଗର ଇନିସ୍‌ପେକ୍ଟର, ଡେପୁଟି ଇନିସ୍‌ପେକ୍ଟର ଓ ସବ୍‌ଇନିସ୍‌ପେକ୍ଟରମାନଙ୍କ ଉପରେ ନ୍ୟସ୍ତ ଥିଲା ।

ମୁଁ ପ୍ରାଥମିକ ଶିକ୍ଷା କେବେ ଆରମ୍ଭ କଲି ତାହାର କୌଣସି ଠିକ ହିସାବ ନାହିଁ । ମୋର ପଢ଼ା ଆରମ୍ଭ କରିବା ଏବଂ ହାତରେ ଖଡ଼ିଦେବା ପ୍ରଭୃତି ପାଇଁ କୌଣସି ଉତ୍ସବ ହୋଇ ନାହିଁ କିମ୍ବା ମୋର ଶିଶୁ ଅବସ୍ଥାରେ ଆମ ଘରର କୌଣସି ବୟସ୍କ ବ୍ୟକ୍ତି ମୋତେ ନେଇ ସ୍କୁଲରେ ନାମ ଲେଖାଇ ନାହାନ୍ତି । ଆମ ପରିବାରରୁ ମୋର ଦୁଇଟି ଭଉଣୀ ଓ ଜଣେ ଝିଆରୀ ସହିତ ଆମ ସାହିରୁ ଚାରି ପାଞ୍ଚ ଜଣ ପିଲା ଗୋଟିଏ ପ୍ରାଥମିକ ସ୍କୁଲକୁ ଯାଉଥିଲେ । ମୁଁ ପ୍ରାୟ ପାଞ୍ଚ ବର୍ଷ ବୟସ ବେଳକୁ ତାଙ୍କରି ସହିତ ଯାଇ ସ୍କୁଲରେ ବସିଥିଲି । ପଢ଼ିବାପାଇଁ ସିଲଟ ଓ ଖଡ଼ି ମୋ ବୋଉ ବୋଧହୁଏ କିଣି ଦେଇଥିବ । ବହୁକୁଟୁମ୍ବୀ ଚାଷୀ ପରିବାରମାନଙ୍କରେ ପିଲାଙ୍କ ପଢ଼ିବା ଯତ୍ନ ଅନେକ ସମୟରେ ଅଭିଭାବକମାନେ ନିଅନ୍ତି ନାହିଁ । ମୁଁ ଯୋଗ ଦେଇଥିବା ସ୍କୁଲର ହେଡ଼ପଣ୍ଡିତ ନରହରି ମିଶ୍ର ଆମ ସାହିର ଲୋକ ଥିଲେ । ସେ ବିଧିବଦ୍ଧ ଭାବରେ ସ୍କୁଲରେ ମୋର ନାମ ଲେଖାଇଥିବେ ।

ନରହରି ଆପଣେଙ୍କ ଜ୍ଞାନ ଭଲ ଥିଲା ଏବଂ ତାଙ୍କର ଅକ୍ଷର ଅତି ସୁନ୍ଦର ଥିଲା । ସେ ତାଳପତ୍ରରେ ସୁନ୍ଦର ଭାବରେ ଲେଖି ପାରୁଥିଲେ ଏବଂ ତାଳପତ୍ର ପୋଥିମାନଙ୍କର ପୁରାଣମାନ ଭଲ ସ୍ୱରରେ ପଢ଼ି ପାରୁଥିଲେ । ସେ ମାଟିଘର ତିଆରି ପାଇଁ ଘରର ଶୁଭାଶୁଭ ଦିଗ ନିର୍ଣ୍ଣୟ କରି ବାଣି କାଟୁଥିଲେ । ସେ କାମପାଇଁ ବହୁ ଲୋକ ତାଙ୍କୁ ଡାକନ୍ତି । ସେ ତାଙ୍କ ପରିବାରର ବଞ୍ଚିଥିବା ଏକମାତ୍ର ପୁତ୍ର ଥିଲେ ଏବଂ ତାଙ୍କର ବାପ ଅତି ବୃଦ୍ଧ ହୋଇଯାଇଥିବାରୁ, ସେ ତାଙ୍କ ଘରର ଚାଷବାସ ପ୍ରଭୃତି ସମସ୍ତ ଦାୟିତ୍ୱ

ତୁଲାଉଥା'ନ୍ତି । ତାଙ୍କର ଅନେକ ପିଲା ସହିତ ତାଙ୍କ କୁଟୁମ୍ବରେ ଅନେକ ଲୋକ ଥା'ନ୍ତି । ଜମିବାଡ଼ି ମଧ୍ୟ ତାଙ୍କର ବେଶି ନ ଥିଲା । ଏ ସବୁ ଝଞ୍ଜାଳ ମଧ୍ୟରେ ସ୍କୁଲର ପିଲାମାନଙ୍କର ପଢ଼ାପଢ଼ି କାର୍ଯ୍ୟରେ ସେ ପୂର୍ଣ୍ଣ ସମୟ ବିନିଯୋଗ କରି ପାରୁ ନ ଥିଲେ । ସ୍କୁଲରେ ଦ୍ୱିତୀୟ ଶିକ୍ଷକ ଥାଆନ୍ତି । ବଡ଼ ଆପଣେ ସ୍କୁଲକୁ ଡେରିକରି ଆସନ୍ତି । ପିଲାମାନେ ଦ୍ୱିତୀୟ ଶିକ୍ଷକଙ୍କୁ ବେଶି ମାନନ୍ତି ନାହିଁ । ପଢ଼ାପଢ଼ି ଗତାନୁଗତିକ ପନ୍ଥାରେ ଚାଲିଥାଏ । ପିଲାମାନେ ପ୍ରଥମେ ସିଲଟରେ ଅକ୍ଷର ଲେଖିବା ଏବଂ ବହିରୁ ଅକ୍ଷର ପଢ଼ିବା ଶିଖନ୍ତି । ତାପରେ ବନାନ ଓ ପଣିକିଆ ପ୍ରଭୃତି ଘୋଷନ୍ତି ଏବଂ ମିଶାଣ, ଫେଡ଼ାଣ, ଗୁଣନ ଓ ହରଣ ପ୍ରଭୃତି ଶିକ୍ଷା କରି ଅଙ୍କ କଷିବା ଓ ବହି ପଢ଼ିବା ଶିଖନ୍ତି । ଶିକ୍ଷକମାନେ ଗୋଟିଏ ମାତ୍ର କୋଠରିରେ ବିଭିନ୍ନ ଶ୍ରେଣୀର ପିଲାମାନଙ୍କୁ ବସାଇ ଉପରୋକ୍ତ ପାଠସବୁ ପଢ଼ାନ୍ତି । ପିଲାମାନେ ସକାଳୁ ଆସି ତାଙ୍କ ଶ୍ରେଣୀପାଇଁ ନିର୍ଦ୍ଧାରିତ ସ୍ଥାନରେ ତାଳପତ୍ର ଛପଡ଼ାରେ ବହି ସିଲଟ ଧରି ବସନ୍ତି । ଶିକ୍ଷକମାନେ ଶ୍ରେଣୀ ଅନୁସାରେ ଉପରୋକ୍ତ ପାଠ କ୍ରମାନ୍ୱୟରେ ପଢ଼ାନ୍ତି । ସାଧାରଣତଃ ସକାଳଓଳି ବଡ଼ପାଟିରେ ପଣିକିଆ ଆବୃତ୍ତି ଓ ଲେଖା ହୁଏ ଏବଂ ଅଙ୍କ କଷା ହୁଏ । ଉପରଓଳି ପିଲାମାନେ ବଡ଼ ପାଟିରେ ପାଠ୍ୟପୁସ୍ତକର ବିଷୟମାନ ପଢ଼ନ୍ତି । ପିଲାମାନେ ପାଠ ନ କହିପାରିଲେ କିମ୍ବା ଦୁଷ୍ଟାମି କଲେ ବେତ ମାଡ଼, କାନ ମୋଡ଼ା, କାନ୍ଥରେ ଚଉକି ବସିବା ପ୍ରଭୃତି ଦଣ୍ଡ ପାଆନ୍ତି । ଶିକ୍ଷକମାନେ ବ୍ୟକ୍ତିଗତ ଭାବରେ କୌଣସି ପିଲାର ଯତ୍ନ ନେଇପାରନ୍ତି ନାହିଁ । ଏହି ପ୍ରକାର ପ୍ରାଥମିକ ଶିକ୍ଷା ଆଜିଯାଏ ସୁଦ୍ଧା ଚାଲିଛି । ପଦ୍ଧତିରେ ବିଶେଷ କିଛି ପରିବର୍ତ୍ତନ ହୋଇ ନାହିଁ । ବରଂ ସତୁରି ବର୍ଷ ପରେ ମୁଁ ଦେଖୁଛି ଯେ ଶିକ୍ଷାର ପରିବେଶ ଏବଂ ପାଠ ପଢ଼ାଇବା ପ୍ରଣାଳୀରେ ଶତାବ୍ଦୀର ଦ୍ୱିତୀୟ ତୃତୀୟ ଦଶନ୍ଧିଠାରୁ ଅବନତି ହୋଇଛି । ତାହାର ପ୍ରଧାନ କାରଣମାନ ହୋଇଛି, ସ୍କୁଲ ଗୃହମାନଙ୍କର ଅଭାବ ଓ ଅବନତି, ପିଲାସଂଖ୍ୟା ବୃଦ୍ଧି ଓ ଶିକ୍ଷକମାନଙ୍କର ନୈଷ୍ଠିକତା ଏବଂ କାର୍ଯ୍ୟଦକ୍ଷତାର ଅଭାବ ।

ନରହରି ଆପଣେ ବଡ଼ ରାଗୀ ଲୋକ ଥିଲେ ଏବଂ ତାଙ୍କର ସ୍ୱଭାବ ଅତି ଗମ୍ଭୀର ଥିଲା । ସେ କାହା ସଙ୍ଗରେ ବସି ଗପ କରିବା କିମ୍ବା ହସାହସି କରିବା ମୁଁ ଦେଖି ନାହିଁ । ସେ ମନେ ମନେ ସବୁବେଳେ କଣ ଭାବୁଥାନ୍ତି ଏବଂ ଅନେକ ସମୟରେ ହାତ ଆଙ୍ଗୁଠିରେ ଶୂନ୍ୟରେ କଣ ଲେଖୁଥାନ୍ତି । ତାଙ୍କ ମନରେ ସର୍ବଦା ବିରକ୍ତିଭାବ ଥାଏ । ଅନେକ ସମୟରେ ପିଲାମାନଙ୍କୁ ବେତମାଡ଼ ପ୍ରଭୃତି କଠୋର ଦଣ୍ଡ ଦେଉଥିଲେ । ସେଥିଯୋଗୁଁ ଅନେକ ପିଲା ସ୍କୁଲକୁ ଆସିବାକୁ ରାଜି ହୁଅନ୍ତି ନାହିଁ । ସେମାନଙ୍କ ବାପ, ମା ସ୍କୁଲ ଯିବାକୁ ବାଧ୍ୟ କଲେ ସେମାନେ ବିଭିନ୍ନ ସ୍ଥାନରେ ଲୁଚନ୍ତି ବା ବିଭିନ୍ନ ରୋଗର ଛଳନା କରନ୍ତି । ଆମେ ତାଙ୍କୁ ଅତ୍ୟନ୍ତ ଭୟ କରୁଥିଲୁ । ଆମ ସାହିରେ ତାଙ୍କର ଘର ଥିଲା ଏବଂ ସେ ତାଙ୍କ ଦାଣ୍ଡ ପିଣ୍ଡାରେ ବସିଥିବାବେଳେ ଆମ ଦାଣ୍ଡ ପିଣ୍ଡାକୁ ଦେଖାଯାଏ । ଆମେ ପିଲାମାନେ ଆମ ଘରୁ ବାହାରିବା ମାତ୍ରେ ତାଙ୍କୁ ତାଙ୍କ ଦାଣ୍ଡ ପିଣ୍ଡାରେ ବସିଥିବାର ଦେଖିଲେ, ଘର ଭିତରେ ଲୁଚି ରହୁ । ଏହି ପରିବେଶ ମଧ୍ୟରେ ଏବଂ ଗତାନୁଗତିକ ପଦ୍ଧତିରେ ମୁଁ ସେ

ସ୍କୁଲରେ ପ୍ରାୟ ତିନିବର୍ଷରେ ଦ୍ୱିତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲି । ସେତେବେଳେ ଘରୋଇ ଟ୍ୟୁସନର ବିଶେଷ ପ୍ରଚଳନ ନ ଥିଲା । ଘରକୁ ଶିକ୍ଷକଙ୍କୁ ଆଣି ପିଲାଙ୍କୁ ପଢ଼ାଇବାର ଆଗ୍ରହ ଆମ ପରିବାରର ନ ଥିଲା । ଘରେ କେବଳ ହସ୍ତାକ୍ଷର ଲେଖିବା ବ୍ୟତୀତ ଆମେ କୌଣସି ପଢ଼ାପଢ଼ି କରୁ ନ ଥିଲୁ । ଦୁଇଓଳି ସ୍କୁଲକୁ ଯାଇ ସେଠାରେ ଯାହା ପଢୁ । ଖରାବେଳେ ହସ୍ତାକ୍ଷର ମାତ୍ର ଲେଖୁ । ରାତିରେ କିଛି ପଢୁ ନାହୁଁ ।

ମୁଁ ଦ୍ୱିତୀୟ ଶ୍ରେଣୀରେ ପଢୁଥିବା ବେଳେ ମୋର ବଡ଼ଭାଇ ରେଭେନ୍ସା କଲେଜରେ ଆଇ.ଏସ୍‌ସି. ପଢୁଥିଲେ । ସେ ଦେଖିଲେ ଯେ ସ୍କୁଲରେ ମୋର ପଢ଼ାର ବିଶେଷ ପ୍ରଗତି ହେଉ ନାହିଁ ଏବଂ ସ୍କୁଲରେ କିମ୍ବା ଘରେ ବ୍ୟକ୍ତିଗତ ଭାବରେ କେହି ମୋର ପଢ଼ାର ଯତ୍ନ ନେଉ ନାହିଁ । ତେଣୁ ସେ ମୋତେ ସେ ସ୍କୁଲରୁ ଉଠାଇ ଆଣି ଆମ ଘର ପାଖରେ ଆଉ ଗୋଟିଏ ସ୍କୁଲରେ ଦ୍ୱିତୀୟ ଶ୍ରେଣୀରେ ନାମ ଲେଖାଇଦେଲେ । ସେ ସ୍କୁଲର ହେଡ୍ ପଣ୍ଡିତ ଆନନ୍ଦ ଚନ୍ଦ୍ର ସାହୁ ମୋ ଭାଇନାଙ୍କ ସାଙ୍ଗ ଥିଲେ । ସେ ବ୍ୟକ୍ତିଗତ ଭାବରେ ମୋର ପାଠପଢ଼ାର ଯତ୍ନ ନେବାକୁ ରାଜି ହୋଇଥିଲେ । ମୁଁ ପୂର୍ବ ସ୍କୁଲରୁ ଆସିବାର ପ୍ରାୟ ବର୍ଷକ ପରେ ନରହରି ଆପଣେ ଗୋଟିଏ ଚୋରି ମକଦ୍ଦମାରେ ପଡ଼ି ତିନିମାସ ଜେଲ୍ ଗଲେ ଏବଂ ସ୍କୁଲରୁ ତାଙ୍କର ଚାକିରି ହରାଇଲେ । ତା'ପରେ ସେ ଚାଷବାସ କରି କୁଟୁମ୍ବ ପୋଷୁଥିଲେ ଏବଂ ଅଭାବରେ ପଡ଼ି ତାଙ୍କ ଅନେକ ଜମି ବିକ୍ରି ହୋଇ ଯାଇଥିଲା ।

ମୁଁ ଯେଉଁ ନୂତନ ସ୍କୁଲରେ ନାମ ଲେଖାଇଲି, ସେ ସ୍କୁଲର ହେଡ୍ ପଣ୍ଡିତ ଆନନ୍ଦ ମାଷ୍ଟ୍ରେଙ୍କ ଜ୍ଞାନ ବିଷୟରେ ମୁଁ କିଛି ଜାଣି ନ ଥିଲି । ସେ ମାଇନର ପାସ୍ କରି ଗୁରୁ ଟ୍ରେନିଂ ପରୀକ୍ଷାରେ ପାସ୍ କରିଥିଲେ । ସେ ମୋ ପଢ଼ାର ବ୍ୟକ୍ତିଗତ ଯତ୍ନ ନେଉଥିଲେ ଏବଂ ମୋତେ ବୃତ୍ତି ପରୀକ୍ଷା ପାଇଁ ପ୍ରସ୍ତୁତ କରୁଥିଲେ । ସେ ସମୟରେ ଜଣେ ଶିକ୍ଷକଙ୍କ ଅଧୀନରେ ବୃତ୍ତି ପାଇଥିବା ପିଲାଙ୍କ ସଂଖ୍ୟା ଅନୁସାରେ ଶିକ୍ଷକଙ୍କ ପାରଦର୍ଶିତା ମାପ କରାଯାଉଥିଲା । ତେଣୁ ଶିକ୍ଷକମାନେ ବୃତ୍ତି ପରୀକ୍ଷାକୁ ପଠା ଯାଉଥିବା ପିଲାଙ୍କ ପଢ଼ା ଉପରେ ବିଶେଷ ଦୃଷ୍ଟି ଦେଉଥିଲେ । ବିଭିନ୍ନ ଶ୍ରେଣୀର ଅନ୍ୟ ପିଲାମାନେ ଗତାନୁଗତିକ ଭାବରେ ପଢୁଥିଲେ । ଆନନ୍ଦ ମାଷ୍ଟ୍ରେ ଜାତିରେ ଶୁଣ୍ଢି ଥିଲେ । ତାଙ୍କର ପରିବାର ବଡ଼ ଥିଲା ଏବଂ ପରିବାରର ଲୋକ ଚାଷବାସ କରି ଏବଂ ଗୋଟିଏ ଖୁଚୁରା ଦୋକାନ କରି ସାଧାରଣ ଭାବରେ ଚଳୁଥିଲେ । ଆନନ୍ଦ ମାଷ୍ଟ୍ରେ ବ୍ୟକ୍ତିଗତ ଭାବରେ ମଧ୍ୟ କିଛି ମହାଜନୀ କରୁଥିଲେ । ତାଙ୍କ ସ୍ୱଭାବ ନରହରି ଆପଣେଙ୍କ ସ୍ୱଭାବ ଠାରୁ ଭିନ୍ନ ଥିଲା । ସେ ସ୍କୁଲ ସମୟରେ ସ୍କୁଲ ବାହାରେ ବିଭିନ୍ନ ଗ୍ରାମଲୋକଙ୍କ ସହିତ ଗପ କରୁଥାନ୍ତି । ସ୍କୁଲଟା ଭଲ ଜାଗାରେ ଥିଲା । ତା ପାଖରେ ଗୋଟାଏ ବଡ଼ ବରଗଛ ମୂଳରେ ନାଗା ଗୋସାଇଁ ଠାକୁର ଥିଲେ । ସ୍କୁଲ ଚାରିପାଖରେ ବଡ଼ ପଡ଼ିଆ ଏବଂ ଜମିଦାରଙ୍କର ଆମ୍ବତୋଟା ଥିଲା । ସେ ପଡ଼ିଆ ଓ ତୋଟାରେ ଏବଂ ବରଗଛ ମୂଳେ ପିଲାମାନଙ୍କର ଖେଳିବାର ବିଶେଷ ସୁବିଧା ଥିଲା । ଶିକ୍ଷକମାନେ ନ ଥିବା ସମୟରେ ଆମ୍ଭେମାନେ ସେଠାରେ ଅତି ଆନନ୍ଦରେ ଖେଳୁଥିଲୁ ଏବଂ ଜାମୁକୋଳି ଖାଉଥିଲୁ ।

ଆନନ୍ଦ ମାଷ୍ଟ୍ରେ ମୋତେ ଗଣିତ ଓ ମାନସାଙ୍କ ଭଲ ଭାବରେ ପଢ଼ାଇ ଦେଇଥିଲେ । ସେ ବିଷୟରେ ତାଙ୍କର ବିଶେଷ ଆଗ୍ରହ ଥିଲା । ଗଣିତରେ ସେହି ମୂଳଦୁଆ ଉପରେ ମୁଁ ଉପର ଶ୍ରେଣୀମାନଙ୍କରେ ସେ ବିଷୟରେ ପାରଦର୍ଶିତା ଲାଭ କରିଥିଲି ଏବଂ ସେ ବିଷୟ ସବୁବେଳେ ମୋତେ ପରୀକ୍ଷାମାନଙ୍କରେ ଉଚ୍ଚସ୍ଥାନ ପାଇବାକୁ ସାହାଯ୍ୟ କରିଥିଲା । ମାଷ୍ଟ୍ରେ ମଧ୍ୟ ମୋତେ ଭୂଗୋଳ, ସାହିତ୍ୟ ଓ ପ୍ରକୃତିପାଠ ପ୍ରଭୃତି ବିଷୟମାନ ଭଲଭାବରେ ପଢ଼ାଇ ଦେଇଥିଲେ । ମାତ୍ର ବୃତ୍ତି ପରୀକ୍ଷାରେ ମୁଁ ବୃତ୍ତି ପାଇଲି ନାହିଁ । ସେ ସର୍କଲରେ କେବଳ ଦୁଇଜଣ ପିଲା ବୃତ୍ତି ପାଇବାର ଥିଲା । ପରୀକ୍ଷାରେ ମୋର ସ୍ଥାନ ତୃତୀୟ ହୋଇ ଯାଇଥିଲା । ବୃତ୍ତି ନ ପାଇବାରୁ ମୋ ମନରେ ଯେତେ କଷ୍ଟ ହୋଇଥିଲା, ଆନନ୍ଦ ମାଷ୍ଟ୍ରେଙ୍କ ମନ ତା'ଠାରୁ ଅଧିକ କଷ୍ଟ ହୋଇଥିଲା । ସେ ସ୍କୁଲରେ ନିମ୍ନ ପ୍ରାଥମିକ ଶିକ୍ଷା ଏହିପରି ଶେଷ କରି ମୁଁ ଆମ ଗାଁରେ ଥିବା ଉଚ୍ଚ ପ୍ରାଥମିକ ସ୍କୁଲରେ ଚତୁର୍ଥ ଶ୍ରେଣୀରେ ପଢ଼ିଲି । ସେ ସ୍କୁଲରେ ମଧ୍ୟ ଆମ ପରିବାରର କେହି ମୋତେ ନେଇ ନାମ ଲେଖାଇ ନ ଥିଲେ । ଆମ ସାହିର ଅନ୍ୟ ପିଲାମାନଙ୍କ ସହିତ ଯାଇ ମୁଁ ସେ ସ୍କୁଲର ଚତୁର୍ଥ ଶ୍ରେଣୀରେ ବସିଲି । ସ୍କୁଲର ହେଡ୍ ପଣ୍ଡିତ ନାରାୟଣ ମିଶ୍ର ଆମ ପରିବାରର ନିକଟ ସମ୍ପର୍କୀୟ ଲୋକ ଥିଲେ, ସେ ମୋର ସାର୍ଟିଫିକେଟ ପ୍ରଭୃତି ମଗାଇ ଚତୁର୍ଥ ଶ୍ରେଣୀରେ ମୋର ନାମ ଲେଖିଥିଲେ ।

ନାରାୟଣ ମିଶ୍ର ମଧ୍ୟ ମାଇନର ପାସ୍ କରି ଗୁରୁଟ୍ରେନିଂ ସ୍କୁଲ ପରୀକ୍ଷା ପାସ୍ କରିଥିଲେ । ତାଙ୍କର ପରିବାର ବଡ଼ ଥିଲା ଏବଂ ଆମ ପରିବାର ପରି ତାଙ୍କର ମଧ୍ୟ ବହୁତ ଜମିବାଡ଼ି ଥିଲା । ତାଙ୍କ ପିତା ମରିଯିବା ପରେ ସେ ତାଙ୍କ ପରିବାରର ମୁରବି ହୋଇଥିଲେ । ଜମିବାଡ଼ି ମାପଚୁପ ଓ ଜମିଜମା ଆଇନ୍ ବିଷୟରେ ତାଙ୍କର ଭଲ ଜ୍ଞାନ ଥିଲା । ସେ ଆମ ଗାଁର ସବୁଠାରୁ ବଡ଼ ମାମଲତକାର ଥିଲେ ଏବଂ ଗାଁର ମହାଦେବ ମନ୍ଦିରର ସମ୍ପତ୍ତିବାଡ଼ି ଏବଂ ଯାନିଯାତ୍ରା ପ୍ରଭୃତି ବିଷୟ ବୁଝୁଥିଲେ । ଗାଁରେ ଜମିବାଡ଼ି ବିଷୟରେ ଯେ କୌଣସି ଗଣ୍ଡଗୋଳ ଓ ନିଶାପ ହେଲେ ଲୋକମାନେ ତାଙ୍କୁ ଡାକୁଥିଲେ । ଏ ସବୁ ବିଷୟରେ ତାଙ୍କର ନେତୃତ୍ୱ ଅପରିହାର୍ଯ୍ୟ ଥିଲା । ତାଙ୍କର ଏହି ପାରଦର୍ଶିତା ହେତୁ ସେ ମଧ୍ୟ ତାଙ୍କ ପରିବାରର ଭୂସମ୍ପତ୍ତି ପରିମାଣ ଯଥେଷ୍ଟ ବୃଦ୍ଧି କରିଥିଲେ । ମାତ୍ର ନୂତନ ଭାବରେ କିଣୁଥିବା ସମ୍ପତ୍ତି ସେ କେବଳ ନିଜ ନାମରେ ନ କିଣି ତାଙ୍କର ଚାରିଭାଇଙ୍କ ନାମରେ କିଣୁଥିଲେ । ଏ ବିଷୟରେ ସେ ଗୋଟିଏ ଏକାନ୍ନବର୍ତ୍ତୀ ପରିବାରର ଆଦର୍ଶ ମୁରବି ରୂପେ କାମ କରୁଥିଲେ ।

ମାତ୍ର ନିଜ ପରିବାରର ସମ୍ପତ୍ତି ପରିଚାଳନା, ଠାକୁର ସମ୍ପତ୍ତି ବୁଝିବା, ଗାଁ ଲୋକଙ୍କର ଜମିବାଡ଼ି କଳି ନିଷ୍ପତ୍ତି କରିବା ଏବଂ ଅନ୍ୟ ନିଶାପରେ ନେତୃତ୍ୱ ନେବା ପ୍ରଭୃତି କାମରେ ତାଙ୍କର ଅଧିକାଂଶ ସମୟ ଯାଉଥିଲା । ସ୍କୁଲରେ ପାଠ ପଢ଼ାଇବାକୁ ସେ ବେଶୀ ସମୟ ଦେଇ ପାରୁ ନ ଥିଲେ । ନାରଣ ମାଷ୍ଟ୍ରେ ପ୍ରାୟ ବାରଟା ବେଳକୁ ସ୍କୁଲକୁ ଆସନ୍ତି । ତାଙ୍କ ଦେଖାଦେଖି ଅନ୍ୟ ଶିକ୍ଷକମାନେ ମଧ୍ୟ ଡେରିରେ ଆସନ୍ତି । ଆମ୍ଭେମାନେ ପ୍ରାୟ

ଦଶଟାବେଳକୁ ସ୍କୁଲକୁ ଆସି ସ୍କୁଲ ପାଖରେ ଥିବା ବରଗଛ ମୂଳେ ଖେଳୁଥାଉ । ସ୍କୁଲରେ ପ୍ରକୃତରେ ତିନି ଚାରି ଘଣ୍ଟା କାର୍ଯ୍ୟ ହେଉଥିଲା । ନାରଣ ମାଷ୍ଟ୍ରେ ପ୍ରାୟ ଦୁଇ ଘଣ୍ଟା ରହି ଅନ୍ୟ ଆଡ଼େ ଚାଲିଯାନ୍ତି । ଅନ୍ୟ ଶିକ୍ଷକମାନେ ଚାରିଟା ପାଖାପାଖି ସମୟରେ ସ୍କୁଲ ବନ୍ଦ କରିଦିଅନ୍ତି । ଦିନେ ପ୍ରାୟ ଏଗାରଟା ସମୟରେ ବାବୁ ଆସିଲେ । ବାବୁ ମାନେ ସ୍କୁଲ ସବ୍ଇନିସ୍‌ପେକ୍ଟର ସ୍କୁଲ ପରିଦର୍ଶନ କରିବାକୁ ଆସିଲେ । ସେତେବେଳକୁ କେହି ଶିକ୍ଷକ ଆସି ନ ଥିଲେ । ଆମ୍ଭେମାନେ ବରଗଛ ମୂଳେ ଖେଳୁଥିଲୁ । ବାବୁ ଆସିବାରୁ ଦୁଇଜଣ ପିଲା ନାରଣ ମାଷ୍ଟ୍ରେଙ୍କୁ ଡାକିବାକୁ ଗଲେ । ସେ ଆସି ସ୍କୁଲର ଖାତାପତ୍ର ସବୁ ବାବୁଙ୍କୁ ଦେଖାଇଲେ । ମୋର ଯାହା ମନେଅଛି ବାବୁଙ୍କ ବୁଦ୍ଧିଠାରୁ ନାରଣ ମାଷ୍ଟ୍ରଙ୍କ ବୁଦ୍ଧି ଅଧିକ ଥିଲା । ମାଷ୍ଟ୍ରେ ମୋଟେ ବିଚଳିତ ହୋଇ ନ ଥିଲେ । କାଗଜପତ୍ର ସବୁ ଠିକ୍ ଥିଲା । ବାବୁ ମଧ ମାଷ୍ଟ୍ରଙ୍କର ଆମ ଗାଁରେ ପ୍ରତିପତ୍ତି ବିଷୟ ଜାଣିଥିଲେ । ସେ ପରିଦର୍ଶନ କରି ଖାଇପିଇ ଚାଲିଗଲେ । ଏହିପରି ସ୍କୁଲରେ ଏବଂ ଘରେ କିଛି ନ ପଢ଼ି ମୋର ଉଚ୍ଚପ୍ରାଥମିକ ସ୍କୁଲରେ ଦୁଇବର୍ଷ କଟିଗଲା । ସେତେବେଳେ ନିମ୍ନ ଓ ଉଚ୍ଚ ପ୍ରାଥମିକ ସ୍କୁଲ ପିଲାମାନଙ୍କ ପାଇଁ ବୃତ୍ତି ପରୀକ୍ଷା ବ୍ୟତୀତ ଅନ୍ୟ କୌଣସି କେନ୍ଦ୍ର ପରୀକ୍ଷା ହେଉ ନ ଥିଲା । ପିଲାମାନେ ନିଜ ନିଜ ସ୍କୁଲମାନଙ୍କରୁ ପାସ୍ ସାର୍ଟିଫିକେଟ ନେଉଥିଲେ । କେହି ପିଲା ଫେଲ୍ ହେଉ ନ ଥିଲେ ।

ନାରଣ ମାଷ୍ଟ୍ରେ କେତେକ ବର୍ଷ ପରେ ସ୍କୁଲ ଚାକିରି ଛାଡ଼ିଦେଇ ନିଜର ସମ୍ପତ୍ତିବାଡ଼ି ବୁଝାବୁଝି କଲେ । ଆମ ଗାଁରେ ସେତେବେଳେ ମାଇନର ସ୍କୁଲ ନ ଥିଲା । ତାଙ୍କରି ନେତୃତ୍ୱରେ ଗାଁର ଅନ୍ୟ ନେତୃସ୍ଥାନୀୟ ଲୋକମାନେ ମିଶି ଚାନ୍ଦାଭେଦା କରି ଗୋଟିଏ ମାଇନର ସ୍କୁଲ ଆରମ୍ଭ କଲେ ଏବଂ ନାରଣ ମାଷ୍ଟ୍ରେ ପ୍ରାୟ କୋଡ଼ିଏ ବର୍ଷ ତାର ସେକ୍ରେଟେରୀ ଥିଲେ । ପ୍ରାୟ ଦଶ ବର୍ଷ ପରେ ସେ ସ୍କୁଲ ହାଇସ୍କୁଲ ହେଲା, ନାରଣ ମାଷ୍ଟ୍ରେ ତାର ସେକ୍ରେଟାରୀ ଥାଇ ସ୍କୁଲର ଘରଦ୍ୱାର କରାଇଲେ ଏବଂ ସ୍କୁଲ ପରିଚାଳନାର ସମସ୍ତ ଦାୟିତ୍ୱ ବହନ କରିଥିଲେ । ଆମ ଗାଁରେ ତୁଳସୀଗାଦି ବୋଲି ଗୋଟିଏ ସ୍ଥାନ ଥିଲା । ସେଥିରେ କୌଣସି ମହାପୁରୁଷଙ୍କର ସମାଧି ଥିଲା । ସେ ସ୍ଥାନରେ ଥିବା ଗାଦିକୁ ଏବଂ ପାଞ୍ଚଗୋଟି ଗଛକୁ ଲୋକମାନେ ପୂଜା କରୁଥିଲେ । ସେ ସ୍ଥାନ କଣ୍ଟାବୁଦାରେ ପୂର୍ଣ୍ଣ ଥିଲା । କେହି ତାହାର ନାମ ନେଉ ନ ଥିଲେ । ମାଷ୍ଟ୍ରେ ଲୋକମାନଙ୍କୁ ନେତୃତ୍ୱ ଦେଇ ସେ ସ୍ଥାନକୁ ସଫା କରାଇଲେ ଏବଂ ପ୍ରତିବର୍ଷ ସେଥିରେ ଗୋଟିଏ ଯଜ୍ଞ କରାଇଲେ ।

ଲୋକମାନେ ସେ କାର୍ଯ୍ୟରେ ସ୍ୱତଃପ୍ରବୃତ୍ତଭାବେ ତାଙ୍କ ସହିତ ସହଯୋଗ କରୁଥିଲେ ଏବଂ ଆବଶ୍ୟକ ଚାନ୍ଦା ଆଗ୍ରହର ସହିତ ଦେଉଥିଲେ । ଯଜ୍ଞ ସମୟରେ ତିନି ଚାରି ଦିନ ସେ ସ୍ଥାନରେ ଗୋଟିଏ ମେଳା ହୁଏ । ମାଷ୍ଟ୍ରେ ସେ ଯଜ୍ଞର ଏବଂ ମେଳାର ଅଶୀବର୍ଷ ବୟସରେ ତାଙ୍କର ଦେହାନ୍ତ ପର୍ଯ୍ୟନ୍ତ ମୁଖ୍ୟ ପରିଚାଳକ ଥିଲେ । ତାଙ୍କୁ ସାହାଯ୍ୟ କରିବା ପାଇଁ ପାଖାପାଖି ଗ୍ରାମମାନଙ୍କରୁ କେତେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ନେଇ ଗୋଟିଏ ପରିଚାଳନା ସମିତି ଗଢ଼ିଥିଲେ । ନାରଣ ମାଷ୍ଟ୍ରେ ଅତି ଅଳ୍ପ କଥା କହନ୍ତି, ସଭାସମିତିରେ

ମୋଟେ ବକ୍ତୃତା କରନ୍ତି ନାହିଁ । ତାଙ୍କର କୌଣସି ବିଳାସବ୍ୟସନ ବା ବ୍ୟକ୍ତିଗତ ଦୁର୍ଗୁଣ ନ ଥିଲା । କେତେକ ଲୋକ ତାଙ୍କୁ ପଛରେ ନିନ୍ଦା କରନ୍ତି ମାତ୍ର ବିପଦରେ ପଡ଼ିଲାବେଳେ ତାଙ୍କରି ସାହାଯ୍ୟ ନିଅନ୍ତି । ବିଭିନ୍ନ କଳିକଜିଆର ସମାଧାନ, ସମ୍ପତ୍ତିପତ୍ର ଗୋଳମାଳ ବିଚାର, ଗାଁର ସାମାଜିକ ଓ ଧର୍ମଗତ କାର୍ଯ୍ୟ ଏବଂ ସଭାସମିତିରେ ତାଙ୍କର ଉପସ୍ଥିତି ସମସ୍ତଙ୍କର କାମ୍ୟ ଥିଲା । ସେ ମହାଜନୀ କରୁ ନ ଥିଲେ କିମ୍ବା ଲୋକଙ୍କ ଉପରେ ଜୁଲମ କରୁ ନ ଥିଲେ । ସ୍ୱାଧୀନତା ପରେ ଗାଁରେ ଯେତେବେଳେ ଭୋଟ ରାଜନୀତି ପଶିଲା, ସେତେବେଳେ କ୍ଷମତା ଅଭିଳାଷୀ ସବୁ ରାଜନୈତିକ ବ୍ୟକ୍ତି ତାଙ୍କର ସହଯୋଗ କାମନା କଲେ । ପ୍ରାୟ ଚାଳିଶ ବର୍ଷ କାଳ ମାଷ୍ଟ୍ରେ ଆମ ଗାଁର ଅପ୍ରତିଦ୍ୱନ୍ଦ୍ୱୀ ନେତା ଥିଲେ । ମୁଁ ଅନେକ ସମୟରେ ଭାବେ ତାଙ୍କର ବୁଦ୍ଧି ଓ ସହନଶୀଳତା ସହିତ ତାଙ୍କର ଯଦି ଉଚ୍ଚଶିକ୍ଷା ଥାଆନ୍ତା ସେ ପ୍ରାଦେଶିକ ସ୍ତରରେ ଜଣେ ତୁଙ୍ଗ ନେତା ହୋଇପାରିଥାନ୍ତେ । ପୁଣି ଅନେକ ସମୟରେ ବିଚାର କରେ ଆଜିକାଲିର ଧନବଳ ଓ ବାହୁବଳ ରାଜନୀତିରେ ତାଙ୍କପରି ବିଚାରବନ୍ତ ଓ ଧର୍ମଭୀରୁ ଲୋକର ସ୍ଥିତି ବୋଧହୁଏ ଦୃଢ଼ ହୋଇପାରି ନ ଥାନ୍ତା ।

ସେ ଯାହାହେଉ ଶିକ୍ଷକ ଓ ଗୁରୁ ହିସାବରେ ମୁଁ ନରହରି ଆପଣେ, ଆନନ୍ଦ ମାଷ୍ଟ୍ରେ ଓ ନାରଣ ମାଷ୍ଟ୍ରେ କାହାରିଠାରୁ ଉଚ୍ଚ ଆଦର୍ଶର ପ୍ରେରଣା ପାଇ ପାରି ନ ଥିଲି । ପଛକୁ ଚାହିଁ ମୁଁ ଦେଖୁଛି ସ୍କୁଲ କାର୍ଯ୍ୟରେ ଶିକ୍ଷକମାନଙ୍କର ଅବହେଳା ଏବଂ ଉଦାସୀନତା ହେତୁ ଆମ ରାଜ୍ୟରେ ଉଚ୍ଚମାନର ପ୍ରାଥମିକ ଶିକ୍ଷା ବିଂଶ ଶତାବ୍ଦୀର ଆରମ୍ଭରୁ ମଧ୍ୟ ଗଢ଼ି ଉଠି ନାହିଁ । ଶତାବ୍ଦୀ ଶେଷରେ ସେ ଦିଗରେ ପ୍ରଗତି ପରିବର୍ତ୍ତେ ବିଶେଷ ଅଧୋଗତି ହୋଇଛି । ମୁଁ ପ୍ରାଥମିକ ସ୍କୁଲରେ ପଢ଼ିବା ସମୟରେ ଶିକ୍ଷକମାନଙ୍କଠାରୁ ଉଚ୍ଚ ଆଦର୍ଶର ପ୍ରେରଣା ନ ପାଇ ଅନ୍ୟ ଗୋଟିଏ ସୂତ୍ରରୁ ସବୁବେଳେ ପ୍ରେରଣା ପାଉଥିଲି । ତାହା ହେଉଛି ମୋର ବଡ଼ଭାଇଙ୍କ ଠାରୁ ।

ମୁଁ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପଢୁଥିବା ସମୟରେ ମୋ ବଡ଼ଭାଇ ରେଭେନ୍ସା କଲେଜିଏଟ୍ ସ୍କୁଲ୍, ରେଭେନ୍ସା କଲେଜ ଓ ପାଟନା ଇଞ୍ଜିନିଅରିଂ କଲେଜରେ ପଢୁଥିଲେ । ସେ ଆମ ଗାଁରେ ସବୁଠାରୁ ଅଧିକ ଶିକ୍ଷିତ ଏବଂ ଆଦର୍ଶ ଚରିତ୍ରର ବ୍ୟକ୍ତି ଥିଲେ । ସେ ମେଧାବୀ ଛାତ୍ର ଥିଲେ । କଲେଜିଏଟ୍ ସ୍କୁଲରୁ ମାଟ୍ରିକ୍ୟୁଲେସନ ପ୍ରଥମ ଶ୍ରେଣୀରେ ପାସ୍ କରି ଡିଭିଜନାଲ ସ୍କଲାରସିପ୍ ପାଇଥିଲେ । ତା'ପରେ ରେଭେନ୍ସା କଲେଜରୁ ଆଇ.ଏସ୍‌ସି. ମଧ୍ୟ ପ୍ରଥମ ଶ୍ରେଣୀରେ ପାସ୍ କରି ପ୍ରାଦେଶିକ ସ୍କଲାରସିପ୍ ପାଇ ଇଞ୍ଜିନିଅରିଂ କଲେଜରେ ପଢୁଥିଲେ । କଲେଜିଏଟ୍ ସ୍କୁଲରେ ପଢୁଥିବାବେଳେ ସେ ତେଲେଙ୍ଗାବଜାରରେ ଥିବା ରାମକୃଷ୍ଣ କଟେଜରେ ରହୁଥିଲେ । ସେହି ସମୟରୁ ସେ ରାମକୃଷ୍ଣ ପରମହଂସ ଏବଂ ଶାରଦା ଦେବୀଙ୍କର ଉପାସକ ଥିଲେ । ସେ ସମୟରେ ସେ କଟକ ଟ୍ରେନିଂସ୍କୁଲର ପ୍ରଧାନଶିକ୍ଷକ କୃଷ୍ଣଚନ୍ଦ୍ର ସେନଗୁପ୍ତ ଏବଂ ଅନ୍ୟ ରାମକୃଷ୍ଣ ଓ ବିବେକାନନ୍ଦଙ୍କ ଭକ୍ତମାନଙ୍କ ନିକଟ ସମ୍ପର୍କରେ ଆସିଥିଲେ । ସେମାନେ ସମସ୍ତେ ଭାଇନାଙ୍କୁ ଅତି ଭଲ ପାଉଥିଲେ । ଭାଇନା ରାମକୃଷ୍ଣ କଥାମୃତ ଓ ରାମକୃଷ୍ଣ

ପରମହଂସଙ୍କ ଉପଦେଶ ସମ୍ବଳିତ ଅନେକ ବହି ପଢ଼ିଥିଲେ । ସେଥିରୁ କେତେଖଣ୍ଡ ବହି, ଶରତ ଚାଟାର୍ଜୀ ଓ ବଙ୍କିମ୍ ଚାଟାର୍ଜୀଙ୍କର କେତେ ଖଣ୍ଡ ବଙ୍ଗଳା ଉପନ୍ୟାସ, ଫକୀରମୋହନଙ୍କ ଗଳ୍ପସ୍ୱଳ୍ପ, ଗଙ୍ଗାଧର ମେହେରଙ୍କ କୀଚକ ବଧ ପ୍ରଭୃତି ଅନେକ ବହି ତାଙ୍କର ମୃତ୍ୟୁ ପରେ ଆମ ଘରେ ଥିଲା । ଉଚ୍ଚ ପ୍ରାଥମିକ ସ୍କୁଲପାଠ ଶେଷ କରି ଯେଉଁ ଚାରିମାସ ମୁଁ ଘରେ ବସିଥିଲି, ସେ ସମୟରେ ସେ ବହିସବୁ ମୁଁ ପଢ଼ିଥିଲି । ତ୍ରିଭାଷୀ ବହିରୁ ବଙ୍ଗଳା ଅକ୍ଷର ଶିଖି ମୁଁ ବଙ୍ଗଳା ବହିସବୁ ପଢ଼ି ପାରୁଥିଲି । ସେ ସବୁ ବ୍ୟତୀତ ନିମ୍ନ ପ୍ରାଥମିକ ସ୍କୁଲରେ ପଢ଼ିବାବେଳେ ଭାଇନା ମୋତେ ବାଳକୃଷ୍ଣ କରଙ୍କ ପିଲାଙ୍କ ରାମାୟଣ, ପିଲାଙ୍କ ମହାଭାରତ ଓ ଫୁଲଚାଙ୍ଗୁଡ଼ି ଏବଂ ଗୋପାଳ ପ୍ରହରାଜଙ୍କ ଉତ୍କଳ କାହାଣୀ ପ୍ରଭୃତି କେତେକ ବହି କଟକରୁ କିଣିଆଣି ଦେଇଥିଲେ ଏବଂ ସେ ସବୁ ପଢ଼ିଥିଲି । ଭାଇନା ରାମକୃଷ୍ଣ ମିସନର ପ୍ରେରଣାରେ ଗାଁରେ ରୋଗୀ ଏବଂ ଦୁଃଖୀଦରିଦ୍ରଙ୍କ ସେବା କରୁଥିଲେ ଏବଂ ସବୁ ଗାଁ ଲୋକଙ୍କର ଅତି ପ୍ରିୟପାତ୍ର ହୋଇଥିଲେ । ପିଲାଦିନୁ ସେ ମୋର ଆଦର୍ଶ ଥିଲେ ଏବଂ ମୁଁ ତାଙ୍କରି ପରି ହେବାକୁ ଚେଷ୍ଟା କରୁଥିଲି । ଆଜି ମଧ୍ୟ ସ୍ମୃତିଚାରଣ କରି ଦେଖୁଛି ଯେ, ମୋ ଚରିତ୍ରରେ ଯଦି କୌଣସି ମହତ୍ ଗୁଣ ଥାଏ, ତାହା ସବୁ ତାଙ୍କରି ପ୍ରେରଣାରୁ ଉଦ୍‌ଭବ ହୋଇଛି । ପିଲାଦିନୁ ପାନ, ଗୁଣ୍ଡି, ବିଡ଼ି, ସିଗାରେଟ୍ ଓ କୌଣସି ମାଦକଦ୍ରବ୍ୟ-ସ୍ପର୍ଶ ନ କରିବା, ଦୁଷ୍ଟ ଓ ଦୁଶ୍ଚରିତ୍ର ଲୋକଙ୍କ ସଙ୍ଗରେ ନ ମିଶିବା, ଅନୈତିକ କାର୍ଯ୍ୟ କରୁଥିବା ଓ ଦୁର୍ନୀତିଗ୍ରସ୍ତ ଲୋକଙ୍କୁ ଘୃଣା କରିବା, ଦୁଃଖୀଦରିଦ୍ର ଓ ରୋଗୀଙ୍କ ପ୍ରତି ସହାନୁଭୂତିଶୀଳ ହେବା ଗୁଣସବୁ ମୁଁ ତାଙ୍କରିଠାରୁ ଶିକ୍ଷା କରିଥିଲି ।

ମାତ୍ର ଦୁର୍ଭାଗ୍ୟକୁ ମୋର ଜୀବନର ପ୍ରାରମ୍ଭରେ ପ୍ରେରଣାର ଉତ୍ସର ବିଲୋପ ଘଟିଲା ଏବଂ ଆମ ପରିବାରର ଆଶାଦୀପ ନିର୍ବାପିତ ହୋଇଗଲା । ଇଞ୍ଜିନିଅରିଂ କଲେଜର ଶେଷ ବର୍ଷରେ ପଢୁଥିବାବେଳେ ୧୯୨୯ମସିହା ଫେବୃଆରୀ ମାସରେ ଯକ୍ଷ୍ମା ରୋଗରେ ଭାଇନାଙ୍କର ଦେହାନ୍ତ ହେଲା । ମୃତ୍ୟୁ ପୂର୍ବରୁ କେତେକ ମାସ ସେ ଘରେ ରହି ଚିକିତ୍ସିତ ହେଉଥିଲେ । ତାଙ୍କର ସାଙ୍ଗମାନେ କହୁଥିଲେ ଯେ ତା ପୂର୍ବରୁ ସେ ପାଟନାରେ ଜଣେ ଯକ୍ଷ୍ମାରୋଗାକ୍ରାନ୍ତ ତାଙ୍କର ଛାତ୍ର ବନ୍ଧୁଙ୍କର ସେବା କରୁଥିଲେ ।

ଭାଇନା ରୋଗରେ ପଡ଼ି ଯେଉଁ ସମୟରେ ଘରେ ରହି ଚିକିତ୍ସିତ ହେଉଥିଲେ, ମୁଁ ସେ ସମୟରେ ଉଚ୍ଚପ୍ରାଥମିକ ସ୍କୁଲର ପଞ୍ଚମ ଶ୍ରେଣୀରେ ପଢୁଥିଲି । ଏକେତ ସ୍କୁଲରେ କିଛି ପଢ଼ାପଢ଼ି ହେଉ ନ ଥିଲା । ଘରେ ଭାଇନାଙ୍କ ରୋଗ ଏବଂ ମୃତ୍ୟୁର ଆଶଙ୍କାରେ ସମସ୍ତେ ଅତି ଦୁଃଖରେ କାଳ କାଟୁଥିଲେ । ଏହିପରି ଅବସ୍ଥାରେ ମୋର ଉଚ୍ଚ ପ୍ରାଥମିକ ଶିକ୍ଷା ଶେଷ ହେଲା । ନୂଆବର୍ଷ ଆରମ୍ଭରେ ଭାଇନାଙ୍କର ମୃତ୍ୟୁ ହେଲା ଏବଂ ମୋର ଶିକ୍ଷାରେ ପୂର୍ଣ୍ଣଛେଦ ପଡ଼ିଲା ।

# ନୂତନ ଆଶାର ସ୍ଥଳ – ପଞ୍ଚପଲ୍ଲୀ ଗ୍ରାମ

ଭାଇନାଙ୍କ ମୃତ୍ୟୁ ପରେ ମୋର ବୋଉ, ନନା ଏବଂ ପରିବାରର ଅନ୍ୟ ସମସ୍ତ ଲୋକ ଭୀତସ୍ପୃହ ହୋଇ ମୋତେ ଉପରକୁ ପଢ଼ାଇବାକୁ କିମ୍ବା କୌଣସି ମାଇନର ସ୍କୁଲରେ ମୋର ନାମ ଲେଖାଇବାକୁ ମନ ଦେଲେ ନାହିଁ । ଆମ ଗାଁରେ ସେତେବେଳେ କୌଣସି ମାଇନର ସ୍କୁଲ ନ ଥିଲା । ମୁଁ ଉଚ୍ଚ ପ୍ରାଥମିକ ଶିକ୍ଷା ଶେଷ କରି ଗାଁରେ ବୁଲିଲି । ଗୋଟିଏ ମାଇନର ସ୍କୁଲରେ ପଢ଼ିବାକୁ ମୁଁ ବୋଉ ପାଖରେ ଅନେକ ସମୟରେ ଅଳି କରୁଥିଲି, ବୋଉ କିନ୍ତୁ ଭାଇନାଙ୍କ ମୃତ୍ୟୁ ହେବା ଏବଂ ମୋର ପଢ଼ା ବନ୍ଦ ହୋଇଯିବା ଦେଖି କେବଳ କାନ୍ଦୁଥାଏ, କିଛି କରିପାରୁ ନ ଥାଏ । ଶିକ୍ଷାବର୍ଷର ଆରମ୍ଭର ପ୍ରାୟ ଚାରିମାସ ପରେ ପଞ୍ଚପଲ୍ଲୀ ଗ୍ରାମର ମୋର ଜଣେ ପିଉସୀପୁଅ ଭାଇ, ଜଗନ୍ନାଥ ମିଶ୍ର ଆମ ଘରକୁ ଆସିଥିଲେ । ତାର ଦୁଇ ତିନିବର୍ଷ ଆଗରୁ ତାଙ୍କ ଗ୍ରାମରେ ଗୋଟିଏ ମାଇନର ସ୍କୁଲ ଆରମ୍ଭ ହୋଇଥିଲା ଏବଂ ବର୍ଷକ ଆଗରୁ ସେ ସ୍କୁଲ ସରକାରୀ ମଞ୍ଜୁରି ପାଇଥିଲା । ତାଙ୍କ ଘରପାଖ ସେହି ସ୍କୁଲରେ ମୋର ନାମ ଲେଖାଇବା ପାଇଁ, ଜଗନ୍ନାଥଭାଇନା ବୋଉକୁ ପ୍ରବର୍ତ୍ତାଇଲେ । ବୋଉର ମୋତେ ପଢ଼ାଇବାକୁ ଇଚ୍ଛା ଥାଏ, ମାତ୍ର ଭାଇନାଙ୍କ ମୃତ୍ୟୁ ହେତୁ ଦୁଃଖରେ ଭାଙ୍ଗିପଡ଼ି କିଛି କରି ପାରୁ ନ ଥାଏ । ଜଗନ୍ନାଥଭାଇନାଙ୍କ ପ୍ରସ୍ତାବରେ ଶେଷରେ ସେ ରାଜି ହୋଇଗଲା ଏବଂ ଦିନକ ପରେ ମୁଁ ତାଙ୍କ ସଙ୍ଗରେ ତାଙ୍କ ଗାଁ ପଞ୍ଚପଲ୍ଲୀ ଗ୍ରାମେଶ୍ୱର ମାଇନର ସ୍କୁଲରେ ପଢ଼ିବାକୁ ଗଲି । ଘରୁ ବାହାରିବା ସମୟରେ ମୋର ବୋଉ, ନନା ଓ ମଝିଆଁଭାଇ କାନ୍ଦୁଥିଲେ । ସେମାନେ ମୋର ମୃତ ବଡ଼ଭାଇଙ୍କ କଥା ଭାବୁଥିଲେ ।

ପଞ୍ଚପଲ୍ଲୀ ସ୍କୁଲରେ ନାମ ଲେଖାଇବା ବେଳକୁ ଶିକ୍ଷାବର୍ଷର ଚାରିମାସ ବିତିଯାଇ ପଞ୍ଚମ ମାସ ଚାଲିଥାଏ । ସ୍କୁଲର ଗ୍ରୀଷ୍ମ ଛୁଟି ହେବାକୁ ମୋଟେ ପନ୍ଦର ଦିନ ଥାଏ । ମୁଁ ଉଚ୍ଚ ପ୍ରାଥମିକ ସ୍କୁଲରେ ପଞ୍ଚମ ଶ୍ରେଣୀରେ ପାସ୍ କରିଥିଲି । ମାତ୍ର ସେ ସ୍କୁଲରେ ଇଂରାଜୀ ପଢ଼ା ହେଉ ନ ଥିଲା । ଭାଇନା ରୋଗ ଅବସ୍ଥାରେ ମଧ ମୋତେ ପ୍ରତିଦିନ କେତେଗୋଟି ଇଂରାଜୀ ଶବ୍ଦ ଲେଖି ଦେଉଥିଲେ । ମୁଁ ସେଗୁଡ଼ିକୁ ମୁଖସ୍ଥ କରୁଥିଲି । ଇଂରାଜୀ ପଢ଼ି ନ ଥିବାରୁ ଏବଂ ଶିକ୍ଷାବର୍ଷ ଅଧା ହୋଇଯାଇଥିବାରୁ, ସ୍କୁଲରେ ମୋର ନାମ ପଞ୍ଚମ ଶ୍ରେଣୀରେ ଲେଖାହେଲା । ମୁଁ ଗ୍ରୀଷ୍ମଛୁଟି ପର୍ଯ୍ୟନ୍ତ ମୋ ପିଉସୀ ଘରେ ରହିଲି । ଛୁଟିପରେ ସ୍କୁଲ ବୋର୍ଡ଼ିଂରେ ରହିଲି ।

ପଞ୍ଚପଲ୍ଲୀ ଗ୍ରାମ ସମୁଦ୍ରକୂଳରୁ ମୋଟେ ଦଶ ବାର କିଲୋମିଟର ଦୂରରେ ଅବସ୍ଥିତ । ଆମ ଗାଁରେ ସେ ଅଞ୍ଚଳକୁ ତଳ ମାଳ ଅଞ୍ଚଳ ବୋଲି କହୁଥିଲେ । ବିଷ୍ଣୁପୁର ଜମିଦାରୀର ନାରଦିଆ, ଟିକରପଡ଼ା, ଗୋବିନ୍ଦପୁର, ପାଣିଏଣ୍ଡୁଳା ଏବଂ ପାଟଣା, ଏହି ପାଞ୍ଚଗୋଟି

ଗ୍ରାମର ସମନ୍ୱୟରେ ପଞ୍ଚପଲ୍ଲୀ ଗ୍ରାମ ଗଠିତ । ପ୍ରଥମେ ନାରଦିଆ ଓ ଟିକଗପଡ଼ାକୁ ମିଳିତଭାବେ ଲୋକେ ପଞ୍ଚପଲ୍ଲୀ କହୁଥିଲେ । ପରେ ସେଥିରେ ଗୋବିନ୍ଦପୁର, ପାଣିଏଣ୍ଡୁକା ଏବଂ ପାଟଣା ଗ୍ରାମମାନ ମିଶିଥିଲା । ଏହ ପାଞ୍ଚଗୋଟି ଗାଁ ମିଶି ପଞ୍ଚପଲ୍ଲୀ ଗ୍ରାମ, ଆମ ଗାଁଠାରୁ ଯଥେଷ୍ଟ ବଡ଼ । ସେଥିରେ ବ୍ରାହ୍ମଣ, କରଣ ପ୍ରଭୃତି ଉଚ୍ଚ ଜାତିର ଲୋକମାନଙ୍କ ସହିତ ବହୁ ଜାତିର ଲୋକମାନେ ବାସ କରନ୍ତି । ସେଥିରେ କେତେକ ମୁସଲମାନ ପରିବାର ମଧ୍ୟ ଅଛନ୍ତି । ପ୍ରଥମରୁ ନାରଦିଆ ଓ ଟିକରପଡ଼ା ମିଳିତ ପଞ୍ଚପଲ୍ଲୀ ଗ୍ରାମ ମଝିରେ ପ୍ରସିଦ୍ଧ ଗ୍ରାମେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ପାଞ୍ଚଗୋଟି ସାହିର ପ୍ରତ୍ୟେକରେ ଦୁଇ ପାଖରେ ଘର ରହି ମଝିରେ ଗୋଟିଏ ରାସ୍ତା ରହିଥିଲା । ପାଞ୍ଚଟି ସାହି ଥିବାରୁ ଗ୍ରାମର ନାମ ପଞ୍ଚପଲ୍ଲୀ ହୋଇଥିଲା । ଗ୍ରାମେଶ୍ୱର ମହାଦେବଙ୍କ ମନ୍ଦିର ଏହି ପାଞ୍ଚସାହିର ମଝିରେ ଏବଂ ପାଞ୍ଚସାହିର ଦାଣ୍ଡ ଗ୍ରାମେଶ୍ୱରଙ୍କ ଦାଣ୍ଡରେ ମିଳିତ ହୋଇଛି । ମନ୍ଦିର ସମ୍ମୁଖରେ ପୂର୍ବଦିଗରେ ଚନ୍ଦନପୋଖରୀ ଅବସ୍ଥିତ ଥିଲା । ଆମେ ପଢୁଥିବା ପର୍ଯ୍ୟନ୍ତ ସେ ପୋଖରୀ ଥିଲା । ବର୍ତ୍ତମାନ ସେ ପୋଖରୀ ପୋତା ହୋଇ ମନ୍ଦିରର ଉତ୍ତର ପାଖରେ ପୋଖରୀ ଖୋଳା ହୋଇଛି ଏବଂ ସେଥିରେ ନୃସିଂହ ଏବଂ ସୁଦର୍ଶନ ଠାକୁରଙ୍କ ଚାପ ଖେଳ ହେଉଛି । ଗାଁର ଉତ୍ତରରେ ଥିବା ସାହି ଦୁଇଟିର ଶେଷରେ ବିସ୍ତୀର୍ଣ୍ଣ ପଡ଼ିଆ ଗୋବିନ୍ଦପୁର ପର୍ଯ୍ୟନ୍ତ ପଡ଼ିଥିଲା ଏବଂ ଗୋବିନ୍ଦପୁର ପାଖରେ ମୁହାଣ ମୁହଁ ବୋଲି ଗୋଟିଏ ବାଲିପୂର୍ଣ୍ଣ ସ୍ଥାନ ଥିଲା । ଲୋକେ କହୁଥିଲେ ଯେ ବହୁକାଳ ପୂର୍ବେ ସମୁଦ୍ର ସେହିଯାଏ ଥିଲା ଏବଂ ଗାଁ ପାଖରେ ଥିବା ସାଉଁକିଆ ନଦୀ ସେହିଠାରେ ସମୁଦ୍ରରେ ପଡ଼ିଥିଲା । କିନ୍ତୁ ବର୍ତ୍ତମାନ ସମୁଦ୍ର ଗାଁଠାରୁ ପ୍ରାୟ ଦଶ ବାର କିଲୋମିଟର ଘୁଞ୍ଚିଯାଇଛି ଏବଂ ସାଉଁକିଆ ନଈ, ଅନ୍ୟ ସ୍ଥାନରେ ସମୁଦ୍ରରେ ପଡ଼ିଛି । ଗାଁ ପାଖରେ ବହିଯାଉଥିବା ସାଉଁକିଆ ନଈ କନ୍ଦରପୁରଠାରୁ ଗୋଟିଏ ପାଣି ନାଳ ରୂପେ ବାହାରିଛି । ସେଠାରୁ ନଦୀରୂପ ଧରି କାପ୍ତିପଦା ମଠଠାରୁ ତଣ୍ଡିକୂଳ ପର୍ଯ୍ୟନ୍ତ ଲୋକମାନେ ତାକୁ ହଂସୁଆ ନଦୀ କହୁଛନ୍ତି । ସେଠାରୁ ସମୁଦ୍ରର ଜଟାଧାରୀ ମୁହାଣ ପର୍ଯ୍ୟନ୍ତ ଲୋକମାନେ ତାକୁ ସାଉଁକିଆ ନଦୀ କହୁଛନ୍ତି । ଆମେ ସେଠାରେ ଥିବାବେଳେ ଖରାଦିନେ ସମୁଦ୍ର ଜୁଆର ପାଣିରେ ସେ ନଈର ପାଣି ଲୁଣିଆଁ ହୋଇଯାଉଥିଲା– ମାତ୍ର ବର୍ଷାଦିନେ ପାଣି ମଧୁର ରହୁଥିଲା । ବର୍ଷାଦିନେ ନଈପାଣି ଓ ବିଲପାଣି ଏକାକାର ହୋଇଯାଏ । ଉଭୟ ବର୍ଷାଦିନେ ଏବଂ ଖରାଦିନେ ସେ ନଈରେ କୁମ୍ଭୀରମାନେ ଯାତାୟାତ କରନ୍ତି ଏବଂ କେତେକ ଗୋରୁଗାଈ ଏବଂ ମଣିଷଙ୍କୁ ମାରି ଖାଇଯାନ୍ତି । ମୁଁ ଥିବାବେଳେ ଦୁଇଥର ଲୋକମାନେ ଦୁଇଟି ବଡ଼ କୁମ୍ଭୀରଙ୍କୁ ବନ୍ଧୁକରେ ମରାଇ ଗ୍ରାମେଶ୍ୱରଙ୍କ ମନ୍ଦିର ଆଗରେ ପକାଇଥିବା ଦେଖିଥିଲି । ଉଭୟ ଖରାଦିନେ ଏବଂ ବର୍ଷାଦିନେ ନଈରେ ଗାଧୋଇବା ନିରାପଦ ନୁହେଁ । ସେଥିଯୋଗୁଁ ଆମେ ଗାଁରେ ଥିବା ପୋଖରୀମାନଙ୍କରେ ଗାଧୋଇଥିଲୁ । ଫଗୁଣ ମାସ ବେଳକୁ ନଈପାଣି ଲୁଣିଆ ହେବା ପୂର୍ବରୁ ଆମେ କେତେଥର ସେ ନଈରେ ଗାଧୋଉଥିଲୁ । ସ୍କୁଲରେ ପଢ଼ିବା ପରେ ପ୍ରତିଦିନ ଦଣ୍ଡାମୁଣ୍ଡ ପଡ଼ିଆରେ ଡୁ ଡୁ ଖେଳୁଥିଲୁ ।

ଆମେ ପଢ଼ିବାବେଳେ ଗ୍ରାମେଶ୍ୱର ମନ୍ଦିରର ଅଗଣା ଓ ଘରର ଚଟାଣ ପକ୍କା ଥିଲା ମାତ୍ର ଠାକୁରଘର କାଠ ବାଉଁଶ ଚାଳଛପର ଘର ଥିଲା । ଗତ ଆଠ ବର୍ଷ ତଳେ ସେଠାରେ ୭୧ ଫୁଟ ଉଚ୍ଚର ଶିବ ମନ୍ଦିର ନିର୍ମିତ ହୋଇଛି । ବହୁକାଳରୁ ମନ୍ଦିରରେ ବର୍ଷର ବାରମାସରେ ବହୁପର୍ବ ପାଳିତ ହୋଇ ଆସୁଛି । ସେଥିମଧ୍ୟରେ ଶିବରାତ୍ରି ପର୍ବ ସବୁଠାରୁ ବଡ଼ ଉତ୍ସବ ରୂପେ ମହା ସମାରୋହରେ ପାଳିତ ହୁଏ । ସେଦିନ ସେଠାରେ ବହୁ ଦୂରଦୂରାନ୍ତରରୁ ଆସିଥିବା ଲୋକମାନଙ୍କର ସମାରୋହ ହୁଏ । ଆମେ ପଢୁଥିବାବେଳେ ମାଇନର ସ୍କୁଲ ଘରଟି ଠାକୁରଙ୍କ ସମ୍ମୁଖରେ ଥିବା ଚନ୍ଦନ ପୋଖରୀର ଉତ୍ତର ପାଖରେ ଥିଲା । ଆମେ ପ୍ରତିଦିନ ସନ୍ଧ୍ୟାବେଳେ ଠାକୁରଙ୍କୁ ଦର୍ଶନ କରି ପ୍ରାର୍ଥନା କରୁଥିଲୁ । ରଥ ସମୟରେ ମନ୍ଦିର ମଧ୍ୟରେ ଥିବା ନୃସିଂହଦେବ ଓ ସୁଦର୍ଶନଙ୍କୁ ରଥରେ ବସାଇ ଦଣ୍ଡାମୁଣ୍ଡ ବାଟେ ଗୋବିନ୍ଦପୁରସ୍ଥ ନାରାୟଣୀ ମନ୍ଦିର ନିକଟ ମାଉସୀମା ମନ୍ଦିରକୁ ନିଆଯାଉଥିଲା । ନଅ ଦିନ ପରେ ବାହୁଡ଼ା ଦଶମୀରେ ଠାକୁର ଯଥାରୀତିରେ ମନ୍ଦିରକୁ ଫେରନ୍ତି । ମୁଁ ପ୍ରଥମେ ସେଠାରେ ରଥଯାତ୍ରା ଦେଖିଲି । ଆମ ଗାଁରେ କିମ୍ବା ପାଖ ଗାଁମାନଙ୍କରେ ରଥଯାତ୍ରା ହୁଏ ନାହିଁ ।

ବର୍ତ୍ତମାନ ସେ ଗାଁରେ ବହୁ ଜାତିର ଲୋକମାନେ ବାସ କରୁଛନ୍ତି । ପ୍ରଥମେ ସେ ଗାଁରେ ବ୍ରାହ୍ମଣ ନ ଥିବାରୁ ବିଷ୍ଣୁପୁର ରାଜା ପୁରୀ ଶ୍ରୀରାମଚନ୍ଦ୍ରପୁର ଗ୍ରାମରୁ ଦୁଇଜଣ ବ୍ରାହ୍ମଣ ଅଣାଇ ଗ୍ରାମେଶ୍ୱର ମନ୍ଦିରର ଦକ୍ଷିଣ ଦାଣ୍ଡରେ ଏବଂ ନଳଦିଆ ଗୋପୀନାଥପୁର ଶାସନରୁ ଆଣିଥିବା ଦୁଇଜଣ ବ୍ରାହ୍ମଣଙ୍କୁ ଉତ୍ତରପାର୍ଶ୍ୱର ଦାଣ୍ଡରେ ବାସସ୍ଥାନ ଦେଇଥିଲେ । ଆମେ ପଢୁଥିବାବେଳେ ମନ୍ଦିରର ଦକ୍ଷିଣ ପାଖରେ କୃଷ୍ଣାତ୍ରେୟ ଗୋତ୍ରୀ ମିଶ୍ର ବ୍ରାହ୍ମଣସାହି ଏବଂ ଉତ୍ତର ପାଖରେ ସେହି ଗୋତ୍ରର ଗୋଟିଏ ବ୍ରାହ୍ମଣ ସାହି ଥିଲା । ଦକ୍ଷିଣ ସାହିରେ ମୋର ମଉସା ଶଙ୍କର ମିଶ୍ରଙ୍କ ଘର ଥିଲା ଏବଂ ଉତ୍ତର ସାହିରେ ମୋର ପିଉସା ଶ୍ରୀଧର ମିଶ୍ରଙ୍କ ଘର ଥିଲା । ସେହି ଶ୍ରୀଧରପିଉସାଙ୍କ ପୁଅ ଜଗନ୍ନାଥ ମିଶ୍ରଙ୍କ ସଙ୍ଗରେ ଯାଇ ମୁଁ ସେ ଗାଁ ସ୍କୁଲରେ ନାମ ଲେଖାଇଥିଲି ।

ଆମେ ପଢ଼ିବା ସମୟ ପର୍ଯ୍ୟନ୍ତ ପଞ୍ଚପଲ୍ଲୀ ଗାଁକୁ ଯିବାଆସିବା କରିବା କଷ୍ଟକର ଥିଲା । ସେ ଗାଁକୁ କୌଣସି ରାସ୍ତା ନ ଥିଲା । ଆମ ଗାଁଠାରୁ ସେ ଗାଁ ପ୍ରାୟ ବାରମାଇଲ ଦୂର । ଆମେ ବିଲ ଓ ଗାଁ ଗୋହିରୀମାନ ଦେଇ ଖରାଦିନେ ସେ ଗାଁକୁ ଯାଉଥିଲୁ । ବର୍ଷାଦିନେ ବୋରିକିନା ପର୍ଯ୍ୟନ୍ତ କଚା ରାସ୍ତାରେ ଯାଇ ବିଭିନ୍ନ ଗାଁ ଦେଇ ଘୋଡ଼ାଡିଆ ହାଟବାଟେ ସେ ଗାଁକୁ ଯାଉଥିଲୁ । ସେତେବେଳେ କଟକ ମାଛଗାଁ ରାସ୍ତା ଜଗତ୍‌ସିଂହପୁର ପର୍ଯ୍ୟନ୍ତ ୨୮ ମାଇଲ ନାଲିଗୋଡ଼ି ରାସ୍ତା ଥିଲା । ତା'ପରେ ଆମ ଗାଁ ଦେଇ ମାଛଗାଁ ପର୍ଯ୍ୟନ୍ତ କଚା ରାସ୍ତା ଥିଲା । ଆମ ଗାଁଠାରୁ ଜଗତ୍‌ସିଂହପୁର ବସ୍‌ଷ୍ଟାଣ୍ଡ ମୋଟେ ଚାରି ମାଇଲ ଦୂର ଥିଲା । କିନ୍ତୁ ପଞ୍ଚପଲ୍ଲୀରୁ ଲୋକମାନେ କଟକ ଆସିବା ପାଇଁ ବର୍ଷାଦିନେ ବୋରିକିନା ବାଟେ ପ୍ରାୟ କୋଡ଼ିଏ ମାଇଲ ଆସି ଜଗତ୍‌ସିଂହପୁରଠାରେ କଟକ ଯିବାକୁ ବସ୍ ଚଢୁଥିଲେ । ଖରାଦିନେ ବିଲ ଓ ଗାଁମାନଙ୍କ ମଧ୍ୟରେ ସେମାନେ ଜଗତ୍‌ସିଂହପୁର

ଆସୁଥିଲେ । ସେ ଗାଁକୁ କଟକରୁ ମାଲପତ୍ର ତାଳଦଣ୍ଡା କେନାଲରେ ଡଙ୍ଗାରେ ଆସି ସାଉଁଳିଆ ନଦୀରେ ଡଙ୍ଗାରେ ସେ ଗ୍ରାମକୁ ଯାଉଥିଲା । ଗମନାଗମନ ଦିଗରୁ ପଞ୍ଚପଲ୍ଲୀ ଗୋଟିଏ ଦୁର୍ଗମ ଗ୍ରାମ ଥିଲା । ବର୍ତ୍ତମାନ ସେ ଗାଁକୁ ଘୋଡ଼ାଡିଆ ବାଟେ ସବୁଦିନିଆଁ ପକ୍କା ରାସ୍ତା ହୋଇଛି ଏବଂ ସେ ଗାଁକୁ କଟକରୁ ବଡ଼ ବଡ଼ ବସ୍ ଯିବାଆସିବା କରିପାରୁଛି ।

ଆମେ ଥିବା ସମୟରେ ସେ ଗାଁ ପାଖରେ ଥାନା ବା ଡାକଘର ନ ଥିଲା । ସେ ଗାଁ ଏରସମା ଥାନା ଏବଂ ଡାକଘର ଅଧୀନରେ ଥିଲା । କିନ୍ତୁ ସେଠାରୁ ଏରସମାକୁ କୌଣସି ରାସ୍ତା ନ ଥିଲା । ବର୍ଷାଦିନେ ଲୋକମାନେ ନଈ ଏବଂ ବିଲରେ ହୁଲି ଡଙ୍ଗାରେ ଏରସମା ଯାଉଥିଲେ । ଖରାଦିନେ ବିଲବାଟେ ଚାଲିକରି ଯାଉଥିଲେ । ଡାକପିଅନ ମାସରେ ଥରେ ଦୁଇଥର ଗାଁକୁ ଆସି ଚିଠି ଏବଂ ମନିଅର୍ଡ଼ର ପ୍ରଭୃତି ଦେଇ ଯାଉଥିଲା । ଗାଁରେ ମଧ୍ୟ ହାଟ ନ ଥିଲା । ଲୋକମାନେ ଦୁଇ ମାଇଲ ଦୂର ଘୋଡ଼ାଡିଆ ହାଟ ଉପରେ ନିର୍ଭର କରୁଥିଲେ । ସୁତରାଂ ଗମନାଗମନ ସୁବିଧା, ଥାନା, ଡାକଘର, ହାଟ, ଡାକ୍ତରଖାନା ପ୍ରଭୃତି ସମସ୍ତ ପ୍ରକାର ଅନୁଷ୍ଠାନ ଦୃଷ୍ଟିରୁ ପଞ୍ଚପଲ୍ଲୀ ଗୋଟିଏ ଅନୁନ୍ନତ ଅଞ୍ଚଳ ଥିଲା । କେବଳ ପ୍ରସିଦ୍ଧ ଗ୍ରାମେଶ୍ୱର ମହାଦେବ ମନ୍ଦିର ଯୋଗୁଁ ସେ ଗ୍ରାମ ପ୍ରସିଦ୍ଧ ଥିଲା । ଏ ସବୁ ଦୃଷ୍ଟିରୁ ଆମ ଗାଁ ଗୋଟିଏ ଉନ୍ନତ ଅଞ୍ଚଳ ଥିଲା । କଟକ ମାଛଗାଁ ରାସ୍ତା ଆମ ଗ୍ରାମ ମଧ୍ୟଦେଇ ଯାଇଥିଲା । ମାଛଗାଁ କେନାଲର ଶାଖା କେନାଲମାନଙ୍କ ଦ୍ୱାରା ଆମ ଗାଁ ଜମିରେ ଜଳସେଚନ ହେଉଥିଲା । ଗାଁରେ ହାଟ ଥିଲା ଏବଂ ଗାଁଠାରୁ ଚାରିମାଇଲ ଦୂର ଜଗତ୍‌ସିଂହପୁର ଠାରେ ଥାନା, ଡାକଘର, ବସ୍‌ଷ୍ଟାଣ୍ଡ, ଡାକ୍ତରଖାନା ପ୍ରଭୃତି ସବୁ ସୁବିଧା ଥିଲା । କଟକରୁ ମାଛଗାଁ ରାସ୍ତାରେ ସିଧାସଳଖ ବଳଦଗାଡ଼ିରେ ମାଲପତ୍ର ଆମ ଗାଁକୁ ଆସିପାରୁଥିଲା । ମାଛଗାଁ ରାସ୍ତାରେ ଆମ ଗାଁଠାରୁ ଛଅ ମାଇଲ ଦୂର ବାଲିକୁଦାଠାରେ ମଧ୍ୟ ଉପରୋକ୍ତ ସବୁ ସୁବିଧା ଥିଲା । ୧୯୬୫ ମସିହା ପରେ ପଞ୍ଚପଲ୍ଲୀ ଗ୍ରାମରେ ଉପରୋକ୍ତ ସବୁ ସୁବିଧା ମଧ୍ୟ କରାଯାଇପାରିଛି । ଗାଁରେ ହାଟ, ଡାକଘର, ଡାକ୍ତରଖାନା, ଥାନା ଏବଂ ହାଇସ୍କୁଲ ହୋଇଛି । କଟକରୁ ଏବଂ ଏରସମାରୁ ସେ ଗାଁକୁ ପକ୍କା ରାସ୍ତା ହୋଇଛି ଏବଂ ସେ ଗାଁକୁ ବସ୍ ଚାଲିଛି ।

ସେତେବେଳେ ସେହି ଅନୁନ୍ନତ ଅବସ୍ଥାରେ ପଞ୍ଚପଲ୍ଲୀରେ ଗୋଟିଏ ମାଇନର ସ୍କୁଲ ଆରମ୍ଭ ହୋଇଥିଲା । ସ୍କୁଲ ୧୯୨୮ ମସିହାରେ ସରକାରୀ ଅନୁମୋଦନ ପାଇଥିଲା ଏବଂ ମୁଁ ୧୯୨୯ ମସିହାରେ ସେ ସ୍କୁଲରେ ନାମ ଲେଖାଇଥିଲି । ସ୍କୁଲଟି ଗ୍ରାମେଶ୍ୱରଙ୍କ ଚନ୍ଦନ ପୋଖରୀର ଉତ୍ତର ପାଖରେ ଖଣ୍ଡିଏ ଛୋଟ ଜମି ଉପରେ ନିର୍ମିତ ହୋଇଥିଲା । ସ୍କୁଲ ହତାକୁ ଲାଗି ଛପଣ ଜମିଦାରୀଙ୍କ କଚେରିର ବାଡ଼ି ଥିଲା ଏବଂ ସ୍କୁଲ ପାଖରେ ଗୋଟିଏ ଛୋଟ ମୁସଲମାନ ବସ୍ତି ଥିଲା । ବସ୍ତି ପାଖରେ ପୂର୍ବକୁ ଗୋଟିଏ ବଡ଼ ବରଗଛ ମୂଳେ ପୀରଙ୍କ ପୂଜାସ୍ଥଳ ଥିଲା । ସେ ପୀରଙ୍କୁ ଉଭୟ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟର ଲୋକମାନେ ପୂଜା କରୁଥିଲେ । ସ୍କୁଲରେ ଥିବା ସମୟରେ ଆମ୍ଭେମାନେ ମଧ୍ୟ ସବୁଦିନେ ସନ୍ଧ୍ୟାବେଳେ ପୀରଙ୍କ ପାଖରେ ମୁଣ୍ଡିଆ ମାରୁଥିଲୁ । ସ୍କୁଲର ଜମି ପରିମାଣ ମୋଟେ

ଦୁଇଗୁଣ୍ଠ ଥିଲା । ସେଥିରେ ଦୁଇ ସାହାଲା ଛପରଘର ତିଆରି ହୋଇଥିଲା । ଗୋଟିଏ ସାହାଲା ସ୍ଥାୟୀ ଏବଂ ଭଲ ଘର ଥିଲା । ଅନ୍ୟଟି ଦୁଇଟି କୋଠରି ବିଶିଷ୍ଟ ଗୋଟିଏ ଚାଳିଆ ଘର ଥିଲା । ଦୁଇ କୋଠରି ମଧ୍ୟରେ କାନ୍ଥଟି ଗୋଟିଏ ଅଧାକାନ୍ଥି ଥିଲା । ସ୍ଥାୟୀ ସାହାଲାରେ ଚାରିଗୋଟି କୋଠରି ଥିଲା । ମଝି କୋଠରି ଦୁଇଟି ବଡ଼ ଥିଲା । ସେଥିରେ ବେଞ୍ଚ ଡେସ୍କ ପଡ଼ି କ୍ଲାସ୍ ହେଉଥିଲା । ଶେଷ ଦୁଇଟି କୋଠରିରେ ବୋର୍ଡିଂପିଲା ଓ ଶିକ୍ଷକମାନେ ସେମାନଙ୍କର ଜିନିଷପତ୍ର ରଖି ଚଳୁଥିଲେ । ଚାଳିଆ ସାହାଲାର ଦୁଇଟି ଯାକ କୋଠରିରେ ବେଞ୍ଚ ଡେସ୍କ ପଡ଼ି କ୍ଲାସ ହେଉଥିଲା । ସ୍କୁଲ ସମୟ ପୂର୍ବରୁ ଏବଂ ପରେ ବୋର୍ଡିଂ ପିଲାମାନେ ସ୍କୁଲ କ୍ଲାସ ରୁମ୍‌ମାନଙ୍କରେ ପଢୁଥିଲେ ଏବଂ ରାତିରେ ସ୍କୁଲ କ୍ଲାସରୁମ୍ ଏବଂ ତାଙ୍କ ରହିବା କୋଠରିମାନଙ୍କରେ ଶୋଉଥିଲେ । ସ୍କୁଲର ଉପରୋକ୍ତ ଦୁଇ ସାହାଲା ଘର ଆଗରେ ଗୋଟିଏ ଚାଳିଆ ଘରେ ରୋଷେଇ ହେଉଥିଲା ଏବଂ ପିଲା ଓ ଶିକ୍ଷକ ସେହି ରୋଷେଇଘରେ ଖାଉଥିଲେ । ଚତୁର୍ଥ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସମୁଦାୟ ସ୍କୁଲରେ ପ୍ରାୟ ଶହେ ଛାତ୍ର ଥିଲେ । ସ୍କୁଲରେ କୌଣସି ବାଳିକା ପଢୁ ନ ଥିଲେ । ସ୍କୁଲରେ ମୋଟେ ଚାରିଜଣ ଶିକ୍ଷକ ଥିଲେ । ହେଡ୍‌ମାଷ୍ଟର ଆଇ.ଏ. ପାସ୍ କରିଥିଲେ । ଦ୍ୱିତୀୟ ଶିକ୍ଷକ ମାଟ୍ରିକ୍ୟୁଲେସନ ପାସ୍ କରି ଶିକ୍ଷକ ଟ୍ରେନିଂ ପରୀକ୍ଷାରେ ପାସ୍ କରିଥିଲେ । ତୃତୀୟ ଶିକ୍ଷକ ମଧ୍ୟ ମାଟ୍ରିକ୍ୟୁଲେସନ୍ ପରେ ଶିକ୍ଷକ ଟ୍ରେନିଂ ପାସ୍ କରିଥିଲେ । ମାତ୍ର ଚତୁର୍ଥ ଶିକ୍ଷକ କେବଳ ମାଇନର ପାସ୍ କରି ଗୁରୁଟ୍ରେନିଂ ପରୀକ୍ଷାରେ ପାସ୍ କରିଥିଲେ । ସ୍କୁଲ ସରକାରଙ୍କଠାରୁ କୌଣସି ଅର୍ଥ ସାହାଯ୍ୟ ପାଉ ନ ଥିଲା । ଛାତ୍ରବେତନ ଏବଂ ଚାନ୍ଦା ଭେଦାଦ୍ୱାରା ଦରିଦ୍ର ଭାବରେ ଚଳୁଥିଲା । ପଞ୍ଚପଲ୍ଲୀ ଗ୍ରାମର ସବୁଠାରୁ ବଡ଼ ଧନୀ ଲୋକ ଉଦି ମହାପାତ୍ର ସ୍କୁଲ ମ୍ୟାନେଜିଂ କମିଟିର ଅଧ୍ୟକ୍ଷ ଥିଲେ ।

ତୁଳନାତ୍ମକ ଭାବରେ ଦେଖିଲେ ଆମ ଗାଁ ପଞ୍ଚପଲ୍ଲୀଠାରୁ ଉନ୍ନତ ଥିଲା । ଆମ ଗାଁଠାରୁ ଚାରି ମାଇଲ ଦୂରରେ ଜଗତ୍‌ସିଂହପୁରଠାରେ ପୁରାତନ ସରକାରୀ ମାଇନର ସ୍କୁଲ ଥିଲା । ମୋଠାରୁ ପ୍ରାୟ କୋଡ଼ିଏ ବର୍ଷ ବଡ଼ ମୋ ଦଦେଇ ପୁଅ ଭାଇ ସେ ସ୍କୁଲରେ ପଢୁଥିଲେ । ମୋ ବଡ଼ଭାଇ ମଧ୍ୟ ସେ ସ୍କୁଲରେ ପଢ଼ିଥିଲେ । ଆମ ଗାଁଠାରୁ ମାଛଗାଁ ରାସ୍ତାରେ ଛଅମାଇଲ ଦୂର ବାଲିକୁଦାରେ ମଧ୍ୟ ଗୋଟିଏ ପୁରାତନ ମାଇନର ସ୍କୁଲ ଥିଲା । ସେ ସ୍କୁଲରେ ପ୍ରାଣକୃଷ୍ଣ ପରିଚ୍ଛା ପଢ଼ିଥିଲେ । ମୋ ସମୟରେ ମଧ୍ୟ ଆମ ଗାଁରୁ କେତେକ ପିଲା ସେଠାରେ ପଢୁଥିଲେ । ସ୍ୱାଭାବିକ ଭାବେ ମୁଁ ଜଗତ୍‌ସିଂହପୁର କିମ୍ବା ବାଲିକୁଦା ମାଇନର ସ୍କୁଲରେ ପଢ଼ିଥାନ୍ତି । କିନ୍ତୁ ଉପରୋକ୍ତ ଘଟଣାଚକ୍ରରେ ମୁଁ ନୂଆହୋଇ ଆରମ୍ଭ ହୋଇଥିବା ଦରିଦ୍ର ପଞ୍ଚପଲ୍ଲୀ ମାଇନର ସ୍କୁଲରେ ପଢ଼ିଲି ।

ତଥାପି ସ୍ମୃତିଚାରଣ କରି ଦେଖୁଛି ଯେ ସେ ମାଇନର ସ୍କୁଲରେ ନିୟମିତ ପଢ଼ାପଢ଼ି ହେଉଥିଲା । ଶିକ୍ଷକମାନେ ସେମାନଙ୍କୁ ଦିଆଯାଇଥିବା ବିଷୟମାନ ନିୟମିତ ଭାବରେ ଶ୍ରେଣୀମାନଙ୍କରେ ପଢ଼ାଉଥିଲେ । ସ୍କୁଲରେ ମୁଁ ବିଭିନ୍ନ ବିଷୟମାନ ମନୋଯୋଗ ସହ ପଢୁଥିଲି ଏବଂ ସହଜରେ ସବୁଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିଲି । ବିଶେଷତଃ

ଗଣିତରେ ମୁଁ ଅଧିକ ପାରଦର୍ଶିତା ଲାଭ କରିଥିଲି । ସ୍କୁଲର ଅନ୍ୟ ପିଲାମାନେ ମୋଠାରୁ ଅଙ୍କ ବୁଝୁଥିଲେ । ସାହିତ୍ୟ, ଇତିହାସ, ଭୂଗୋଳ ପ୍ରଭୃତି ପାଠ୍ୟକ୍ରମର ଅନ୍ୟ ବିଷୟମାନ ମଧ୍ୟ ମୁଁ ଭଲରୂପେ ପଢ଼ିଥିଲି । ମଧୁସୂଦନ ରାଓଙ୍କ ସାହିତ୍ୟ ପ୍ରସଙ୍ଗ ସେତେବେଳେ ଷଷ୍ଠ ଓ ସପ୍ତମ ଶ୍ରେଣୀରେ ପଢ଼ା ଯାଉଥିଲା । ସେ ବହିର 'ଜୀବନ ଚିନ୍ତା' କବିତାର ଅନେକ ପଦ ମୋର ଆଜିଯାଏ ମନେଅଛି । ସେତେବେଳେ ସାହିତ୍ୟ ଶିକ୍ଷକ ଆମକୁ କହୁଥିଲେ ଏ ପଦ୍ୟ ଛାଡ଼ିଦିଅ, ଏହାକୁ ତୁମେ ବୁଝିପାରିବ ନାହିଁ । ମାତ୍ର ଆମେ ତାହାକୁ ବୁଝି ମୁଖସ୍ଥ କରୁଥିଲୁ । ସେ ସ୍କୁଲରେ ମୁଁ ଅଢ଼େଇବର୍ଷ ପଢ଼ିଥିଲି ଏବଂ ସେହି ବର୍ଷମାନଙ୍କରେ ମୁଁ ସ୍କୁଲର ଶ୍ରେଷ୍ଠ ଛାତ୍ର ହୋଇଥିଲି । କଟକର ମୋହରିର କୃପାସିନ୍ଧୁ ମିଶ୍ର ସେ ସ୍କୁଲର ଶ୍ରେଷ୍ଠ ଛାତ୍ର ପାଇଁ ଗୋଟିଏ ଗିନି ଗୌପ୍ୟ ପଦକ ଖଞ୍ଜିଥିଲେ । ଷଷ୍ଠ ଓ ସପ୍ତମ ଉଭୟ ଶ୍ରେଣୀରେ ମୁଁ ସେ ପଦକ ପାଇଥିଲି ।

ସ୍କୁଲର ହେଡ୍‌ମାଷ୍ଟର ବଡ଼ ନାଟକପ୍ରିୟ ଥିଲେ । ସେ ନିଜେ ମଧ୍ୟ କେତେକ ନାଟକ ଲେଖିଥିଲେ । ସେ ସ୍କୁଲର ବାର୍ଷିକ ପୁରସ୍କାର ବିତରଣ ସମୟରେ ଏବଂ ଅନ୍ୟ ସମୟରେ ପିଲାମାନଙ୍କ ଦ୍ୱାରା ବିଭିନ୍ନ ନାଟକ ଅଭିନୟ କରାଉଥିଲେ । ଥରେ ସେ 'ଦ୍ରୌପଦୀ ବସ୍ତ୍ରହରଣ' ନାଟକ ପିଲାମାନଙ୍କ ଦ୍ୱାରା ଅଭିନୟ କରାଉଥିଲେ । ସେଥିରେ ମୋତେ ଯୁଧିଷ୍ଠିର ଭୂମିକା ଅଭିନୟ କରିବାକୁ ଦେଇଥିଲେ । ମୋର କେଉଁ ଗୁଣ ବା ଦୁର୍ଗୁଣ ଦେଖି ସେ ମୋତେ ଯୁଧିଷ୍ଠିର ଭୂମିକା ଦେଇଥିଲେ ମୁଁ ଜାଣି ନାହିଁ । ସ୍କୁଲରେ ନାଟକ ଅଭିନୟ ହେବାବେଳେ କୌଣସି ଷ୍ଟେଜ ବନ୍ଧାହୁଏ ନାହିଁ । ଗାଁ ଯାତ୍ରା ପ୍ରଣାଳୀରେ ସଭା ମଝିରେ ନାଟକ ଅଭିନୟ ହୁଏ । ନାଟକ ଦେଖିବାପାଇଁ ଗାଁର ବହୁଲୋକ ଜମା ହୋଇଯାଆନ୍ତି । ଏତେ ବେଶୀ ଲୋକଙ୍କ ମଧ୍ୟରେ ଅଭିନୟ କରିବାକୁ ମୋତେ ଲାଜ ଲାଗୁଥାଏ । ମୁଁ ପିଲାଦିନୁ ଜଣେ ଲାଜକୁଳା ଲୋକ ଥିଲି । ଯୁଧିଷ୍ଠିର ଭୂମିକାରେ ମୁଁ କଥୋପକଥନ କଲାବେଳେ ମୁଁ ମୋର ବାଁ ହାତଟା ବୋଧହୁଏ ସ୍ଥିର ରଖି ପାରି ନ ଥିଲି । ପରଦିନ ମୋର ସାଙ୍ଗପିଲାମାନେ ଅଭିନୟ କଲାବେଳେ ମୋର ବାଁ ହାତ କିପରି ହଲୁଥିଲା ଦେଖାଇ ମୋତେ ଥଟ୍ଟା କରୁଥିଲେ । ଆଉଥରେ ଇଂରାଜୀ ବହିରେ ଥିବା ଗୋଟିଏ ଗଳ୍ପ ଉପରେ ନାଟକ ଲେଖାହୋଇ ଅଭିନୟ ହେଉଥିଲା । ସେ ଗଳ୍ପରେ ଜଣେ ଜମିଦାରଙ୍କର ଝିଅର ବିବାହପାଇଁ ମାଛର ଅତି ଆବଶ୍ୟକ ଥିବାବେଳେ ଜଣେ କେଉଟ ବଡ଼ମାଛଟିଏ ସେଠାକୁ ବିକିବାକୁ ଆଣିଥିଲା । ମାତ୍ର ଜମିଦାରଙ୍କର ଘର ଜଗୁଆଳି ତାକୁ ଭିତରକୁ ଛାଡ଼ିଲା ନାହିଁ । ପରେ ମାଛ ବିକ୍ରିଲବ୍ଧ ପଇସାର ଅଧେ ଦେବାକୁ ପ୍ରତିଶ୍ରୁତି ଦେବାରୁ ଜଗୁଆଳି କେଉଟକୁ ଭିତରକୁ ଛାଡ଼ିଲା । ଜମିଦାର ଖୁସି ହୋଇ ତାକୁ ମାଛର ଦାମ୍ ପଚାରିବାରୁ ସେ କହିଲା, ମାଛର ଦାମ ମୋର ଖୋଲା ପିଠିରେ କୋଡ଼ିଏ ବେତ ମାଡ଼ । ଜମିଦାର ଏହା ଶୁଣି ଆଶ୍ଚର୍ଯ୍ୟ ହେଲେ । ତଥାପି ମାଛ କିଣିବାକୁ ରାଜି ହେଲେ । କେଉଟକୁ ଜମିଦାରଙ୍କର ଲୋକ ଲଘୁ ଭାବରେ ଦଶ ବେତ ଦେବା ପରେ, ସେ ତାର ଆଉଜଣେ ଭାଗୀଦାର ଥିବା କହି ଜମିଦାରଙ୍କ ଘର ଜଗୁଆଳିଙ୍କର ନାମ କହିଲା । ଜମିଦାର ସବୁକଥା

ବୁଝିଗଲେ । ତା'ପରେ ଢଗୁଆଳିକୁ ଡକାଇଆଣି ତାକୁ ତା ଭାଗ ଦଶବେତ ମାଡ଼ କଠୋର ଭାବେ ଦିଆଗଲା । ପରେ ଜମିଦାର କେଉଟକୁ ପୁରସ୍କାର ଦେଲେ । ଏହି କ୍ଷୁଦ୍ର ନାଟକରେ ହେଡ୍‌ମାଷ୍ଟର ମୋତେ ଜମିଦାର ଭୂମିକା ଅଭିନୟ କରିବାକୁ ଦେଇଥିଲେ । ମୋର କେଉଁ ଗୁଣ ଦେଖି ସେ ମୋତେ ନାଟକର ମୁଖ୍ୟ ନାୟକର ଭୂମିକା ଅଭିନୟ କରିବାକୁ ଦେଇଥିଲେ ତାହା ମଧ୍ୟ ମୋତେ ଜଣା ନାହିଁ ।

ମାତ୍ର ଏସବୁ ପଢ଼ାପଢ଼ି ଓ ଉତ୍ସବ ସତ୍ତ୍ୱେ ସ୍କୁଲ ପରିଚାଳନାରେ ବହୁ ବିଭ୍ରାଟ ଲୋକଲୋଚନକୁ ଆସିଥିଲା । ସ୍କୁଲ ପରିଚାଳନା ସମିତି ସଭ୍ୟମାନଙ୍କ ମଧ୍ୟରେ ବହୁ ବିବାଦ ଲାଗିଥିଲା । ସଭାପତି ଉଦି ମହାପାତ୍ର ଅତି ସରଳ ଓ ଉଦାର ହୃଦୟର ଲୋକ ଥିଲେ । ସ୍କୁଲ ଆରମ୍ଭ ହେବାବେଳେ ଯେଉଁ ଜଣେ ଦୁଇଜଣ ଶିକ୍ଷକ ଥିଲେ, ପରେ ପରିଚାଳନା ସମିତି ସେମାନଙ୍କୁ ବିଦାୟ ଦେଇ ବାହାରୁ ଆବଶ୍ୟକ ଯୋଗ୍ୟତା ଥିବା ତିନିଜଣ ଶିକ୍ଷକଙ୍କୁ ନିଯୁକ୍ତ କରିଥିଲେ । ସେଥିରେ ସ୍ଥାନୀୟ ଶିକ୍ଷକମାନେ କ୍ଷୁବ୍ଧ ହୋଇ ବହୁ ପ୍ରତିବନ୍ଧକ ସୃଷ୍ଟି କଲେ । ସେ କଳହରେ ଛପଣ କଟେରିର କେତେକ ଲୋକ ସ୍ଥାନୀୟ ଶିକ୍ଷକଙ୍କୁ ସାହାଯ୍ୟ କଲେ । ଥରେ ବର୍ଷାଦିନେ ଆମେ ସବୁ ପିଲା ଓ ଶିକ୍ଷକ ସ୍କୁଲଘରେ ଶୋଇଥିବା ବେଳେ, କେତେକ ଲୋକ ଆସି ସ୍କୁଲଘର ଦରଜା କବାଟ ସବୁ ଦଉଡ଼ିରେ ବାନ୍ଧି ଛଣ ଛପରର ଅନେକ ସ୍ଥାନରେ ନିଆଁ ଲଗାଇଦେଲେ । ସେ ସମୟଟା ବୋଧହୁଏ ଭାଦ୍ରବ ମାସ ସମୟ ଥିଲା । ସ୍କୁଲ ଘରଛାତ ଉପରକୁ ଶୁଖିଲା ଦିଶୁଥିଲେ ମଧ୍ୟ ଭିତରେ ଓଦା ଥିଲା । ଖରାଦିନ ହୋଇଥିଲେ ଅଳ୍ପ ସମୟ ମଧ୍ୟରେ ନିଆଁ ଜଳି ଆମ୍ଭେମାନେ ସମସ୍ତେ ମରିଯାଇଥାନ୍ତୁ । କିନ୍ତୁ ଚାଳ ଓଦା ଥିବାରୁ ଗୋଟିଏ ଦୁଇଟି ସ୍ଥାନରେ ନିଆଁ ଉପରକୁ ଉଠିଥିଲା ଏବଂ ଅନ୍ୟ ସ୍ଥାନମାନଙ୍କରେ କୁହୁଳୁଥିଲା । ଭାଗ୍ୟକୁ ପାଖରେ ଥିବା ଚାଳିଆ ଘର ଶ୍ରେଣୀ ବେଞ୍ଚ ଉପରେ କେତେକ ପିଲା ଶୋଇଥିଲେ । ସେମାନେ ନିଆଁ ଦେଖି ଡାକ ପକାଇଲେ ଏବଂ ରୋଷେଇଘରୁ ଗୋଟିଏ ପନିକି ଆଣି ଦରଜା ବନ୍ଧା ହୋଇଥିବା ଦଉଡ଼ି ସବୁ କାଟି ପକାଇଲେ, ଆମେ ସବୁ ଘରୁ ବାହାରିଲୁ । ସମସ୍ତେ ମିଶି ପାଣି ପକାଇ ନିଆଁ ଲିଭାଇଦେଲେ । ତାର ଦୁଇ ଦିନ ପରେ ଏରସମା ଥାନାରୁ ପୁଲିସ୍ ଆସିଲେ । ବହୁଦିନ ଧରି ଇନ୍‌କ୍ୱାରୀ ଚାଲିଲା । ଶେଷରେ ବହ୍ୱାରମ୍ଭ ଲଘୁକ୍ରିୟା ହେଲା । ନିଆଁ ଲଗାଇଥିବା ଲୋକ କେହି ଧରା ପଡ଼ିଲେ ନାହିଁ ।

ସେ ମକଦ୍ଦମା ବନ୍ଦ ହେବା ପରେ ମଧ୍ୟ କଳହ ବନ୍ଦ ହୋଇ ନ ଥିଲା । ସ୍କୁଲର ଜଣେ ଦୁଇଜଣ ଶିକ୍ଷକ ପରୋକ୍ଷରେ ହେଡ଼ମାଷ୍ଟରଙ୍କ ବିରୋଧରେ ସ୍ଥାନୀୟ ଲୋକମାନଙ୍କ ସହିତ ମିଶିଲେ । ଫଳରେ ଆମର ସପ୍ତମ ଶ୍ରେଣୀର ଅଧାବର୍ଷରେ ହେଡ୍‌ମାଷ୍ଟର ସ୍କୁଲରୁ ବିଦାୟ ନେଲେ । ଆମେ ମାଇନର ପରୀକ୍ଷା ଦେବା ପର୍ଯ୍ୟନ୍ତ ସ୍କୁଲକୁ ନୂଆ ହେଡ଼ମାଷ୍ଟର ଆସି ନ ଥିଲେ । ଏପରି ଘଟଣା ଏବଂ କଳିକଜିଆ ଆଜିକାଲିର ଅଧିକାଂଶ ବେସରକାରୀ ସ୍କୁଲରେ ଘଟୁଛି । ପରେ ବହିରୁ ପଢ଼ି ମୁଁ ଜାଣିଲି ଯେ ରକ୍ଷଣଶୀଳ ଲୋକମାନେ ବହୁକଷ୍ଟରେ ନିର୍ମିତ ସତ୍ୟବାଦୀ ବନ ବିଦ୍ୟାଳୟ ଘର ନିଆଁ ଲଗାଇ ପୋଡ଼ି ଦେଇଥିଲେ ।

ମାଇନର ସ୍କୁଲ ପଢ଼ାର ଶେଷ ବର୍ଷରେ ମୋର ପଢ଼ାରେ ଆଉ ଗୋଟିଏ ବ୍ୟାଘାତ ଘଟିଥିଲା । ସେ ବର୍ଷ ଫେବୃଆରୀ ମାସରେ ମୋର ବିବାହ ହୋଇଥିଲା । ମୋର ବୟସ ସେତେବେଳେ ମୋଟେ ଚଉଦ ବର୍ଷ ଥିଲା । ମାତ୍ର ମୁଁ ଘରଲୋକଙ୍କ ସିଦ୍ଧାନ୍ତ ଭାଙ୍ଗିପାରିଲି ନାହିଁ । ବିବାହ ଯୋଗୁଁ ମୁଁ କେତେକ ଦିନ ସ୍କୁଲରେ ଅନୁପସ୍ଥିତ ଥିଲି । ଶେଷରେ ୧୯୩୧ ମସିହା ଡିସେମ୍ବର ମାସରେ କଟକରେ ମାଇନର ପରୀକ୍ଷା ହେଲା । ମୁଁ ସେ ପରୀକ୍ଷାରେ ଭଲ କରିଥିଲି । ମାତ୍ର ବୃତ୍ତି ପାଇପାରିଲି ନାହିଁ । ସେତେବେଳେ ମାଇନର ପରୀକ୍ଷାରେ ମୋଟ ନମ୍ବରର ଶତକଡ଼ା ଷାଠିଏ ଭାଗ ରଖିଲେ ଅନର୍ସ ଏବଂ କୌଣସି ବିଷୟରେ ଶତକଡ଼ା ପଚସ୍ତରି ରଖିଲେ ଡିଷ୍ଟିଙ୍କ୍‌ସନ୍ ମିଳୁଥିଲା । କଟକ ଜିଲ୍ଲାରେ ଯେଉଁ ଛଅ ସାତ ଜଣ ବୃତ୍ତି ପାଇଥିଲେ ସମସ୍ତେ ମୋଟ ନମ୍ବରରେ ଅନର୍ସ ଏବଂ ଗଣିତରେ ଡିଷ୍ଟିଙ୍କ୍‌ସନ୍ ପାଇଥିଲେ । ମୁଁ ମଧ୍ୟ ତାହା ପାଇଥିଲି । ମାତ୍ର ପ୍ରତିଯୋଗିତାରେ ମୋତେ ବୃତ୍ତି ମିଳି ନ ଥିଲା । ଭଲ ସ୍କୁଲରେ ଏବଂ ଶାନ୍ତ ପରିବେଶ ମଧ୍ୟରେ ପଢ଼ିଥିଲେ କ'ଣ ହୋଇଥାନ୍ତା କହିହେବ ନାହିଁ । ମୋଟ ଉପରେ ମାଇନର ସ୍କୁଲରେ ମୁଁ କୌଣସି ଶିକ୍ଷକଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ନ ଥିଲି କିମ୍ବା ଛାତ୍ରମାନଙ୍କ ମଧ୍ୟରେ କୌଣସି ଦୀର୍ଘକାଳସ୍ଥାୟୀ ବନ୍ଧୁ ଅର୍ଜନ କରି ନ ଥିଲି ।

ପରୀକ୍ଷା ପରେ ମୁଁ ଆଉ ପଞ୍ଚପଲ୍ଲୀ ଗ୍ରାମକୁ ନ ଫେରି ବାଟରେ ପଡୁଥିବା ଆମ ଗାଁରେ ରହିଲି । ଗାଁରେ ଥାଇ ପରୀକ୍ଷା ଫଳ ଜାଣିଲି । ମୋର ଟ୍ରାନ୍ସଫର ସାର୍ଟିଫିକେଟ୍ ବୋଧହୁଏ ଜଗନ୍ନାଥଭାଇନା ଆମ ଘରକୁ ପଠାଇ ଦେଇଥିବେ । ସାତବର୍ଷ ପରେ ଶିବରାତ୍ରି ପର୍ବ ସମୟରେ ଆଉ ଥରେ ମୁଁ ସେ ଗାଁକୁ ଯାଇଥିଲି । ମାତ୍ର ସେତେବେଳେ ଗାଁର କିଛି ପରିବର୍ତ୍ତନ ଦେଖି ନ ଥିଲି । ପଞ୍ଚପଲ୍ଲୀ ମାଇନର ସ୍କୁଲଟି ସ୍ଥାଣୁ ଅବସ୍ଥାରେ ସେହିପରି ତିରିଶ ବର୍ଷରୁ ଅଧିକ ରହି ଯାଇଥିଲା । ୧୯୬୭ ମସିହାରୁ ସେଠାରେ ଗୋଟିଏ ପୂର୍ଣ୍ଣାଙ୍ଗ ହାଇସ୍କୁଲ କାର୍ଯ୍ୟ କରୁଛି । ତାର କୋଡ଼ିଏ ବର୍ଷ ଆଗରୁ ଆମ ଗାଁରେ ହାଇସ୍କୁଲ ହୋଇସାରିଥିଲା ଏବଂ ତାହାର ଦଶବର୍ଷ ଆଗରୁ ଆମ ଗାଁ ହାଇସ୍କୁଲ ପୂର୍ଣ୍ଣ ସରକାରୀ ପରିଚାଳିତ ସ୍କୁଲ ହୋଇଥିଲା । ୧୯୬୫ ମସିହା ପରେ ପଞ୍ଚପଲ୍ଲୀ ଗ୍ରାମର ରାସ୍ତାଘାଟ, ହାଟ, ଡାକଘର, ଡାକ୍ତରଖାନା ପ୍ରଭୃତି ସବୁ ସୁବିଧା ହୋଇଛି ମାତ୍ର ଅଣଲେଉଟା ରଥ ପରି ପ୍ରାୟ ଷାଠିଏ ବର୍ଷ ହେଲା ମୁଁ ସେ ଗାଁକୁ ଆଉ ଯାଇ ନାହିଁ ।

# କଟକ ସହର

କଟକ ହଜାର ବର୍ଷର ପୁରୁଣା ସହର । ଗଙ୍ଗବଂଶ ରାଜାଙ୍କ ଅମଳରୁ ହିନ୍ଦୁ, ମୁସଲମାନ, ମୋଗଲ, ମରହଟ୍ଟା ଏବଂ ବ୍ରିଟିଶ ଶାସକମାନଙ୍କ ସମୟରେ ଓଡ଼ିଶାର ରାଜଧାନୀ ହୋଇଥିଲା । ବହୁକାଳ କଟକ ସହର ଆମ ଜିଲ୍ଲାର ସଦର ମହକୁମା ଏବଂ ବାଣିଜ୍ୟ ବ୍ୟବସାୟର କେନ୍ଦ୍ର ହୋଇଥିଲା । ଚାରି ପାଞ୍ଚ ବର୍ଷ ବୟସ ସମୟରୁ ଆମେ ଆମ ଗାଁର ଲୋକ ନାନା କାର୍ଯ୍ୟରେ କଟକ ଯିବାଆସିବା କରିବା ଜାଣୁଥିଲୁ । ଅତି ପିଲା ଥିବାବେଳେ ଆମେ ପୁଅଝିଅ ମିଶି ବିଛୁ ଖେଳୁଥିଲୁ । ସେ ଖେଳରେ ମାପ ଅନୁସାରେ ଭୂଇଁରେ ଗାର ପକାଇ ବିଭିନ୍ନ ଘର ହୁଏ । ସେ ଘରଗୁଡ଼ିକର ନାମ ହୋଇଥାଏ ଭାତ, ଡାଲି, ତରକାରି, ବିଛୁ, ହଳଦିଆ, ଯାଜପୁର, କଟକ । ଖେଳୁଥିବା ପିଲା ମୂଳରେ ଠିଆ ହୋଇ ବିଭିନ୍ନ ଘରକୁ ଖପରା ଗୋଡ଼ି ପକାଇବ । ଗୋଡ଼ି ନିର୍ଦ୍ଦିଷ୍ଟ ଘରେ ନ ପଡ଼ିଲେ ସେ ହାରିଯାଏ ଏବଂ ତା ପାଳି ଯାଏ । ନିର୍ଦ୍ଦିଷ୍ଟ ଘରେ ଗୋଡ଼ି ପଡ଼ିଲେ ଗୋଟିଏ ଗୋଡ଼ ଟେକି ଅନ୍ୟ ଗୋଡ଼ରେ ସେ ଘରକୁ ଯାଇ ଗୋଡ଼ିକୁ ମୂଳକୁ ଆଣିବାକୁ ପଡ଼ିବ । ଗଲାବେଳେ କିମ୍ବା ଗୋଡ଼ିକୁ ଆଣିବାବେଳେ କୌଣସି ଘରର ଗାରରେ ଗୋଡ଼ ପଡ଼ିବ ନାହିଁ । ବିଛୁ ଘରକୁ ସବୁବେଳେ ଡେଇଁ କରି ଯିବାକୁ ହେବ । ସେଥିରେ ଗୋଡ଼ କିମ୍ବା ଗୋଡ଼ି କିଛି ପଡ଼ିବ ନାହିଁ । କଟକ ଯାଏ ସବୁ ଘରୁ ଗୋଡ଼ି ଆଣିପାରିଲେ ଖେଳାଳି ଗୋଟିଏ ବାଜି ଜିତେ । ଅଧାରୁ ଗାରରେ କିମ୍ବା ବିଛୁ ଘରେ ଗୋଡ଼ ପଡ଼ିଗଲେ କିମ୍ବା ଅଜାଣତରେ ଟେକିଥିବା ଗୋଡ଼ ତଳେ ଲାଗିଗଲେ, ସେ ପାଳିରେ ସେ ହାରିଯାଏ । ଛୋଟ ପିଲାଙ୍କ ପାଇଁ ଏହା ଗୋଟିଏ କଷ୍ଟକର ଖେଳ ଓ କସରତ । କହିବାର ଉଦ୍ଦେଶ୍ୟ ହେଉଛି, ପିଲାଙ୍କର ଏହି ଖେଳର ଶେଷ ଘର ଥିଲା କଟକ । ଭାତ, ଡାଲି, ତରକାରି, ବିଛୁ, ହଳଦିଆ ଓ ଯାଜପୁର ଅତିକ୍ରମ କରି କଟକ ଯିବାକୁ ହେବ ଏବଂ କଟକରୁ ଗୋଡ଼ି ଆଣିପାରିଲେ ଖେଳରେ ଗୋଟିଏ ବାଜି ଜିତିବ । କଟକ ଓ ଯାଜପୁର ନାମ ଆମ ସମସ୍ତଙ୍କୁ ଜଣାଥିଲା । ହଳଦିଆଟାକୁ ସେମାନେ କେଉଁ ସ୍ଥାନ ମନେ କରୁଥିଲେ ତାହା ମୁଁ ଆଜିଯାଏ ଜାଣି ନାହିଁ । ଯାଜପୁର ମଧ୍ୟ ଆମ ଗାଁଠାରୁ କଟକ ଯିବା ବାଟରେ ପଡ଼େ ନାହିଁ ।

ତାହାପରେ ଆମେ ଅତି ପିଲା ହୋଇଥିବାବେଳେ ଆମ ଘର ଆଗ ଗୁହାଳ ସାହାଲାରେ ତିନିଜଣ ଭାଗଦାର ମିଶି ଗୋଟିଏ ତେଜରାତି ଦୋକାନ କରିଥାନ୍ତି । ମଝିରେ ମଝିରେ ସେମାନଙ୍କ ମଧ୍ୟରୁ ଦୁଇ ଜଣ ବଳଦଗାଡ଼ି ନେଇ କଟକ ମାଲଗୋଦାମରୁ ସଉଦା ଆଣିବାକୁ ଯାଆନ୍ତି । ଗଲାବେଳେ ନଡ଼ିଆ, ଧାନ ଓ ଚାଉଳ ପ୍ରଭୃତି ଗାଡ଼ିରେ ନିଅନ୍ତି । ସେଗୁଡ଼ିକ ସାଧାରଣତଃ ସେମାନେ ନୂଆବଜାରରେ ବେପାରୀଙ୍କୁ ବିକନ୍ତି । ତା'ପରେ

ମାଲଗୋଦାମରୁ ଗୁଡ଼, କିରାସିନି, ଚିନି, ଗୁଆ, ହଳଦୀ ପ୍ରଭୃତି ମସଲାମସଲି ସଉଦା କିଣି ଗାଁକୁ ଫେରନ୍ତି । କଟକ ଯିବାକୁ ତାଙ୍କୁ ଦୁଇଦିନ ଲାଗିଯାଏ । ପ୍ରଥମ ରାତିରେ ସେମାନେ ବିରିଡ଼ି କିମ୍ୱା ବରଡ଼ାରେ ରହନ୍ତି । ରାସ୍ତା କଡ଼ରେ ରୋଷେଇ କରି ଖାଇ ଏବଂ ବଳଦଙ୍କୁ ଖାଇବାକୁ ଦେଇ ଗାଁପାଖ ରାସ୍ତାକଡ଼ରେ ଶୁଅନ୍ତି । ଦ୍ୱିତୀୟ ଦିନ ନୂଆବଜାରରେ ପହଞ୍ଚନ୍ତି । ସେଠାରେ ଦିନେ ରହି ନେଇଥିବା ମାଲ ବିକ୍ରି କରନ୍ତି ଏବଂ ପରଦିନ ମାଲଗୋଦାମରୁ ସଉଦା କିଣନ୍ତି । ଚତୁର୍ଥଦିନ କଟକରୁ ବାହାରି ସେହିପରି ବାଟରେ ରାତିରେ ରହି ପଞ୍ଚମ ଦିନ ବେଳବୁଡ଼ କୁ ଗାଁରେ ପହଞ୍ଚନ୍ତି । ଯିବାଆସିବା କରିବା ସମୟରେ ଦୁଇତିନି ଦୋକାନୀ ଦୁଇତିନି ଶଗଡ଼ ନେଇ ଏକା ସଙ୍ଗରେ ଯାଆନ୍ତି । ସେ ସମୟ ବ୍ରିଟିଶ ସରକାରଙ୍କ ଅମଳ ଥିଲା । ସେ ରାସ୍ତାରେ ଚାଲି କରି ଯାଉଥିବା ଲୋକ କିମ୍ୱା ବଳଦଗାଡ଼ିମାନଙ୍କରୁ ଚୋରିହେବା ଆମେ ଶୁଣି ନ ଥିଲୁ ।

ଗାଁଠାରୁ କଟକ ଯାଉଥିବା ଶଗଡ଼ିଆଙ୍କର କାହାରି କାମିଜ କିମ୍ୱା ପଞ୍ଜାବି ନ ଥାଏ । ସମସ୍ତେ ଧୋତି, ଚଦର ଓ ଗାମୁଛା ନିଅନ୍ତି । ଜଣ ଜଣଙ୍କର ଗେଞ୍ଜି ଖଣ୍ଡେ ଲେଖାଏଁ ଥାଏ । ଗାଁରୁ ଗଲାବେଳେ ସେମାନଙ୍କର ଲୁଗାପଟା ସବୁ ମାଟିଆ ଦେଖାଯାଉଥାଏ, କାରଣ ଗାଁ ଧୋବା କଦଳୀ ଗଛ ଖାରରେ ଲୁଗା ସଫା କରୁଥିଲେ । ଲୁଗାରେ ନେଳି ଦେବା ଜାଣି ନ ଥିଲେ । ଗାଁର ସବୁଲୋକଙ୍କର ଲୁଗାପଟା ମାଟିଆ ଦେଖାଯାଉଥିଲା । କିନ୍ତୁ କଟକରୁ ଫେରିଲା ବେଳକୁ ଶଗଡ଼ିଆଙ୍କର ଲୁଗା, ଚଦର, ଗାମୁଛା ଏବଂ ଦେହମୁଣ୍ଡ ସବୁ ନାଲିଆ ହୋଇଯାଇଥାଏ । ବଳଦଙ୍କ ଦେହ, ଶଗଡ଼ଚକ ଏବଂ ଶଗଡ଼ରେ ଲଦା ହୋଇଥିବା ସବୁ ବସ୍ତା ଓ ଟିଣ ରାସ୍ତାର ନାଲିଧୂଳି ଲାଗି ନାଲି ଦେଖାଯାଉଥାଏ । କଟକ ସହରର ଏବଂ ଜଗତ୍‌ସିଂହପୁରଠାରୁ କଟକ ପର୍ଯ୍ୟନ୍ତ ରାସ୍ତା ସବୁ ନାଲି ଗୋଡ଼ିରେ ତିଆରି ହେଉଥିଲା । ସେଥିରେ ସବୁବେଳେ ନାଲିଧୂଳି ଭର୍ତ୍ତି ହୋଇଥାଏ । ଆମ ଗାଁ ମାଟି ମାଟିଆ ଏବଂ କଟକ ମାଟି ନାଲିଆ ବୋଲି ପିଲାଦିନୁ ଆମର ଧାରଣା ଥିଲା । ତଥାପି ଆମେ ମଧୁବାବୁଙ୍କ ବର୍ଣ୍ଣବୋଧ ବହିରୁ ପ୍ରଥମରୁ ପଢୁଥିଲୁ, 'କଟକ ନଗର, ଧବଳ ଟଗର' ଏ ଦୁଇଟି ଧାଡ଼ିର ପରସ୍ପର ଭିତରେ ସମ୍ବନ୍ଧ ଥିଲା କି ନାହିଁ ଏବଂ ନାଲି ଧୂଳିପୂର୍ଣ୍ଣ କଟକ ନଗରରେ ଧବଳ ଟଗର ଥିଲା କି ନାହିଁ, ତାହା ବିଚାର କରିବାକୁ ସେତେବେଳେ ଆମର ଶକ୍ତି ନ ଥିଲା । ତେବେ କଟକ ନଗରରେ ବହୁ ପରିମାଣରେ ଧବଳ ଟଗର ଦେଖାଯାଇପାରୁଥିବ । ସହରର ଲୋକମାନଙ୍କ ବାଡ଼ିରେ ବହୁତ ଟଗର ଗଛଥାଏ ଏବଂ ବର୍ଷାଦିନେ ବର୍ଷାପାଣିରେ ଧୋଇହୋଇ ଟଗର ଗଛର ଫୁଲଗୁଡ଼ିକ ସଫା ଧଳା ଦେଖାଯାଉଥିବ ।

ମୁଁ କଟକ ସହର ପ୍ରଥମେ ଦେଖିଲି ୧୯୩୦ ମସିହା ଡିସେମ୍ବର ମାସରେ । ସେତେବେଳେ ପଞ୍ଚପଲ୍ଲୀ ସ୍କୁଲର ଆମ ପୂର୍ବ ବ୍ୟାଚ ପିଲା କଟକରେ ମାଇନର ପରୀକ୍ଷା ଦେବାକୁ ଆସିଥିଲେ । ମୁଁ ତାଙ୍କ ସଙ୍ଗରେ କଟକ ଦେଖିବାକୁ ଆସିଥିଲି । ସେତେବେଳେ ଆମ ଗାଁରୁ କଟକ ଆସିବା ପାଇଁ ଜଗତ୍‌ସିଂହପୁରରୁ ବସ୍ ଧରିବାକୁ ହେଉଥିଲା । କାରଣ

ତା'ପରଠାରୁ ମାଛଗାଁ ରାସ୍ତା କଚା ଥିଲା ଏବଂ ସେଥିରେ ବସ୍ ଚାଲୁ ନ ଥିଲା । ପଞ୍ଚପଲ୍ଲୀରୁ କଟକ ଆସିବା ପାଇଁ ଜଗତ୍‌ସିଂହପୁରରୁ କିମ୍ୱା ତାରପୁରରୁ ବସ୍ ଧରିବାକୁ ହେଉଥିଲା । ସେ ଦୁଇ ଲାଇନ୍‌ରେ କଟକ ମଟର ଆସୋସିଏସନ୍‌ର ବସ୍‌ମାନ ଚାଲୁଥିଲା । ବସ୍‌ମାନଙ୍କର ଦେହ କାଠ, ଲୁହା ଓ ଟିଣରେ ସେହି କଟକ ସହରରେ ତିଆରି ହେଉଥିଲା । ଆଗ ସିଟ୍‌ମାନଙ୍କ ମଧ୍ୟରେ ଡ୍ରାଇଭର ବସିବା ପାଖରେ ଦୁଇଟି ସିଟ୍ ଥାଏ । ତା ପଛକୁ ମହିଳାମାନଙ୍କ ପାଇଁ ପାଞ୍ଚଟି ସିଟ୍ ଥାଏ । ପଛରେ ବସ୍ ଦୁଇ କଡ଼ରେ ବେଞ୍ଚ ଦୁଇଟାରେ ଯାତ୍ରୀମାନେ ବସିବାର ବ୍ୟବସ୍ଥା ହୋଇଥାଏ । ଗାଡ଼ିରେ ସବୁବେଳେ ଭିଡ଼ ହେଉଥିବାରୁ ଯାତ୍ରୀମାନେ ଦୁଇ ବେଞ୍ଚ ମଝିରେ ତଳେ ବସି ଯିବାଆସିବା କରନ୍ତି । ଯାତ୍ରୀମାନେ ଠିଆ ହୋଇ ଯିବାଆସିବା କରି ପାରୁ ନ ଥିଲେ, କାରଣ ବସ୍‌ର ଉଚ୍ଚତା କମ୍ ଥିବାରୁ ଠିଆ ହେଲେ ମୁଣ୍ଡ ବାଜୁଥିଲା । ବସ୍ ମାଲିକମାନେ ମିଶି ଆସୋସିଏସନ୍ ଗଢ଼ିଥାନ୍ତି । ପ୍ରତି ମାଲିକ ଗୋଟିଏ କିମ୍ୱା ତା'ଠାରୁ ଅଧିକ ବସ୍ ଆସୋସିଏସନ୍‌କୁ ଦେଇଥାନ୍ତି । ଆସୋସିଏସନ୍‌ର ପରିଚାଳକମାନେ ସେ ସବୁ ବସ୍‌ମାନଙ୍କରେ ଯାତାୟାତ କରିବାର ବ୍ୟବସ୍ଥା କରନ୍ତି । ଏହି ପ୍ରକାରର ବସ୍‌ମାନ ପ୍ରାୟ ୧୯୬୦ ମସିହା ପର୍ଯ୍ୟନ୍ତ ଓଡ଼ିଶାର ସବୁ ରାସ୍ତାରେ ଚାଲୁଥିଲା ।

ଆମ ସ୍କୁଲର ପରୀକ୍ଷାର୍ଥୀ ପିଲାମାନେ କଟକ ଆସି ତେଲେଙ୍ଗା ବଜାରର ସୋମଶେଖର ମନ୍ଦିର ପାଖରେ ଜଣେ ବୁଢ଼ୀଠାରୁ ଭଡ଼ା ନିଆଯାଇଥିବା ଗୋଟିଏ ଚାଳଘରର ଦୁଇଟି ବଖରାରେ ରହିଲେ । ଆଗରୁ ସ୍କୁଲର ଜଣେ ଶିକ୍ଷକ ଆସି ସେ ଘର ପରୀକ୍ଷା ସମୟ ପାଇଁ ଭଡ଼ା ନେଇ ସେଥିରେ ପିଲାମାନଙ୍କର ରହିବାର ବ୍ୟବସ୍ଥା କରିଥିଲେ । ତେଲେଙ୍ଗାବଜାରରେ ସେ ଘର ଭଡ଼ା ନେବାର କାରଣ ଥିଲା, ସେ ସ୍ଥାନ ମାଇନର ପରୀକ୍ଷା କେନ୍ଦ୍ର, କଟକ ଟ୍ରେନିଂ ସ୍କୁଲର ପାଖ ଥିଲା । ଛପର ଘରର ନିଚା ଚାଳ, ସନ୍ତସନ୍ତିଆ ଚଟାଣ ଓ ବାଡ଼ିରେ ତାଟିଘେରା ହୋଇଥିବା ଇଟା ପଡ଼ିଥିବା କଚା ପାଇଖାନା ଦେଖି କଟକରେ ରହିବା ବିଷୟରେ ପ୍ରଥମରୁ ମୋର ଗୋଟିଏ ଖରାପ ଧାରଣା ହୋଇଥିଲା । ତେବେ ଶସ୍ତାରେ ପରୀକ୍ଷାକେନ୍ଦ୍ର ପାଖରେ ଚାରି ପାଞ୍ଚ ଦିନ ରହିବା ପାଇଁ ଶିକ୍ଷକ ସେ ବ୍ୟବସ୍ଥା କରିଥିଲେ । ପରୀକ୍ଷାର୍ଥୀ ପିଲାମାନେ ମସିଣା ପକାଇ ଶୋଇଲେ ଏବଂ ରାତିରେ ତିନି ଚାରି ଜଣ ଲେଖାଏଁ ଗୋଟିଏ ଗୋଟିଏ ଲଣ୍ଠନର ଚାରିପାଖରେ ବସି ପଢ଼ିଲେ । ସେପରି ଶୋଇବା ଏବଂ ପଢ଼ିବାରେ ପିଲାମାନେ ସ୍କୁଲରେ ମଧ୍ୟ ଅଭ୍ୟସ୍ତ ଥିଲେ । କେବଳ ସ୍ଥାନ ସଂକୀର୍ଣ୍ଣତା ବ୍ୟତୀତ ପିଲାମାନଙ୍କର ସେଥିରେ ବିଶେଷ କିଛି ଅସୁବିଧା ହୋଇ ନ ଥିଲା । ପିଲାମାନଙ୍କର ସବୁଠାରୁ ବେଶି ଅସୁବିଧା ହୋଇଥିଲା କଚା ପାଇଖାନାରେ ଇଟା ଉପରେ ବସି ମଳମୂତ୍ର ତ୍ୟାଗ କରିବା । ଅନେକ ପିଲା ଥିବାରୁ ସେ ପାଇଖାନା ଅତି ଅପରିଷ୍କାର ହେଉଥିଲା । ମୋର କିଛି ପଢ଼ାପଢ଼ି କରିବାର ନ ଥିଲା କାରଣ ମୁଁ କେବଳ କଟକ ଦେଖିବାକୁ ଆସିଥିଲି । ସେ ସବୁ ପରିବେଶ ଦେଖି କଟକରେ ରହିବା ବିଷୟରେ ମୋର ଖରାପ ଧାରଣା ହେବା ସ୍ୱାଭାବିକ ।

ସେଥର ମଧ ମୁଁ କଟକ ସହରର ବଜାର, ଘରଦ୍ୱାର, କିଲ୍ଲାପଡ଼ିଆ, କଟକଚଣ୍ଡୀ, କାଳୀମନ୍ଦିର ଓ କଚେରି ପ୍ରଭୃତି କିଛି ଦେଖି ପାରି ନ ଥିଲି । ପରୀକ୍ଷାର୍ଥୀ ପିଲାମାନେ ସକାଳେ ଓ ରାତିରେ ପଢ଼ିଲେ ଏବଂ ଦିନରେ ପରୀକ୍ଷାରେ ବ୍ୟସ୍ତ ରହିଲେ । ଶିକ୍ଷକ ତାଙ୍କର ଏସବୁ କାର୍ଯ୍ୟପାଇଁ ବ୍ୟବସ୍ଥା କଲେ । ପରୀକ୍ଷା ଶେଷ ହେବା ବାସିଦିନ ସମସ୍ତେ ସ୍କୁଲକୁ ଫେରିଗଲୁ । ଆମେ ରହିଥିବା ଘରଟା କାଠଯୋଡ଼ି ନଦୀକୂଳେ ସନ୍‌ସାଇନ୍ ଫିଲ୍ଡ ପାଖରେ ଥିଲା । ମୁଁ କେବଳ କାଠଯୋଡ଼ି ନଦୀ, ପଥର ବନ୍ଧ, ସନ୍‌ସାଇନ୍ ଫିଲ୍ଡ, କଟକ ଟ୍ରେନିଂ ସ୍କୁଲ ଏବଂ ତେଲେଙ୍ଗା ବଜାରର ଗଳି ରାସ୍ତା ଦୁଇ ତିନିଟା ଦେଖିଥିଲି । ସେ ରାସ୍ତା ସବୁ ଅଣଓସାରିଆ ନାଳି ରାସ୍ତା ଥିଲା । ରାସ୍ତାରେ ରାତିରେ ଖୁଣ୍ଟମାନଙ୍କରେ ମ୍ୟୁନିସିପାଲିଟିର ମିଞ୍ଜି ମିଞ୍ଜି ଲଣ୍ଠନ ଆଲୁଅ ଦିଆ ଯାଉଥିଲା । କଟକରେ ସେତେବେଳେ ଇଲେକ୍ଟ୍ରିକ୍ ଆଲୁଅ ନ ଥିଲା । ପାଣି ପାଇଁ ଘରମାନଙ୍କରେ ବା ଘର ପାଖରେ କୂଅ ସବୁ ଥିଲା । ତାର ପରବର୍ଷ ଆମ ବ୍ୟାଚ୍ ପିଲା ସେହି ଟ୍ରେନିଂ ସ୍କୁଲରେ ପରୀକ୍ଷା ଦେବାକୁ ଆସିଲୁ ଏବଂ ସେହିପରି ତେଲେଙ୍ଗା ବଜାରରେ ରହିଥିଲୁ । ପରୀକ୍ଷା ଶେଷ ହେବା ସଙ୍ଗେ ସଙ୍ଗେ ଗାଁକୁ ଫେରି ଯାଇଥିଲୁ ।

ପରୀକ୍ଷାପରେ ମୁଁ ପଞ୍ଚପଲ୍ଲୀ ନ ଫେରି ଆମ ଗାଁରେ ରହିଲି । ଅଳ୍ପ ଦିନ ପରେ ପରୀକ୍ଷା ଫଳ ବାହାରିବା ପରେ ଜାଣିଲି ଯେ ମୁଁ ବୃତ୍ତି ପାଇ ନାହିଁ । ତେଣୁ ସେହିଠାରେ ମୋର ପଢ଼ା ଶେଷ ହେଲା ବୋଲି ଆମ ଘରେ ସମସ୍ତେ ଅନୁମାନ କଲେ । ସେତେବେଳେ କଟକ ସବ୍‌ଡିଭିଜନରେ ଛଅଗୋଟି ହାଇସ୍କୁଲ ମଧ୍ୟରୁ ପାଞ୍ଚଗୋଟି କଟକ ସହରରେ ଏବଂ ଆଉ ଗୋଟିଏ କୁଜଙ୍ଗରେ ଥାଏ । କଟକରେ ଥିବା ହାଇସ୍କୁଲମାନଙ୍କ ମଧ୍ୟରୁ ରେଭେନ୍ସା କଲେଜିଏଟ୍ ସ୍କୁଲ ସରକାରୀ ସ୍କୁଲ ଥିଲା । ପ୍ୟାରୀମୋହନ ଏକାଡେମୀ ଏବଂ ଭିକ୍ଟୋରିଆ ସ୍କୁଲ ଘରୋଇ ସ୍କୁଲ, ମୁସ୍‌ଲିମ୍ ସେମିନାରୀ ଓ ମିସନ ସ୍କୁଲ ଯଥାକ୍ରମେ ମୁସଲମାନ ଏବଂ ଖ୍ରୀଷ୍ଟିଆନ ସମ୍ପ୍ରଦାୟର ଲୋକମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ସବୁ ସ୍କୁଲରେ ସବୁ ସଂପ୍ରଦାୟର ପିଲାମାନେ ପଢ଼ିପାରୁଥିଲେ । ସ୍କୁଲମାନଙ୍କ ମଧ୍ୟରେ ସରକାରୀ ରେଭେନ୍ସା କଲେଜିଏଟ୍ ସ୍କୁଲ ସର୍ବପ୍ରଧାନ ଓ ସର୍ବୋତ୍କୃଷ୍ଟ ସ୍କୁଲ ଥିଲା । ସେଥିରେ ଆବଶ୍ୟକ ଉଚ୍ଚଶିକ୍ଷିତ ଓ ତାଲିମପ୍ରାପ୍ତ ଶିକ୍ଷକ ଥିଲେ ଏବଂ ପଢ଼ାପଢ଼ି ଭଲ ହେଉଥିଲା । ସେ ସ୍କୁଲ ଓଡ଼ିଶାର ସବୁ ଜିଲ୍ଲା ସ୍କୁଲମାନଙ୍କ ମଧ୍ୟରେ ସର୍ବପ୍ରଧାନ ଥିଲା ଏବଂ ବିହାର ଓଡ଼ିଶାର ସର୍ବପ୍ରଧାନ ପାଟନା ହାଇସ୍କୁଲର ସମକକ୍ଷ ଥିଲା । ଆମେ ମାଇନର ପଢୁଥିବା ବେଳେ ସେ ସ୍କୁଲର ଉଚ୍ଚପ୍ରଶଂସା ଶୁଣିଥିଲୁ ଏବଂ ମୁଁ ମନେ ମନେ ଆଶା ରଖିଥିଲି ଯେ ମାଇନର ସ୍କୁଲର ପଢ଼ା ଶେଷ ପରେ ମୁଁ ସେ ସ୍କୁଲରେ ପଢ଼ିବି । ମାତ୍ର ମାଇନର ପରୀକ୍ଷାରେ ବୃତ୍ତି ନ ପାଇବାରୁ ସେ ଆଶା ମୋର ଚୂର୍ଣ୍ଣ ହୋଇଗଲା । ସେ ସମୟରେ ସବୁ ଜିନିଷ ଅତି ଶସ୍ତା ଥାଏ । ତଥାପି କଟକ ସହରରେ ରହି ଯେ କୌଣସି ସ୍କୁଲରେ ପଢ଼ିବାକୁ ଜଣେ ପିଲାକୁ ସର୍ବନିମ୍ନ ମାସକୁ ଆଠ ଟଙ୍କା ଖର୍ଚ୍ଚ କରିବାକୁ ପଡୁଥିଲା । ସ୍କୁଲ ହଷ୍ଟେଲମାନଙ୍କରେ ରହିଲେ ସର୍ବନିମ୍ନ ମାସକୁ ଦଶ ଟଙ୍କା ପଡୁଥିଲା । ଧାନ ଭରଣକ

(ପାଞ୍ଚସେରିଆ ଅଶୀଗୌଣିରେ ଗୋଟିଏ ଭରଣ) ମୋଟେ ଆଠ ଟଙ୍କା ଥିଲା । ଆମ ପରିବାର ମୋ ପିଛା କେବେହେଲେ ମାସକୁ ଭରଣେ ଧାନ ଖର୍ଚ୍ଚ କରି ପାରି ନ ଥାନ୍ତା । ସୁତରାଂ ମୋତେ ଚାରିବର୍ଷ କଟକରେ ହାଇସ୍କୁଲରେ ପଢ଼ାଇବା ପ୍ରଶ୍ନ ଉଠୁ ନ ଥିଲା । ତଥାପି ହାଇସ୍କୁଲରେ ପଢ଼ିବାକୁ ମୋର ବଳବତୀ ଇଚ୍ଛା ହେତୁ ଉଚ୍ଚଶିକ୍ଷା ପାଇବା ଆଶା ସଂପୂର୍ଣ୍ଣ ରୂପେ ନିର୍ବାପିତ ହୋଇ ନ ଥିଲା । ବୋଉର ମହାଜନୀ ଟଙ୍କା ବଡ଼ଭାଇନାଙ୍କ ପଢ଼ା ଓ ରୋଗ ଚିକିତ୍ସାରେ ଏବଂ ମୋର ମାଇନର ପଢ଼ା ଖର୍ଚ୍ଚରେ ଶେଷ ହୋଇ ଯାଇଥିଲା । ମୋତେ କଟକ ପଠାଇବାକୁ ତାର ସାହସ ନ ଥିଲା । ମୁଁ ସେହି ସମୟରେ ଶୁଣିଲି ଯେ ଆମ ମାଇନର ସ୍କୁଲର ପୂର୍ବତନ ହେଡ୍‌ମାଷ୍ଟର କଟକରେ ରାମଚନ୍ଦ୍ର ଦାଶ ଓକିଲ (ଜଷ୍ଟିସ୍ ନବକୁମାର ଦାଶଙ୍କ ବାପା)ଙ୍କର ଜଣେ ମୋହରିର କୃପାସିନ୍ଧୁ ମିଶ୍ରଙ୍କ ବସାରେ ରହି ପି.ଏଲ୍. ପରୀକ୍ଷା ଦେବାକୁ ପଢୁଛନ୍ତି । ସେ ମୋତେ ପୁଅ ପରି ସ୍ନେହ କରୁଥିଲେ । ମୁଁ ତାଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଲି । ସେ କୃପାସିନ୍ଧୁବାବୁଙ୍କୁ ପଚାରି ମୋତେ ଲେଖିଲେ ଯେ ମୁଁ କୃପାସିନ୍ଧୁବାବୁଙ୍କ ବସାରେ ରିହାତି ମେସ୍ ଖର୍ଚ୍ଚରେ ରହି ପଢ଼ିପାରିବି । ତାଙ୍କଠାରୁ ସାହସ ପାଇ ମୁଁ କଟକ ଯିବାକୁ ଆମ ଘରେ କହିଲି । ଘରେ ସମସ୍ତେ ଅମଙ୍ଗ ହେଉଥିଲେ । ମୋ ନନା ଘରର ଖର୍ଚ୍ଚ ବିଷୟରେ କିଛି କହନ୍ତି ନାହିଁ । ତଥାପି ସେ କହିଲେ, ''ପିଲାଟା ବର୍ତ୍ତମାନ ଘରେ ରହି କଅଣ କରିବ ? କଟକ ଯାଇ ଅନ୍ତତଃପକ୍ଷେ ଦୁଇ ତିନି କ୍ଲାସ ପଢ଼ିଗଲେ ତାର ଜ୍ଞାନ ହୋଇଯିବ ।'' ଦଦେଇ କହିଲେ କିଛି ନ କରିପାରିଲେ ତ ମୋହରିରମାନଙ୍କ ପାଖରେ ରହିଲେ ଓକିଲ ମୋହରିର ହୋଇପାରିବ । ଦଦେଇ ମୋହରିରମାନଙ୍କ କାମ ଓ ରୋଜଗାର ବିଷୟ ଜାଣିଥିଲେ । ନନାଙ୍କୁ ସେ କଥା ଜଣା ନ ଥିଲା । ବୋଉ ମଧ୍ୟ ମୋତେ କଟକ ପଠାଇବାକୁ ରାଜି ହେଲା । ମୁଁ ଯେ କଟକରେ ରହି ମାଟ୍ରିକୁଲେସନ ପରୀକ୍ଷାଯାଏ ପଢ଼ିବି ଏକଥା କାହାରି ଭରସା ନ ଥିଲା । ସମସ୍ତଙ୍କର ଧାରଣା ଥିଲା ଯେଉଁଯାଏ ପଢ଼ିପାରିବ ସେହିଯାଏ ପଢୁ । ଅଧାରୁ ଫେରିଆସିଲେ କିଛି କ୍ଷତି ନାହିଁ ।

ଏହି ନିଷ୍ପତ୍ତି ଅନୁସାରେ ୧୯୩୨ ମସିହା ଜାନୁୟାରୀ ମାସ ପନ୍ଦରଠାରୁ କୋଡ଼ିଏ ତାରିଖ ମଧ୍ୟରେ ଦଦେଇଙ୍କ ସହିତ ମୁଁ କଟକ କୃପାସିନ୍ଧୁବାବୁଙ୍କ ବସାକୁ ଗଲି । ମୁଁ ସେଠାରେ ସ୍କୁଲରେ ନାମ ଲେଖାଇବାକୁ ରହିଲି । ଦଦେଇ ଗାଁକୁ ଫେରିଆସିଲେ । ସେ ସମୟରେ ଦଦେଇ ଓଗେର ମକଦ୍ଦମା ପ୍ରଭୃତି କାର୍ଯ୍ୟରେ କଟକ ଆସିଲେ ସାଧାରଣତଃ କୁକୁରିଆପଦାରେ ଚୁନିମିଆଁ ବସାରେ ରହୁଥିଲେ । ଚୁନିମିଆଁ କୁକୁରିଆପଦାରେ ରାସ୍ତାକଡ଼ରେ ଧାଡ଼ିଏ ମାଟିଘର କରିଥାଏ । ସେ ଘରଗୁଡ଼ାକରେ ରାତିଏ ରହିଲେ ଜଣ ପିଛା ପଇସାଏ ବା ଦୁଇ ପଇସା ପଡ଼େ । ଗାଁ ଲୋକମାନେ କଚେରି ପ୍ରଭୃତିରେ ବିଭିନ୍ନ କାମରେ କଟକ ଆସିଲେ ସେ ଘରଗୁଡ଼ାକରୁ ବଖରାଏ ଭଡ଼ା ନେଇ ରହନ୍ତି । ମୁଁ ସ୍କୁଲରେ ପଢୁଥିବାବେଳେ ଦଦେଇଙ୍କ ସଙ୍ଗରେ ଥରେ ଦୁଇଥର ସେହି ଘରର ଗୋଟିଏ ବଖରାରେ ରହିଥିଲି । ସେ ଘରମାନଙ୍କରେ ଝରକା ନ ଥିଲା, ମାତ୍ର ଘର ଭିତର ଅପରିଷ୍କାର ନ

ଥିଲା । ଘର ଭିତର ଭଲଭାବେ ଲିପାପୋଛା ହୋଇ ରହିଥାଏ । ସେ ଘରମାନଙ୍କରେ ରୋଷେଇ କରିବା ସୁବିଧା ଥାଏ । ରୋଷେଇ ପାଇଁ ଜିନିଷ ସବୁ ପାଖରେ ଥିବା ବଜାରରେ ମିଳେ । ତଳେ ମସିଣା ପକାଇ ଶୋଇବା କିମ୍ବା ବସିବାରେ ଅସୁବିଧା ନ ଥାଏ । ମାତ୍ର ଘରମାନଙ୍କରେ ପାଇଖାନା ନ ଥାଏ । ସେ ଘର ପଛପଟେ ଗୋଟିଏ ପୋଖରୀ ଥାଏ । ସେହି ପୋଖରୀହୁଡ଼ାକୁ ଲୋକମାନେ ମଳତ୍ୟାଗ କରିବାକୁ ଯାଆନ୍ତି ।

କୃପାସିନ୍ଧୁବାବୁଙ୍କ ବସା ଗଙ୍ଗାମନ୍ଦିର ଗଳିରେ ବୁଲାସାହୁ ଘରେ ଥିଲା । ଗଙ୍ଗାମନ୍ଦିର ଛକରେ ଥିବା ରାମଚନ୍ଦ୍ର ଦାଶ ଓକିଲଙ୍କ ଘରଠାରୁ ତାହା ଅତି ପାଖ ଥିଲା । ରାମବାବୁ ସେତେବେଳେ ସେଠାରେ ଭଡ଼ାଘରେ ରହୁଥିଲେ । ପରେ ସେ ତେଲେଙ୍ଗା ବଜାରରେ ନିଜ ଘର କରିଥିଲେ । ବୁଲା ସାହୁ ଘରର ଚଟାଣ ପକ୍କା, କାନ୍ଥ ଇଟା ଏବଂ ଟାଳଛପର ଥିଲା । ଘରର ଦାଣ୍ଡ ବାରନ୍ଦା ଉଚ୍ଚା ଥିଲା । ଘରେ ଦୁଇ ସାହାଲା ଘର ଥାଏ । ଦାଣ୍ଡ ସାହାଲାରେ ଗୋଟିଏ ରହିବା ବଖରା ଏବଂ ଗୋଟିଏ ବାଟଘର ଏବଂ ତଳ ସାହାଲାରେ ସେହିପରି ଗୋଟିଏ ରହିବା ଘର ଏବଂ ଗୋଟିଏ ବାଟଘର ଥିଲା । ମଝିରେ ଗୋଟିଏ ଛୋଟ ଅଗଣା ଥିଲା ଏବଂ ଅଗଣାର ଗୋଟିଏ କଡ଼ରେ ଗୋଟିଏ ଛୋଟ ରୋଷେଇ ଘର ଥାଏ । ଅଗଣା ଓ ଘର ଭିତର ସବୁ ପକ୍କା ଥିଲା ଏବଂ କାନ୍ଥରେ ଚୂନ ଲିପା ହୋଇଥିଲା । ଘର ପଛରେ ମଧ୍ୟ ଗୋଟିଏ ଖାଲି ଜାଗା ଥାଏ । ସେଥିରେ ପକ୍କା ଚଟାଣ ଥିବା ଉପରେ ଛାତ ନ ଥିବା ଗୋଟିଏ ପାଇଖାନା ଥାଏ । ବାଡ଼ି ପଛକୁ ଗୋଟାଏ ବଡ଼ ପୋଖରୀ ଥିଲା ।

ମୋଟ ଉପରେ ଘରଟି ଅପରିଷ୍କାର ନ ଥିଲା ଏବଂ ସେଥିରେ ଚଳିବାର ଅସୁବିଧା ନ ଥିଲା । ସେଥିରେ କୃପାସିନ୍ଧୁବାବୁଙ୍କ ସହିତ ତାଙ୍କ ସାନଭାଇ, ଭଣଜା, ଆମ ଗାଁରୁ ଆଉ ଜଣେ ସ୍କୁଲ ପିଲା ଥିଲେ ଏବଂ ଆମ ମାଇନର ସ୍କୁଲର ପୂର୍ବତନ ହେଡ଼ମାଷ୍ଟର ପି.ଏଲ୍. ପରୀକ୍ଷା ଦେବାପାଇଁ ସେଠାରେ ଚାରିମାସ ଖଣ୍ଡେ ରହିଥିଲେ । ଚାରିମାସ ପରେ ସେ ତାଙ୍କ ଘର ଭଦ୍ରକ ଚାଲିଯାଇଥିଲେ । କୃପାସିନ୍ଧୁବାବୁଙ୍କ ସହିତ ଆମ୍ଭେମାନେ ସେଠାରେ ଗୋଟିଏ ମେସ୍ କରି ରହିଥିଲୁ । ଆମର ମାସକୁ ସ୍କୁଲ ଦରମା, ଖାଇବା ପ୍ରଭୃତି ମିଶି ସାତ ଆଠ ଟଙ୍କା ପଡୁଥିଲା । କୃପାସିନ୍ଧୁବାବୁଙ୍କ ପାଖକୁ ଅନେକ ମହକିଲ ଆସନ୍ତି । ସେମାନଙ୍କ ମଧ୍ୟରୁ କେତେକ ସେହି ମେସ୍‌ରେ ଦୁଇ ଚାରିଦିନ ରହିଯାଆନ୍ତି । ମେସ୍‌ରେ ଗୋଟିଏ ପୂଜାରୀ ଥାଏ । ସେ ବଜାର ସଉଦା, ରୋଷେଇବାସ ପ୍ରଭୃତି କରେ ଏବଂ ମାସକୁ ମୋଟେ ତିନିଟଙ୍କା ଦରମା ନିଏ । ମେସ୍‌ରେ ଭାତ, ଡାଲି, ତରକାରି ହୁଏ । ଜଳଖିଆ ପାଇଁ ଚୁଡ଼ାଭଜା, ମୁଆଁ, ବରା, ଗୁଲୁଗୁଲା, ମୁଢ଼ି, ଉଖୁଡ଼ା ପ୍ରଭୃତି ପାଖରେ ମିଳୁଥିଲା । କୃପାସିନ୍ଧୁବାବୁ ଆମ ପୂର୍ବ ହେଡ଼ମାଷ୍ଟରଙ୍କଠାରୁ ଜାଣିଥିଲେ ଯେ ମୁଁ ଭଲ ପାଠ ପଢ଼େ । ସେ ସେହିକାଳୁ ମୋତେ ତାଙ୍କର ସାନଭାଇ ପରି ଅତି ସ୍ନେହ କରୁଥିଲେ । ତାଙ୍କ ସାନଭାଇ ଜୟୀ ଭିକ୍ଟୋରିଆ ସ୍କୁଲର (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ) ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଥାଏ । ମୁଁ କଲେଜିଏଟ୍ ସ୍କୁଲର ଅଷ୍ଟମ ଶ୍ରେଣୀରେ ନାମ

ଲେଖାଇବାକୁ ଚାହୁଁଥିଲି । ଜୟୀର ଓ ମୋର ଏକା କ୍ଲାସ ହେଉଥିବାରୁ କୃପାସିନ୍ଧୁବାବୁ ମଧ ଚାହୁଁଥିଲେ ଯେ ଜୟୀ ମୋ ସଙ୍ଗରେ ପଢ଼ିଲେ ଭଲ ପଢ଼ିବ '।

ବୁଲାସାହୁ ଘରେ ରହିବା ପରଦିନ ମୁଁ କଲେଜିଏଟ୍ ସ୍କୁଲରେ ନାମ ଲେଖାଇବାକୁ ଗଲି । ସେତେବେଳକୁ ସେ ସ୍କୁଲରେ ନାମ ଲେଖା ଶେଷ ହୋଇ ଯାଇଥିଲା ମାତ୍ର ନାମଲେଖା ତାରିଖ ବିତି ଯାଇ ନ ଥିଲା । ତଥାପି ଅଷ୍ଟମ ଶ୍ରେଣୀରେ ଗୋଟିଏ ଦୁଇଟି ସ୍ଥାନ ଖାଲି ଥିଲା । ସେ ସ୍କୁଲରେ ଆମ ଗାଁର ବୈଦ୍ୟନାଥ ତ୍ରିପାଠୀ ମାଟ୍ରିକୁଲେସନ ପାସ୍ ପରେ ଟ୍ରେନିଂ ପାଇ ସହକାରୀ ଶିକ୍ଷକ ରୂପେ ଚାକିରି କରୁଥିଲେ । ଦଦେଇ ସ୍କୁଲରେ ମୋର ନାମ ଲେଖାଇବା ଭାର ତାଙ୍କ ଉପରେ ଦେଇ ଗାଁକୁ ଚାଲି ଯାଇଥିଲେ । ସ୍କୁଲରେ ସେତେବେଳେ ବିଶ୍ୱମ୍ଭର ମିଶ୍ର ହେଡ୍‌ମାଷ୍ଟର ଥିଲେ । ସେ ପରେ ରାୟସାହେବ ଉପାଧି ପାଇଥିଲେ । ସ୍କୁଲରେ ଜଣେ ଇଂରାଜୀ ଶିକ୍ଷକ ମୋତେ ଇଂରାଜୀରେ ଏବଂ ଜଣେ ସାହିତ୍ୟ ଶିକ୍ଷକ ସାହିତ୍ୟରେ ପରୀକ୍ଷା କଲେ । ସେ ପରୀକ୍ଷାରେ ଭଲ କରିବାରେ ମୋର ସନ୍ଦେହ ନ ଥିଲା । ହେଡ୍‌ମାଷ୍ଟର ମୋର ନାମ ଗତ ମାଇନର ପରୀକ୍ଷାରେ ପାସ କରିଥିବା ପିଲାଙ୍କ ତାଲିକାରେ ତନଖି କରି ଦେଖିଲେ ଏବଂ ମୋର ନାମ ଅଷ୍ଟମ ଶ୍ରେଣୀ 'ଏ' ସେକ୍ସନରେ ଲେଖିବାକୁ ନିର୍ଦ୍ଦେଶ ଦେଲେ । ସେତେବେଳେ 'ଏ' ସେକ୍ସନରେ ସମସ୍ତ ବିଷୟ ଇଂରାଜୀରେ ପଢ଼ା ହେଉଥିଲା ଏବଂ 'ବି' ସେକ୍ସନ୍‌ରେ କେବଳ ଇତିହାସ ଓ ଭୂଗୋଳ ଓଡ଼ିଆରେ ପଢ଼ା ହେଉଥିଲା । 'ଏ' ସେକ୍ସନ ପିଲା ସବୁ ବିଷୟ ଇଂରାଜୀରେ ପଢୁଥିବା ହେତୁ ନିଜକୁ ଉଚ୍ଚତର ମନେ କରୁଥିଲେ ।

କଟକରେ ରହିଲା ପରେ କ୍ରମେ ମୁଁ ଏହାର ପୁରାତନ କୀର୍ତ୍ତି କାଠଯୋଡ଼ି ପଥର ବନ୍ଧ, ବାରବାଟି କିଲ୍ଲା, ମହାନଦୀ ବନ୍ଧ, ଚଣ୍ଡୀମନ୍ଦିର ପ୍ରଭୃତି ଏବଂ ବଜାର ଘାଟ ବୁଲି ଦେଖିଲି । କାଠଯୋଡ଼ି ଏବଂ ମହାନଦୀରେ ବଢ଼ିପାଣି ଦେଖିଲି ଏବଂ ସେ ନଈମାନଙ୍କରେ ବହୁଥର ଗାଧୋଇଲି । କିଲ୍ଲା ପଡ଼ିଆରେ ଫୁଟ୍‌ବଲ ଖେଳ ଦେଖିଲି ଏବଂ ସନ୍‌ସାଇନ ଫିଲ୍ଡରେ ଖେଳିଲି । କଟକର ଚୌଧୁରୀ ବଜାର ଓ ମାରୱାଡ଼ିପଟି ବଜାର ବୁଲିଲି । ବିଭିନ୍ନ ମଠରେ ଝୁଲଣ ଯାତ୍ରା ଦେଖିଲି ଏବଂ ଦଶହରା ସମୟରେ ବହୁ ସ୍ଥାନରେ ଦେବୀମେଢ଼, କାଳୀପୂଜାରେ କାଳୀମେଢ଼ ଏବଂ ଦିଓ୍ୱାଲିରେ ମାରୁଆଡ଼ିପଟିରେ ଦୀପାବଳି ଦେଖିଲି । ବହୁବାର କାଳୀମନ୍ଦିର ଏବଂ କଟକଚଣ୍ଡୀ ମନ୍ଦିରକୁ ଯାଇ ଉପାସନା କଲି । କଟକର ଗୁଡ଼ିଆ ଦୋକାନମାନଙ୍କରୁ ପୁରି, ରସଗୋଲା ଏବଂ ଛୋଟ ଜଳଖିଆ ଦୋକାନୀମାନଙ୍କଠାରୁ ବରା, ଗୁଲୁଗୁଲା, ଚୁଡ଼ାଭଜା ମୁଆଁ ପ୍ରଭୃତି ଖାଇଲି । ଖରାଦିନେ ବୁଲା ଆମ୍ବବିକାଳିଙ୍କ ଠାରୁ ଆମ୍ବ ଓ ଭଇଁଚି କୋଳି ଓ ବେତକୋଳି ବିକାଳିଙ୍କଠାରୁ କୋଳି କିଣି ଖାଇଲି । ଫଳତଃ କଟକବାସୀଙ୍କ ଦୈନନ୍ଦିନ ଜୀବନ, ପର୍ବପର୍ବାଣି, ରୋଗ ବିରାଗ ଓ ସୁଖଦୁଃଖରେ ସାମିଲ୍ ହୋଇଗଲି । କଟକର ନାଳିଗୋଡ଼ି ରାସ୍ତା, ଦୁର୍ବଳ ଦୁଇ ଘୋଡ଼ାଯୁକ୍ତ ଘୋଡ଼ାଗାଡ଼ି, ହାତଟଣା ରିକ୍ସା ଏବଂ ଏକବଳଦିଆ ବଳଦଗାଡ଼ି ବ୍ୟବହାର କରିବାରେ ଅଭ୍ୟସ୍ତ ହୋଇଗଲି । ୧୯୩୨ ମସିହା ଜାନୁୟାରୀ ମାସରୁ କଟକ ଆସି କଲେଜିଏଟ୍

ସ୍କୁଲରେ ଚାରିବର୍ଷ, ରେଭେନ୍ସା କଲେଜରେ ଚାରିବର୍ଷ ପଢ଼ିବା ପାଇଁ କଟକରେ ଆଠବର୍ଷ ରହିଯାଇଥିଲି । ସେହି ସମୟରେ ସହରର ବିଭିନ୍ନ ସ୍ଥାନରେ ରହିଥିଲି ଏବଂ ପାଦରେ, ସାଇକେଲରେ ଏବଂ ରିକ୍ସାରେ ବୁଲି ସହରର ପ୍ରାୟ ସବୁ ଗଳି ଦେଖିଥିଲି । ସେହି ଆଠବର୍ଷ କଟକସହର ମୋର ବାସସ୍ଥଳ ଥିଲା । ଗାଁରେ କେବଳ ଛୁଟିରେ ପ୍ରତିବର୍ଷ ମାସେ ଦୁଇମାସ ରହୁଥିଲି । ପାଠ ପଢ଼ିସାରିବା ପରେ କଟକରେ ପ୍ରାୟ ଆଠ ବର୍ଷ ଚାକିରି କରିଥିଲି ଏବଂ ଅନ୍ୟ ସମୟରେ ସାମୟିକ ଭାବରେ ସେଠାରେ ରହୁଥିଲି । ସେତେବେଳେ ନୂଆ ଭୁବନେଶ୍ୱର ସହର ହୋଇ ନ ଥିଲା କିମ୍ବା ଭୁବନେଶ୍ୱରରେ ରହିବାର ଆମର ପ୍ରଶ୍ନ ନ ଥିଲା । କଟକରେ ପ୍ରାୟ କୋଡ଼ିଏ ବର୍ଷ ରହିବା ପରେ ସେ ସ୍ଥାନକୁ ଆମ ଗାଁ ପରି ଆମର ବାସସ୍ଥଳ ବୋଲି ଭାବିବା ସ୍ୱାଭାବିକ । ଆମ ଗାଁରେ ତ ନିରବଚ୍ଛିନ୍ନ ଭାବରେ କେବଳ ବାରବର୍ଷ ରହିଥିଲି । ଅଥଚ କଟକରେ କୋଡ଼ିଏ ବର୍ଷ ରହିଥିଲି । କେବଳ ଏତିକି ତଫାତ୍ ଯେ କଟକରେ ଆମର ନିଜର କୌଣସି ଘରବାଡ଼ି ନ ଥିଲା । ହଷ୍ଟେଲରେ, ମେସ୍‌ରେ, ଭଡ଼ାଘରେ ଏବଂ ସରକାରୀ କ୍ୱାଟର୍ସରେ ସମୟ କଟିଥିଲା ।

୧୯୩୩ ମସିହାରେ ବୁଲାସାହୁ ତାର ଘର ବିକ୍ରି କରିଦେଲା । ଘର କିଣିଥିବା ଲୋକ ସେ ଘରେ ନିଜେ ରହିଲା କିମ୍ବା ସେ ଘର ଭାଙ୍ଗି ନୂଆ ଘର ତିଆରି କଲା ମୁଁ ଜାଣି ନାହିଁ । ଘର ବିକ୍ରି ହେବାପରେ ଆମ ମେସ୍ ଅଳ୍ପଦୂରରେ ଥିବା କାଜିବଜାର ଛକକୁ ଉଠିଗଲା । ସେଠାରେ ଚାରିପାଞ୍ଚ ଜଣ ଲୋକ ଆଗରୁ ମେସ୍ କରି ଥିଲେ । ଆମେ ସମସ୍ତେ ଯାଇ ସେହି ମେସ୍‌ରେ ରହିଲୁ । ସେ ମେସ୍‌ର ଏକମାହାଲା କୋଠାଘରଟା ଅତି ପୁରୁଣା ଥିଲା । ମାତ୍ର ସେଥିରେ ଆଠ ଦଶ ଜଣ ରହିବାକୁ ଜାଗା ଥାଏ । ସେ ଘରେ କୂଅ, ପାଇଖାନା ଓ ପକ୍କା ଅଗଣା ଥିଲା । ମୁଁ ସେଠାରେ ଜାନୁଆରୀ ମାସରୁ ଦଶହରା ଛୁଟି ପର୍ଯ୍ୟନ୍ତ ପ୍ରାୟ ଦଶମାସ ଥିଲି ।

ଏଥି ମଧ୍ୟରେ ମୁଁ ଖବର ପାଇଲି ଯେ ମୋ ବଡ଼ଭାଇନାଙ୍କ ସହିତ ପାଟନା ଇଞ୍ଜିନିଅରିଂ କଲେଜରେ ପଢୁଥିବା ସିଂହଭୂମ ଜିଲ୍ଲାର ଅକ୍ଷୟ କୁମାର ଦାଶ କଟକରେ ଆସିଷ୍ଟାଣ୍ଟ ଇଞ୍ଜିନିଅର ରୂପେ କାର୍ଯ୍ୟ କରୁଛନ୍ତି ଏବଂ ଯୋବ୍ରାରେ ଗୋଟିଏ ସରକାରୀ ଘରେ ରହୁଛନ୍ତି । ମୁଁ ଥରେ ଦଦେଇଙ୍କ ସଙ୍ଗରେ ତାଙ୍କ ଘରକୁ ଯାଇଥିଲି ଏବଂ ମୋତେ ପଢ଼ିବାପାଇଁ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲି । ସେ ଅତି ଭଲ ଲୋକ ଥିଲେ ଏବଂ ମୋ ଭାଇନାଙ୍କ ଅନ୍ତରଙ୍ଗ ବନ୍ଧୁ ଥିଲେ । ତାଙ୍କ ପରିବାରର ବହୁଲୋକ ତାଙ୍କ ଉପରେ ନିର୍ଭର କରୁଥିଲେ । ତଥାପି ସେ ମୋତେ ମାସକୁ ପାଞ୍ଚଟଙ୍କା ଦେବାକୁ ପ୍ରତିଶ୍ରୁତି ଦେଲେ । ମୁଁ ଦୁଇ ଚାରିମାସ ତାଙ୍କ ଘରକୁ ଯାଇ ପାଞ୍ଚଟଙ୍କା ଲେଖାଏଁ ଆଣିଥିଲି । ପରେ ସେ ମୋତେ ତାଙ୍କ ଘରେ ରହି ଖିଆପିଆ କରିବାକୁ କହିଲେ । ତେଣୁ ମୁଁ ୧୯୩୩ ମସିହା ନଭେମ୍ବର ମାସରୁ ଯୋବ୍ରାରେ ତାଙ୍କ ଘରେ ରହିଲି । ତାଙ୍କର ଦୁଇ ସାନଭାଇଙ୍କ ମଧ୍ୟରୁ ଜଣେ ମେଡ଼ିକାଲ ସ୍କୁଲରେ ଏବଂ ଅନ୍ୟଜଣେ ରେଭେନ୍ସା କଲେଜରେ ଆଇ.ଏସ୍‌ସି. ପଢୁଥିଲେ । ତାଙ୍କର ବାପ, ମା ଓ ବିଧବା ଭାଉଜ ସାମୟିକ ଭାବରେ ସେଠାରେ

ରହୁଥିଲେ । ମାତ୍ର ବିଧବା ଭାଉଜଙ୍କ ପୁଅ ଝିଅ ସେଠାରେ ରହି ସ୍କୁଲରେ ପଢୁଥିଲେ । ଘର ପି.ଡବ୍ଲ୍ୟୁ.ଡି.ର ଛଣଛପର ବଡ଼ ବଙ୍ଗଳା ଥିଲା ଏବଂ ଘରର ହତା ଅତି ବଡ଼ ଥିଲା । ମହାନଦୀ ଆନିକଟ ନିକଟରେ ଥିବା ସେହି ଘର କଲେଜିଏଟ୍ ସ୍କୁଲରୁ ପ୍ରାୟ ଚାରିମାଇଲ ଦୂର ଥିଲା । ମୋର ସେତେବେଳେ ସାଇକଲ୍ ନ ଥିଲା କିମ୍ବା ମୁଁ ସାଇକେଲ୍ ଚଳାଇ ଶିଖି ନ ଥିଲି । ମୁଁ ମଧ୍ୟ ସେତେବେଳେ ଜୋତା ବା ଚପଲ କିଛି ମାତ୍ରୁ ନ ଥିଲି । ସେ ସମୟରେ ସ୍କୁଲର ଅଧିକାଂଶ ପିଲା ଖାଲି ପାଦରେ ଯିବାଆସିବା କରୁଥିଲେ । ତାଙ୍କ ଘରେ ପୂଜାରୀ ଚାକର ଥିଲେ । ମୁଁ ତାଙ୍କ ପରିବାରର ଜଣେ ଲୋକ ହୋଇ ରହିଲି । ସେ ମୋତେ ତାଙ୍କ ସାନଭାଇ ବୋଲି ଗ୍ରହଣ କରି ନେଇଥିଲେ । ତାଙ୍କ ସାନଭାଇମାନଙ୍କ ସଙ୍ଗରେ ଯେପରି ବ୍ୟବହାର କରୁଥିଲେ; ସେ ମୋ ସହିତ ସେହିପରି ବ୍ୟବହାର କରୁଥିଲେ ।

ମୁଁ ତାଙ୍କ ଘରେ ରହି ପ୍ରାୟ ତିନି ଚାରି ମାସ ପାଦରେ କଲିଜିଏଟ୍ ସ୍କୁଲକୁ ଯିବାଆସିବା କରୁଥିଲି । ଦିନକୁ ପ୍ରାୟ ଆଠମାଇଲ ଚାଲିବା ଦ୍ୱାରା ମୋର ପଢ଼ାପଢ଼ିରେ ବିଶେଷ ବ୍ୟାଘାତ ହେଉଥିଲା ବୋଲି ମୋର ମନେ ହେଉ ନାହିଁ । ତାଙ୍କ କଲେଜରେ ପଢୁଥିବା ଭାଇ ଅନେକ ସମୟରେ ମୋତେ ଅଙ୍କ ବତାଇ ଦେଉଥିଲେ । ତାଙ୍କ ଘରେ ରହୁଥିବା ସମୟରେ ମୁଁ ସ୍କୁଲ ଦଶମ ଶ୍ରେଣୀରେ ପ୍ରଥମ ଟର୍ମିନାଲ୍ ପରୀକ୍ଷାରେ ପ୍ରଥମ ହୋଇଥିଲି । ତିନି ଚାରିମାସ ପରେ ମୁଁ ଗୋଟିଏ ସାଇକେଲ୍ କିଣିଲି ଏବଂ ତାଙ୍କ ଘରୁ ସ୍କୁଲକୁ ସାଇକେଲ୍‌ରେ ଯିବାଆସିବା କଲି । ୧୯୩୪ ମସିହା ଗ୍ରୀଷ୍ମ ଛୁଟିରେ ମୁଁ ଗାଁକୁ ଗଲି । ସେଠାରେ ମୋତେ ପାରାଟାଇଫଏଡ୍ ଜର ହେଲା । ଛୁଟି ପରେ ପ୍ରାୟ ମାସେ ଦେଢ଼ମାସ ମୁଁ ଗାଁରୁ କଟକ ଆସିପାରିଲି ନାହିଁ । ଆସିଲା ବେଳକୁ ପୂଜାଛୁଟି ଅଳ୍ପଦିନ ଥାଏ । ଛୁଟିପରେ ଅକ୍ଷୟବାବୁଙ୍କର କେନ୍ଦ୍ରାପଡ଼ା ବଦଳି ହୋଇଗଲା । ମୁଁ କଲେଜିଏଟ୍ ସ୍କୁଲ ଛାଡ଼ି ତାଙ୍କ ପରିବାର ସହିତ କେନ୍ଦ୍ରାପଡ଼ା ଯିବା ପ୍ରଶ୍ନ ନ ଥିଲା । ସେ ମଧ୍ୟ ତାହା କରିବାକୁ ମୋତେ ପରାମର୍ଶ ଦେଇ ନ ଥିଲେ । ତାଙ୍କ ପରିବାର କେନ୍ଦ୍ରାପଡ଼ା ଯିବା ପରେ ୧୯୩୪ ମସିହା ପୂଜାଛୁଟି ପରେ ମୁଁ କାଠଯୋଡ଼ି ହଷ୍ଟେଲରେ ରହିଲି । ସେତେବେଳକୁ ହାଇସ୍କୁଲ ପଢ଼ାର ପ୍ରାୟ ତିନିବର୍ଷ ବିତି ଯାଇଥିଲା । ମାଟ୍ରିକୁଲେସନ ପରୀକ୍ଷା ଆଉ ମୋଟେ ବର୍ଷେ ତିନି ଚାରିମାସ ଥାଏ । ତେଣୁ ପଢ଼ା ଛାଡ଼ିବା ସମ୍ଭବ ନ ଥିଲା । ମୁଁ ହଷ୍ଟେଲରେ ରହିଲି ଏବଂ ବାଧ୍ୟ ହୋଇ ଆମ ପରିବାର ମୋତେ ମାସକୁ ଦଶଟଙ୍କା ଲେଖାଏଁ ଦେଲେ । କିନ୍ତୁ ଦଶମ ଶ୍ରେଣୀର ଗ୍ରୀଷ୍ମଛୁଟିରେ ମୋ ଜର, ଛୁଟି ପରେ ସ୍କୁଲରେ ଦେଢ଼ମାସ ଅନୁପସ୍ଥିତି, ଅକ୍ଷୟବାବୁଙ୍କ କେନ୍ଦ୍ରାପଡ଼ା ବଦଳି ଓ ମୋର ରହିବାର ଅସୁବିଧା ପ୍ରଭୃତି ହେତୁ ମୋର ପଢ଼ାପଢ଼ିରେ ବିଶେଷ ବ୍ୟାଘାତ ଘଟିଲା । ବାର୍ଷିକ ପରୀକ୍ଷାରେ ମୁଁ ପ୍ରଥମ ନ ହୋଇ ଦ୍ୱିତୀୟ ହୋଇଗଲି । ଏ ସବୁ ପରିସ୍ଥିତି ମଧ୍ୟ ମୋର ମାଟ୍ରିକୁଲେସନ ପରୀକ୍ଷା ଉପରେ ପ୍ରଭାବ ପକାଇଥିଲା । ମୁଁ ପ୍ରତିଯୋଗିତାରେ ପଛରେ ପଡ଼ିଗଲି । ଯୋବ୍ରାରେ ମୁଁ ଗୋଟିଏ ବର୍ଷେ ଥିଲି । ସେ ସମୟରେ ପ୍ରତିଦିନ ତାଳଦଣ୍ଡା କେନାଲରେ

ଗାଧୋଉଥିଲି ଏବଂ ସନ୍ଧ୍ୟାବେଳେ ମହାନଦୀ ଆନିକଟ ପାଖରେ ବସି ଜଳପ୍ରପାତ ଓ ମହାନଦୀରେ ସନ୍ଧ୍ୟା ଦୃଶ୍ୟ ଦେଖୁଥିଲି ।

କାଠଯୋଡ଼ି ହଷ୍ଟେଲରେ ବର୍ଷେ ତିନିମାସ ରହିବା ପରେ ମୁଁ ମାଟ୍ରିକୁଲେସନ୍ ପରୀକ୍ଷା ଦେଇ ଗାଁକୁ ଗଲି । ପରୀକ୍ଷା ଫଳ ଅପ୍ରେଲ ମାସ ଶେଷ ଆଡ଼କୁ ବାହାରିଲା । ସେଥିରେ ମୁଁ ପ୍ରଥମ ଶ୍ରେଣୀରେ ପାସ୍ କରି ଓଡ଼ିଶାର ତିନିଗୋଟି ଡିଭିଜନାଲ ସ୍କଲାରସିପ୍ ମଧ୍ୟରୁ ଗୋଟିଏ ପାଇଲି । ମାତ୍ର ପାଟନା ବିଶ୍ୱବିଦ୍ୟାଳୟର ମାଟ୍ରିକ୍ୟୁଲେସନ ପରୀକ୍ଷାରେ ପ୍ରଥମ ପାଞ୍ଚଜଣଙ୍କ ମଧ୍ୟରେ ସ୍ଥାନ ପାଇ ନ ଥିଲି । ପରୀକ୍ଷାରେ ଏପରି ଫଳ ଦେଖି ମୁଁ ହତାଶ ହୋଇଥିଲି ।

# ରେଭେନ୍ସା କଲେଜିଏଟ୍ ସ୍କୁଲ

୧୯୩୨ ମସିହା ଜାନୁଆରୀ ତୃତୀୟ ସପ୍ତାହରେ ମୁଁ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଥିଲି । କଲେଜିଏଟ୍ ସ୍କୁଲ, ସେ ସମୟରେ ଓଡ଼ିଶାର ସର୍ବୋତ୍କୃଷ୍ଟ ହାଇସ୍କୁଲ ବୋଲି ବିବେଚିତ ହେଉଥିଲା । ସ୍କୁଲ କାଠଯୋଡ଼ି ନଦୀର ଉତ୍ତର କୂଳରେ ପଥରବନ୍ଧ ପାଖରେ ଗୋଟିଏ ବଡ଼ ପଡ଼ିଆରେ ଆଜିକାଲି ଯେଉଁଠି ଅଛି, ସେତେବେଳେ ମଧ ସେହିପରି ସେଠାରେ ଥିଲା । ଏକମୋହାଲା ବିଶିଷ୍ଟ ସ୍କୁଲ ଘର କାଠଯୋଡ଼ି ନଦୀ ଆଡ଼କୁ ମୁହଁ କରି ଗଢ଼ା ହୋଇଛି । ତାହାର ଡାହାଣ କଡ଼ରେ ଜଜ୍‌କୋର୍ଟ (ବର୍ତ୍ତମାନ ହାଇକୋର୍ଟ), କମିସନରଙ୍କ ଅଫିସ୍, କଲେକ୍ଟରଙ୍କ ଅଫିସ, ସାମନାରେ ପୁଲିସ ଅଫିସ୍ ଓ ଜିଲ୍ଲା ବୋର୍ଡ଼ ଅଫିସ୍, ବାମ ପାଖରେ କଲେଜ ଗଳି ତା'ପରେ କାଠଯୋଡ଼ି ହଷ୍ଟେଲ ଏବଂ ବ୍ୟକ୍ତିଗତ ଲୋକଙ୍କ ଘର, ପଛପଟରେ ଟ୍ରେନିଂ କଲେଜ ଏବଂ ତା'ପରେ ନିମଚଉଡ଼ି ଛକ ଥିଲା । ସ୍କୁଲ ଆଗରେ ପଡ଼ିଆ ଭିତରେ ଖେଳପଡ଼ିଆ, ଡ୍ରିଲ୍ ସେଡ୍ ଓ ସ୍କୁଲ ହଷ୍ଟେଲ ଥିଲା । ବର୍ତ୍ତମାନ ମଧ ସେ ସ୍ଥାନ ଏବଂ କୋଠାବାଡ଼ି ସେହିପରି ଅଛି । କେବଳ ସ୍କୁଲର ପଶ୍ଚିମ ଦିଗରେ କମିସନର ଅଫିସ ପାଖରେ କେତେକ ନୂଆ ଶ୍ରେଣୀଗୃହ ନିର୍ମିତ ହୋଇଛି । ସ୍କୁଲ ୧୮୪୧ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ ଅମଳରେ ଆରମ୍ଭ ହୋଇଥିଲା । ଆମେ ପଢ଼ିଲା ବେଳକୁ ସେ ସ୍କୁଲର ପ୍ରାୟ ଶହେ ବର୍ଷର ଉଚ୍ଚ ପରମ୍ପରା ଥିଲା । ସେ ସ୍କୁଲରେ ଉତ୍କଳ ଗୌରବ ମଧୁସୂଦନ ଦାସ, ପ୍ରାଣକୃଷ୍ଣ ପରିଜା, ସୁଭାଷ ବୋଷ୍ ଏବଂ ଉତ୍କଳର ଅନ୍ୟ ବହୁ ବରପୁତ୍ର ପଢ଼ିଥିଲେ । ୧୮୬୮ ମସିହାଠାରୁ ୧୯୨୧ ମସିହା ପର୍ଯ୍ୟନ୍ତ ସେହି ସ୍କୁଲରେ ରେଭେନ୍ସା କଲେଜ ମଧ ଚାଲୁଥିଲା । ସେହିଠାରେ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ନୀଳକଣ୍ଠ ଦାସ ଓ ଗୋଦାବରୀଶ ମଶ୍ର ପ୍ରଭୃତି କଲେଜରେ ପଢୁଥିଲେ ଏବଂ ସେ ହଷ୍ଟେଲରେ ରହୁଥିଲେ । ସ୍କୁଲ ଓ କଲେଜ ହଷ୍ଟେଲ ସେତେବେଳେ ଏକତ୍ର ଥିଲା । ଆମେ ସେ ସ୍କୁଲରେ ନାମ ଲେଖାଇବାର ମାତ୍ର ଏଗାରବର୍ଷ ଆଗରୁ କଲେଜ ତାହାର ବର୍ତ୍ତମାନର ଚାଉଳିଆଗଞ୍ଜ ଘରକୁ ଉଠି ଯାଇଥିଲା । କଲେଜ ପୂର୍ବେ ସେ ଅଞ୍ଚଳରେ ଥିବାରୁ, କାଠଯୋଡ଼ି ନଦୀଠାରୁ କଟକ ଚଣ୍ଡୀମନ୍ଦିର ମଧରେ ଅନେକ ଅଧ୍ୟାପକ ନିଜର ଘର କରିଥିଲେ । ସହରର ଆଉ ତିନିଗୋଟି ହାଇସ୍କୁଲ୍, ଭିକ୍ଟୋରିଆ ହାଇସ୍କୁଲ, ପ୍ୟାରୀମୋହନ ଏକାଡେମୀ, ମୁସ୍‌ଲିମ୍ ସେମିନାରୀ ମଧ ସେହି ଅଞ୍ଚଳରେ ଥିଲା । ସ୍କୁଲରେ ପଢ଼ିବାର ପ୍ରଥମ ଦୁଇବର୍ଷ ମୁଁ ସ୍କୁଲ ପାଖ ଗଙ୍ଗାମନ୍ଦିର ଓ କାଜିବଜାରରେ ଏବଂ ଶେଷବର୍ଷ କାଠଯୋଡ଼ି ହଷ୍ଟେଲରେ ରହି ପଢୁଥିଲି ।

ଆମେ ପଢ଼ିବାବେଳେ ପୂରା ଚାରିବର୍ଷ କାଳ ବିଶ୍ୱମ୍ଭର ମିଶ୍ର ହେଡ୍‌ମାଷ୍ଟର ଥିଲେ । ଜଣେ ଦୁଇଜଣଙ୍କ ବ୍ୟତୀତ ଅନ୍ୟ ଶିକ୍ଷକମାନେ ମଧ୍ୟ ସେ ସ୍କୁଲରେ ଚାରିବର୍ଷ ଯାକ ଥିଲେ । ବିଶ୍ୱମ୍ଭରବାବୁ ଅତି ଚରିତ୍ରବାନ୍ ଏବଂ ଗମ୍ଭୀର ସ୍ୱଭାବର ଲୋକ ଥିଲେ । ସ୍କୁଲ ହତା ମଧ୍ୟରେ ସ୍କୁଲ ଗୃହର ପଛପଟେ ହେଡ୍‌ମାଷ୍ଟରଙ୍କ କ୍ୱାଟର୍ସରେ ସପରିବାର ରହିଥିଲେ । ଶିକ୍ଷକମାନେ ସମସ୍ତେ ତାଙ୍କୁ ମାନୁଥିଲେ ଏବଂ ଭକ୍ତି କରୁଥିଲେ । ପିଲାମାନେ ତାଙ୍କ ପାଖକୁ ଯିବାକୁ ଡରୁଥିଲେ । ସେ ଶୃଙ୍ଖଳାର ପ୍ରତିମୂର୍ତ୍ତି ଥିଲେ ଏବଂ ସେ ସମୟରେ ସ୍କୁଲ ଅତି ଶୃଙ୍ଖଳିତ ଭାବରେ ଚାଲୁଥିଲା । ଛାତ୍ର ଅବସ୍ଥାରେ ଅତି ମେଧାବୀ ଛାତ୍ର ଥିବାର ସୁନାମ ତାଙ୍କର ନ ଥିଲା । ମାତ୍ର ବହୁ ବର୍ଷ ଅଭିଜ୍ଞତା ପରେ ଇଂରାଜୀ ଗ୍ରାମାର ପ୍ରଭୃତି ବିଷୟରେ ତାଙ୍କର ଉତ୍ତମ ଜ୍ଞାନ ଥିଲା । ଆମେ ପଢ଼ିବାବେଳକୁ ତାଙ୍କୁ ପଚାଶ ବର୍ଷ ପାଖାପାଖି ବୟସ ହୋଇଥିଲା । ଅନ୍ୟ ଶିକ୍ଷକମାନଙ୍କ ମଧ୍ୟରେ ପଣ୍ଡିତ କୁଳମଣି ଦାଶ, ପଣ୍ଡିତ ନାରାୟଣ ତ୍ରିପାଠୀ, ହମିଦ୍ ଖାଁ, ଲଳିତ ମୋହନ ଘୋଷ୍, ଫନୀନ୍ଦ୍ର ନାଥ ଦାସ, କବି ବୈକୁଣ୍ଠନାଥ ପଟ୍ଟନାୟକ, ଭୂତନାଥ ରାୟ ପ୍ରଭୃତି ନିଜ ନିଜ ବିଷୟରେ ଅତି ଦକ୍ଷ ଶିକ୍ଷକ ଥିଲେ । ପଣ୍ଡିତ କୁଳମଣି ଦାଶ ଆମକୁ ସଂସ୍କୃତ ଏବଂ ରାଧାନାଥ ରାୟଙ୍କ 'ଉଷା' ଏବଂ 'ଚିଲିକା' ପ୍ରଭୃତି କାବ୍ୟ ପଢ଼ାଉଥିବା ବେଳେ ପିଲାମାନେ ମୁଗ୍ଧ ହୋଇ ଯାଉଥିଲେ । ପଣ୍ଡିତମହାଶୟ ମୋଟାଲୋକ ଥିଲେ । କାମିଜ ଛାତି ପକେଟରେ ଗୋଟିଏ ପକେଟ୍ ଘଣ୍ଟା ରଖିଥାଆନ୍ତି, ବହୁତ ପାନ ଖାଆନ୍ତି ଏବଂ ତାଙ୍କ ମୁହଁ ସବୁବେଳେ ହସ ହସ ଓ ସନ୍ତୋଷମୟ ଥିଲା । ସେତେବେଳକୁ ସେ ତାଙ୍କର ହିମାଳୟ ପଥେ, କାଳିଦାସ ସନ୍ଦର୍ଭ ଓ ଅଳଙ୍କାର ତରଙ୍ଗିଣୀ ବହିସବୁ ଲେଖି ସାରିଥାନ୍ତି । ତାଙ୍କୁ ସବୁ ପିଲା ଏବଂ ଶିକ୍ଷକମାନେ ଭଲ ପାଉଥିଲେ । ହମିଦ୍ ଖାଁ ଆମକୁ ନବମ ଶ୍ରେଣୀରେ ଭୂଗୋଳ ପଢ଼ାଉଥିଲେ । ଦିନେ ଆଣ୍ଟିପୋଡ୍ କଣ ଆମକୁ ବୁଝାଇବାକୁ ଯାଇ ଥଟ୍ଟାରେ କହିଲେ ଦେଖ ଏ ଯେଉଁ କୁଳମଣି ପଣ୍ଡିତ ବାରନ୍ଦାରେ ଯାଉଛି ତାର ଗୋଲ ପେଟର ମଝିରେ ଗୋଟାଏ ତେଣ୍ଟା ଗଳାଇଦେଲେ ତାର ପିଠିରେ ଯେଉଁଠାରେ ବାହାରିବ, ସେଇଟା ହେଉଛି ଆଣ୍ଟିପୋଡ୍ । ପିଲାମାନେ ସମସ୍ତେ ଠୋ ଠୋ ହୋଇ ହସିଲେ । ହିନ୍ଦୁ ପଣ୍ଡିତ ଓ ମୁସଲମାନ ଶିକ୍ଷକମାନଙ୍କ ମଧ୍ୟରେ କିପରି ସହୃଦୟତା ଥିଲା ତାହା ଆଜିକାଲି ମୁଁ ଅନେକ ସମୟରେ ଭାବେ । ପଣ୍ଡିତମହାଶୟ ସ୍କୁଲ୍ ମାଗାଜିନ୍‌ର ସମ୍ପାଦକ ଥିଲେ । ନବମ ଓ ଦଶମ ଶ୍ରେଣୀରେ ମୁଁ 'କାଠଯୋଡ଼ି ନଦୀରେ ନୌକାବାହୀ ନାଉରୀ', କବିତା, 'ସ୍ୱର୍ଗରାଜ୍ୟକୁ ପତ୍ର', 'ପୁରୀ ସମୁଦ୍ର କୂଳ ଝାଉଁବଣରେ ଜହ୍ନରାତି' ପ୍ରଭୃତି ବିଷୟରେ ଗଳ୍ପ ଲେଖିଥିଲି । ସେ ସବୁ ସେ ମାଗାଜିନ୍‌ରେ ପ୍ରକାଶ କରିଥିଲେ ଏବଂ ଉପଧା ମିଳାଇ କବିତା ଲେଖିବାକୁ ମୋତେ ପରାମର୍ଶ ଦେଇଥିଲେ । ସେତେବେଳେ ବାରବାଟି ଦୁର୍ଗରେ ସାହେବମାନେ ଟେନିସ୍ ଖେଳିବା ଦେଖି ମୁଁ ବ୍ୟଥିତ ହୋଇ ଗୋଟିଏ ଦେଶାତ୍ମବୋଧ କବିତା ଲେଖିଥିଲି । ମାତ୍ର ତାକୁ ମାଗାଜିନ୍‌ରେ ପ୍ରକାଶ ପାଇଁ ଦେଇ ନ ଥିଲି । ସେତେବେଳେ ମୁଁ ନୀଳକଣ୍ଠ ଦାସଙ୍କ 'କୋଣାର୍କେ', ମାୟାଧର ମାନସିଂହଙ୍କ 'ଧୂପ' କାବ୍ୟ ଓ ସଚ୍ଚି ରାଉତରାୟଙ୍କ କେତେକ କବିତା ପଢ଼ିଥିଲି । ପଣ୍ଡିତମହାଶୟ ମୋତେ ଅତି ଭଲ ପାଉଥିଲେ । ସ୍କୁଲ

ପାଖରେ ତେଲେଙ୍ଗାବଜାରରେ ଘର ଭଡ଼ାନେଇ ସପରିବାର ରହୁଥିଲେ । ମୁଁ ତାଙ୍କ ଘରକୁ ଅନେକଥର ଯାଇଛି । ଜଣେ ଆଦର୍ଶ ଗୁରୁଭାବେ ଆଜିଯାଏ ସେ ମୋ ସ୍ମୃତିପଟରେ ଅଛନ୍ତି ।

ଅନ୍ୟ ଶିକ୍ଷକମାନଙ୍କ ମଧ୍ୟରେ ବୈକୁଣ୍ଠବାବୁ ଓ ଫନିବାବୁ ଆମକୁ ଇଂରାଜୀ ପଢ଼ାଉ ଥିଲେ । ମୋର ଇଂରାଜୀ ରଚନା ଓ ଅନୁବାଦ ଭଲ ହେଉ ନାହିଁ ବୋଲି ଫନିବାବୁ ମୋତେ କେତେଥର କହିଥିଲେ । ଇଂରାଜୀ ପ୍ରଥମ ପତ୍ର ଅପେକ୍ଷା ଦ୍ୱିତୀୟ ପତ୍ର ଏବଂ ବ୍ୟାକରଣରେ ମୁଁ ସବୁବେଳେ ଭଲ କରୁଥିଲି । ଭୂତନାଥ ରାୟ ପ୍ରଥମେ ଟ୍ରେନିଂ କଲେଜରେ ଗଣିତ ଅଧ୍ୟାପକ ଥିଲେ । ପରେ ସେ ଆମ ସ୍କୁଲରେ ସ୍ଥାୟୀ ଗଣିତ ଶିକ୍ଷକ ହୋଇଥିଲେ । ତାଙ୍କର ଗଣିତରେ ଉଚ୍ଚକୋଟୀର ଜ୍ଞାନ ଥିଲା । ମୁଁ ଗଣିତରେ ଖୁବ୍ ଦକ୍ଷ ପିଲାବୋଲି ସେ ମୋତେ ଜାଣିଥିଲେ । ଆମ ନବମ ଶ୍ରେଣୀ ବାର୍ଷିକ ପରୀକ୍ଷାରେ ସେ ପ୍ରଶ୍ନକର୍ତ୍ତା ଓ ପରୀକ୍ଷକ ଥିଲେ । ତାଙ୍କ ପ୍ରଶ୍ନଗୁଡ଼ିକ ଏପରି ଜଟିଳ ଥିଲା ଯେ ଅଧିକାଂଶ ପିଲା ସେଥିରେ ଫେଲ୍ ହେଲେ । ଯେଉଁ କେତେଜଣ ପିଲା ପାସ୍ କରିଥିଲେ ସେମାନେ ଚାଳିଶରୁ ଅଧିକ ନମ୍ବର ରଖି ନ ଥିଲେ । ମୁଁ କେବଳ ଷାଠିଏ ନମ୍ବର ରଖିଥିଲି । ପିଲାମାନେ ବ୍ୟସ୍ତ ହୋଇ ସମସ୍ତେ ହେଡ୍ ମାଷ୍ଟରଙ୍କ ପାଖରେ ପ୍ରଶ୍ନପତ୍ରର ଜଟିଳତା ବିଷୟରେ ଆପତ୍ତି କଲେ । ଭୂତନାଥବାବୁ ମୋ ଖାତାଟା ନେଇ ହେଡ୍‌ମାଷ୍ଟରଙ୍କୁ ଦେଖାଇ କହିଲେ ଯେ ଜଣେ ଜଣେ ପିଲା ସେ ପତ୍ରରେ ଷାଠିଏ ନମ୍ବର ରଖିଛନ୍ତି । ହେଡ୍‌ମାଷ୍ଟର କିନ୍ତୁ ପିଲାଙ୍କ ଆପତ୍ତି ଶୁଣି ସେ ପତ୍ର ଆଉଥରେ ପରୀକ୍ଷା କରିବାକୁ ନିଷ୍ପତ୍ତି କଲେ ଏବଂ ଅନ୍ୟ ଗଣିତ ଶିକ୍ଷକ ଗୋପାଳଚନ୍ଦ୍ର ସିହ୍ନାଙ୍କୁ ପ୍ରଶ୍ନକରି ପରୀକ୍ଷା କରିବାକୁ ଆଦେଶ ଦେଲେ । ସେ ଖୁବ୍ ସହଜ ପ୍ରଶ୍ନ କଲେ ଏବଂ ଅନେକ ପିଲା ସେଥିରେ ଭଲ ନମ୍ବର ରଖିଲେ । ଦ୍ୱିତୀୟ ପରୀକ୍ଷାରେ ମୋର ଶହେରୁ ଶହେ ରହିଥିଲା । ବୈଦ୍ୟନାଥ ତ୍ରିପାଠୀ ଆମକୁ ଓଡ଼ିଆ ସାହିତ୍ୟ ଓ ନାରାୟଣ ତ୍ରିପାଠୀ ସଂସ୍କୃତ ବ୍ୟାକରଣ ପଢ଼ାଉଥିଲେ । ବୈଦ୍ୟନାଥବାବୁ କାଠଯୋଡ଼ି ହଷ୍ଟେଲର ଏବଂ ନାରାୟଣ ତ୍ରିପାଠୀ କଲେଜିଏଟ୍ ସ୍କୁଲ ହଷ୍ଟେଲର ସହକାରୀ ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ । ସ୍କୁଲର ଜଣେ ମେଧାବୀ ଛାତ୍ର ହିସାବରେ ମୁଁ ସବୁ ଶିକ୍ଷକଙ୍କର ପ୍ରିୟପାତ୍ର ଥିଲି ।

ସ୍କୁଲରେ ଅଷ୍ଟମ ଶ୍ରେଣୀଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ା ଯାଉଥିବା ଇତିହାସ, ଭୂଗୋଳ, ଗଣିତ, ବୀଜଗଣିତ, ଜ୍ୟାମିତି, ତ୍ରିକୋଣମିତି ଓ ମେନସୁରେସନ୍ ପ୍ରଭୃତି ଇଂରାଜୀରେ ଲେଖାଥିବା ସମସ୍ତ ବହି କଲିକତାର ବଙ୍ଗାଳୀ ଶିକ୍ଷକ ବା ଅଧ୍ୟାପକମାନେ ଲେଖିଥିଲେ । କେବଳ ଓଡ଼ିଆ ଓ ସଂସ୍କୃତ ବ୍ୟତୀତ ସବୁ ବିଷୟରେ ବଙ୍ଗାଳୀ ଲେଖକମାନଙ୍କର ବହି ଚଳୁଥିଲା । ସଂସ୍କୃତ ବ୍ୟାକରଣ ମଧ୍ୟ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଲିଖିତ ସଂସ୍କୃତ ବ୍ୟାକରଣ ଅନୁବାଦ ଥିଲା । ଓଡ଼ିଆ ଲେଖକ ଓ ଶିକ୍ଷକମାନେ ସେତେବେଳେ ହାଇସ୍କୁଲ ସ୍ତରର ପାଠ୍ୟପୁସ୍ତକ ଲେଖିପାରୁ ନ ଥିଲେ । କେ.ପି. ବସୁଙ୍କ ଆଲ୍‌ଜେବ୍ରା, ଜେ.ସି.ଚକ୍ରବର୍ତ୍ତୀଙ୍କ ଗଣିତ, ଜି.ବି.ମିତ୍ରଙ୍କ ମେନସୁରେସନ୍, ଏଲ୍.କେ.

ମିତ୍ରଙ୍କ ଟ୍ରିଗୋନୋମେଟ୍ରି, ଶାରଦା ଗାଙ୍ଗୁଲୀଙ୍କ ଜ୍ୟାମିତି, ଜେ.ଏନ୍.ଘୋଷଙ୍କ ଭୂଗୋଳ, ଆର.ଡି. ବାନାର୍ଜୀ ଓ ଏଲ୍.କେ. ମୁଖାର୍ଜୀଙ୍କର ଭାରତ ଓ ଇଂଲଣ୍ଡର ଇତିହାସ ବହିମାନ ବହୁକାଳ ଓଡ଼ିଶାର ସ୍କୁଲମାନଙ୍କରେ ଚଳୁଥିଲା । ରାଧାନାଥ ରାୟ, ଫକୀରମୋହନ ଓ ଗୋବିନ୍ଦ ରଥ ପ୍ରଭୃତି ଯେଉଁ ସ୍କୁଲ ପାଠ୍ୟପୁସ୍ତକମାନ ଓଡ଼ିଆରେ ଲେଖିଥିଲେ ବୋଲି ବର୍ତ୍ତମାନ ଜାଣୁଛୁ, ସ୍କୁଲରେ ପଢ଼ିଲାବେଳେ ସେ ସବୁ ବହି ଆମେ ଦେଖି ନ ଥିଲୁ କିମ୍ବା ସେ ସବୁ ବହି ବିଷୟରେ କିଛି ଜାଣି ନ ଥିଲୁ । ଉପରୋକ୍ତ ବିଷୟମାନ ଆମେ ଇଂରାଜୀରେ ପଢୁଥିଲୁ । ସେଥିଯୋଗୁଁ ସେ ବିଷୟମାନଙ୍କରେ ଅଳ୍ପସଂଖ୍ୟକ ଓଡ଼ିଆ ବହି ଆମେ ଦେଖି ନ ଥିଲୁ । ବଙ୍ଗାଳୀ ଲେଖକମାନଙ୍କ ବହି ବ୍ୟତୀତ, ଡଡଲି ଷ୍ଟାମ୍ପଙ୍କ ଓ ମରିସନ୍‌ଙ୍କର ଭୂଗୋଳ ପ୍ରଭୃତି ପରି କେତେକ ଇଂରେଜ ଲେଖକଙ୍କର ଇତିହାସ ଓ ଭୂଗୋଳ ବହି ଆମର ପାଠ୍ୟପୁସ୍ତକ ଥିଲା । ଇଂରାଜୀ ସାହିତ୍ୟ ଓ ଗ୍ରାମାରର ସବୁ ବହି ଇଂରେଜ ଲେଖକମାନେ ଲେଖିଥିଲେ । ସେଥିରେ ମଧ୍ୟ ବଙ୍ଗାଳୀ ଲେଖକଙ୍କ ଲିଖିତ ହିଡିନ୍ ଟ୍ରେଜର ପରି ଗ୍ରାମାର ବହି ଆମେ ପଢୁଥିଲୁ ଯଦିଓ ସେ ବହି ସବୁ ପାଠ୍ୟପୁସ୍ତକ ତାଲିକାରେ ନ ଥିଲା । ସେ ସମୟରେ ବର୍ତ୍ତମାନ ପରି ବହୁ ମାନେ ବହି ନ ଥିଲା । ଶେଷ ବର୍ଷରେ କେବଳ ଟେଷ୍ଟ୍ ପେପରସ୍ ବହି ଆମେ ବ୍ୟବହାର କରୁଥିଲୁ । ସେଥିରେ କେବଳ ପୂର୍ବ ଦଶବର୍ଷର ମାଟ୍ରିକୁଲେସନ୍ ପରୀକ୍ଷାମାନଙ୍କର ବିଭିନ୍ନ ବିଷୟରେ ପ୍ରଶ୍ନମାନ ଥିଲା । ମାତ୍ର ସେଗୁଡ଼ିକର ଉତ୍ତର ଲେଖାହୋଇ ନ ଥିଲା । ଆମେ ବିଶେଷତଃ ଗଣିତ ପ୍ରଶ୍ନମାନଙ୍କର ଉତ୍ତର ବାହାର କରୁଥିଲୁ ।

ଅଷ୍ଟମ ଶ୍ରେଣୀରେ ପଢ଼ା ଆରମ୍ଭ କରିବାର ଅଳ୍ପଦିନ ପରେ ଶ୍ରେଣୀରେ ପିଲାମାନଙ୍କ ସହିତ ପରିଚୟ ହୋଇଗଲା । ସେ ସ୍କୁଲରେ ଆଗରୁ ପଢୁଥିବା ଏବଂ ଶ୍ରେଣୀରେ ପ୍ରଥମ ହେଉଥିବା ନୃସିଂହଚରଣ ଦାସ, ବାଲିକୁଦା ମାଇନର ସ୍କୁଲରୁ ଆସିଥିବା ଶ୍ରୀରାମଚନ୍ଦ୍ର ଦାଶ, ପଟାମୁଣ୍ଡାଇ ସ୍କୁଲରୁ ଆସିଥିବା ଗୁରୁଚରଣ ମହାନ୍ତି, ସାଲେପୁର ସ୍କୁଲରୁ ଆସିଥିବା ଯୁଗଳ କିଶୋର ମହାନ୍ତି, ରାମବାଗ ସ୍କୁଲରୁ ଆସିଥିବା ମହେଶ୍ୱର ମିଶ୍ର, ପ୍ରଫେସର କାଶୀନାଥ ଦାଶଙ୍କ ପୁଅ ଗୋପୀନାଥ ଦାଶ, ପ୍ରଫେସର ଶାରଦା ଗାଙ୍ଗୁଲୀଙ୍କ ପୁଅ ସୁନୀଲ୍ କୁମାର ଗାଙ୍ଗୁଲୀ, କଟକର ତେଲେଙ୍ଗା ବଜାର ଓ କାଜିଗଳିର ବଙ୍ଗାଳୀ ପିଲା, ଅଶୋକ, ଅମୀୟ, ସୁବୋଧ, ସତ୍ୟେନ୍ ସମସ୍ତଙ୍କ ସହିତ ପରିଚୟ ହୋଇଗଲା । ସେ ଶ୍ରେଣୀରେ କଟକର ଅନେକ ବଙ୍ଗାଳୀ ପିଲା ଥିଲେ । ସେମାନେ ସମସ୍ତେ ସେହି ସ୍କୁଲର ତଳ ଶ୍ରେଣୀରେ ପଢୁଥିଲେ । ସେଥିରୁ ଅଷ୍ଟମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥିଲେ । ଅଳ୍ପ କାଳ ମଧ୍ୟରେ ଅନେକ ଓଡ଼ିଆ ଓ ବଙ୍ଗାଳୀ ପିଲାଙ୍କ ସହିତ ଘନିଷ୍ଠତା ହୋଇଗଲା । ମାଇନର ସ୍କୁଲରୁ ପ୍ରଥମ ଧାଡ଼ିରେ ବସିବା ମୋର ଅଭ୍ୟାସ ଥିଲା । ଅଷ୍ଟମ ଶ୍ରେଣୀରେ ମଧ୍ୟ ପ୍ରଥମ ଧାଡ଼ିରେ ବସିବାକୁ ଆରମ୍ଭ କଲି । ସେହିକାଳଠାରୁ ଏମ୍.ଏ. ପଢ଼ିବା ଶେଷ ପର୍ଯ୍ୟନ୍ତ ଶ୍ରେଣୀର ପ୍ରଥମ ଧାଡ଼ିରେ ବସିବା ମୋର ଅଭ୍ୟାସ ଥିଲା ।

ପ୍ରଥମରୁ ସେହି ସ୍କୁଲରେ ଭେଟିଥିବା କେତେକ ପିଲାଙ୍କ ସହିତ ଘନିଷ୍ଠ ବନ୍ଧୁତା ଜୀବନଯାକ ରହିଥିଲା । ସ୍କୁଲ ପଢ଼ା ଶେଷ ହେବା ପରେ କେତେକ କଲେଜରେ

ପଢ଼ିଥିଲେ, ଆଉ କେତେକ ବିଭିନ୍ନ ବିଭାଗରେ ଚାକିରି କରିଥିଲେ । ମାତ୍ର କିଶୋର ବୟସରେ ହୋଇଥିବା ସେ ବନ୍ଧୁତା ପରବର୍ତ୍ତୀ କାଳରେ ବହୁବର୍ଷ ରହିଥିଲା ଏବଂ କେତେକଙ୍କ ସଙ୍ଗରେ ବନ୍ଧୁତା ଜୀବନର ଶେଷ ପର୍ଯ୍ୟନ୍ତ ରହିଛି ।

ନୃସିଂହ ଚରଣ ଦାସ ସେ ସ୍କୁଲରେ ଆଗରୁ ପଢୁଥିଲେ ଏବଂ ଶ୍ରେଣୀରେ ପ୍ରଥମ ହେଉଥିଲେ । ତାଙ୍କର ବାପା ଓ ଦାଦି କଟକ କଲେକ୍ଟରଙ୍କ ଅଫିସ୍‌ରେ କିରାଣି କାମ କରୁଥିଲେ । ଅବିବାହିତ ଥିବା ତାଙ୍କର ଦାଦା ବିଶେଷତଃ ତାଙ୍କ ପଢ଼ାପଢ଼ିର ଯତ୍ନ ନେଉଥିଲେ । ନୃସିଂହ ଅତି ଧୀରସ୍ଥିର ପ୍ରକୃତିର ଏବଂ ଉତ୍ତମ ଚରିତ୍ରର ପିଲା ଥିଲା । ତାର ହସ୍ତାକ୍ଷର ଅତି ସୁନ୍ଦର ଥିଲା । ଅଷ୍ଟମ ଶ୍ରେଣୀର ପରୀକ୍ଷାମାନଙ୍କରେ ସେ ପ୍ରଥମ ହେଉଥିଲା ଏବଂ ସ୍କୁଲରେ ଚାରିବର୍ଷଯାକ ପ୍ରଥମ ଦୁଇ ତିନିଜଣଙ୍କ ମଧ୍ୟରେ ସ୍ଥାନ ପାଉଥିଲା । ମାଟ୍ରିକୁଲେସନ ପରୀକ୍ଷାରେ ମଧ୍ୟ ସେ ବିଶ୍ୱବିଦ୍ୟାଳୟରେ ପଞ୍ଚମ ସ୍ଥାନ ଅଧିକାର କରିଥିଲା । ମାତ୍ର କଲେଜରେ ତାର ମୁଣ୍ଡ ଖରାପ ହୋଇଗଲା । ଆଇ.ଏ.ରେ ସେ ତୃତୀୟ ଶ୍ରେଣୀରେ ପାସ୍ କଲା ଏବଂ ବି.ଏ.ରେ ବାର୍ଷିକ ପରୀକ୍ଷା ବର୍ଜନ କରି ସପ୍ଲିମେଣ୍ଟାରୀ ପରୀକ୍ଷାରେ ପାସ୍ କଲା । ତା'ପରେ ପାଟନା କଲେଜରେ ଅର୍ଥନୀତିରେ ପଞ୍ଚମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଥିଲା । ମାତ୍ର ବାପାଙ୍କର ମୃତ୍ୟୁ ହେତୁ ପଢ଼ା ଛାଡ଼ିବାକୁ ବାଧ୍ୟ ହୋଇଥିଲା । ପରେ ଅନେକ ବର୍ଷ ସବ୍‌ରେଜିଷ୍ଟ୍ରର ଚାକିରି କରି ଖୋର୍ଦ୍ଧାରେ ଡେପୁଟି ମାଜିଷ୍ଟ୍ରେଟ୍ ହୋଇ ଚାକିରି କରୁଥିଲା । ମାତ୍ର ପଚାଶ ବର୍ଷ ନ ପୂରୁଣୁ ତାର ମୃତ୍ୟୁ ହୋଇଥିଲା । ତା ସହିତ ମୋର ସବୁବେଳେ ବନ୍ଧୁତା ଥିଲା, ମାତ୍ର ଅତି ଘନିଷ୍ଠତା ନ ଥିଲା ।

ଗୁରୁଚରଣ ମହାନ୍ତି ସଙ୍ଗରେ କିନ୍ତୁ ତାର ସତୁରି ବର୍ଷ ବୟସରେ ମୃତ୍ୟୁ ପର୍ଯ୍ୟନ୍ତ ଅତି ଘନିଷ୍ଠ ବନ୍ଧୁତା ଥିଲା । ମାଟ୍ରିକ୍ୟୁଲେସନ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପାସ୍ କରି ଜିଲ୍ଲାସ୍ତରୀୟ ବୃତ୍ତି ପାଇଥିଲା । ମାତ୍ର ଆଇ.ଏ.ରେ ଦ୍ୱିତୀୟ ଶ୍ରେଣୀରେ ଏବଂ ବି.ଏ. ଅର୍ଥନୀତି ଅନର୍ସରେ ଦ୍ୱିତୀୟ ଶ୍ରେଣୀରେ ପାସ କରିଥିଲା । ଆଇ.ଏ. ପଢ଼ିବାବେଳେ ରେଭେନ୍‌ସା କଲେଜ ଇଷ୍ଟ ହଷ୍ଟେଲରେ ଏବଂ ଏମ୍.ଏ. ପଢ଼ିବାବେଳେ ରାଣୀହାଟ ପୋଷ୍ଟ ଗ୍ରାଜୁଏଟ୍ ହଷ୍ଟେଲରେ ଆମେ ଦୁଇଜଣ ଏକାଠି ରହୁଥିଲୁ । ଏମ୍.ଏ.ରେ କିନ୍ତୁ ସେ ତୃତୀୟ ଶ୍ରେଣୀରେ ପାସ୍ କଲା । ତା'ପରେ ବହୁବର୍ଷ କୋଅପରେଟିଭ୍ ମାର୍କେଟିଂ ବିଭାଗରେ ଚାକିରି କରି ଅବସର ଗ୍ରହଣ ପରେ ତାଙ୍କ ନିଜ ଗାଁ କେନ୍ଦ୍ରାପଡ଼ାର ବାଲିଆ ଗାଁରେ ରହୁଥିଲା । ପ୍ରାୟ ଆଠବର୍ଷ ତଳେ ତାର ଦେହାନ୍ତ ହୋଇଛି । ଜୀବନଯାକ ସେ ମୋର ଅତି ଅନ୍ତରଙ୍ଗ ବନ୍ଧୁ ଥିଲା ।

ଗୋପୀନାଥ ଦାଶ ରେଭେନ୍ସା କଲେଜର ସଂସ୍କୃତ ପ୍ରଫେସର କାଶୀନାଥ ଦାଶଙ୍କ ସାନପୁଅ । କାଶୀବାବୁ ତାକୁ ଅତି ଭଲ ପାଉଥିଲେ । ତାର ବୟସ ମୋ'ଠାରୁ ଦୁଇ ତିନି ବର୍ଷ କମ୍ ଥିଲା । ବଡ଼ଲୋକର ପିଲା ଭାବରେ ସେ ଧଳା ଅଧାପ୍ୟାଣ୍ଟ, ସାର୍ଟ ଓ କାନଭାସ୍ ଜୋତା ପିନ୍ଧି ସ୍କୁଲ ଆସୁଥିଲା । ମୁଁ ଗାଁରୁ ଆସି ମେସ୍‌ରେ ଥିଲି । ସବୁଦିନେ ସାଧାରଣ

ଧୋତି ଓ କାମିଜ ପିନ୍ଧୁଥିଲି । ଗୋଡ଼ରେ ମୋର ଚପଲ୍ କିମ୍ବା ଜୋତା କିଛି ନ ଥିଲା । ତଥାପି ଅଷ୍ଟମ ଶ୍ରେଣୀରୁ ତା ସାଙ୍ଗରେ ମୋର ଘନିଷ୍ଠ ବନ୍ଧୁତା ହୋଇଥିଲା । ସ୍କୁଲର ଅଷ୍ଟମ ଶ୍ରେଣୀରୁ କଲେଜର ବି.ଏ. କ୍ଲାସ ଶେଷ ପର୍ଯ୍ୟନ୍ତ ଆମେ ଦୁଇଜଣ ଗୋଟିଏ ବେଞ୍ଚରେ ଲଗାଲଗି ହୋଇ ବସୁଥିଲୁ । ବି.ଏ.ରେ ସେ ଇତିହାସ ଅନର୍ସ ନେଇଥିଲେ ଏବଂ ବି.ଏ. ପରେ ଆଲାହାବାଦ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାସ୍ କରିଥିଲେ । ଏମ୍.ଏ. ପରେ ସେ ଆମ ସଙ୍ଗରେ ସରକାରୀ କଲେଜ ଲେକ୍‌ଚରର ରୂପେ ନିଯୁକ୍ତ ହୋଇଥିଲେ । ମାତ୍ର ଚାକିରି ନ କରି ଗବେଷଣା କରିବାକୁ ସ୍ଥିର କରିଥିଲେ । ଆଜିଯାଏ ସୁଦ୍ଧା ସେ ଜଣେ ଖ୍ୟାତନାମା ଲେଖକ ଓ ଗବେଷକ ରୂପେ କାମ କରୁଛନ୍ତି । ତାଙ୍କ ସହିତ ମୋର ବନ୍ଧୁତ୍ୱ ଅକ୍ଷୁଣ୍ଣ ଅଛି ।

ମହେଶ୍ୱର ମାଟ୍ରିକ୍ୟୁଲେସନ୍ ପରେ କଲେଜରେ ପଢ଼ିପାରିଲା ନାହିଁ । ତା'ପରେ ସେକ୍ରେଟାରିଆଟ୍‌ରେ ଚାକରି କଲା । ଅନେକ ବର୍ଷ ସେ ଶିକ୍ଷାମନ୍ତ୍ରୀଙ୍କ ଆସିଷ୍ଟାଣ୍ଟ୍ ହୋଇ କାର୍ଯ୍ୟ କରୁଥିଲା । ସେ ମୋଠାରୁ ଏକ ବର୍ଷ ବଡ଼ । ବର୍ତ୍ତମାନ ଭୁବନେଶ୍ୱରରେ ପରିବାର ସହ ରହୁଛି । ତା ସହିତ ମୋର ବନ୍ଧୁତା ଅତୁଟ ରହିଛି ।

ଶ୍ରୀରାମ ବାଲିକୁଦା ମାଇନର ସ୍କୁଲରୁ ବୃତ୍ତି ପାଇ କଲେଜିଏଟ୍ ସ୍କୁଲକୁ ଆସିଥିଲା । ତାଙ୍କ ଗାଁ ମାଛଗାଁ ଓଡିନ୍ଦା, ଆମ ଗାଁଠାରୁ ବାରମାଇଲ ଦୂରରେ ଥିଲା । ତାଙ୍କ କୁଟୁମ୍ବରେ ଆମ ସାହି ଲୋକଙ୍କର କେତେକ ବନ୍ଧୁ ଘର ଥିଲେ । ପରେ ତାର ଭଉଣୀ ମୋର ଜଣେ ଭଣଜାକୁ ବିବାହ କରିଥିଲା । ମାତ୍ର ମୁଁ ତାଙ୍କ ଗାଁ ଦେଖି ନାହିଁ କିମ୍ବା କଲେଜିଏଟ୍ ସ୍କୁଲକୁ ଆସିବା ପୂର୍ବରୁ ମୁଁ ତାକୁ ଚିହ୍ନି ନ ଥିଲି । ମୂଳରୁ ଜାଣିଲି ଯେ ତା ସ୍ୱଭାବ ମୋ ସ୍ୱଭାବଠାରୁ ସଂପୂର୍ଣ୍ଣ ଭିନ୍ନ । ଅଷ୍ଟମ ଶ୍ରେଣୀରେ ତାହା ସହିତ ମୋର ବନ୍ଧୁତା ନ ଥିଲା । ସେ କାଠଯୋଡ଼ି ହଷ୍ଟେଲରେ ରହୁଥିଲା । ମୁଁ ଗଙ୍ଗାମନ୍ଦିରରେ ଗୋଟିଏ ମେସ୍‌ରେ ରହୁଥିଲି । କେବଳ ସ୍କୁଲରେ ଦେଖାହୁଏ ଏବଂ କଥାବାର୍ତ୍ତା ହୁଏ । ସ୍କୁଲ ପ୍ରବେଶର ମାସେ ଦୁଇମାସ ଭିତରେ ଜାଣିଲି ଯେ ଏ ପିଲା ଭଲ ପଢ଼େ ମାତ୍ର ତାର ବ୍ୟବହାର ବିଚିତ୍ର ପ୍ରକାରର । ତିନିବର୍ଷ କାଳ ପଢ଼ାପଢ଼ି ବ୍ୟତୀତ ମୁଁ ତା ବିଷୟରେ କିଛି ଜାଣି ନ ଥିଲି ଏବଂ ମୁଁ ଦୂରରେ ରହୁଥିବାରୁ ତା ସହିତ ମୋର ବନ୍ଧୁତା ବା ଶତ୍ରୁତା ନ ଥିଲା । ତାଙ୍କ ଗାଁ ଜଗତ୍‌ସିଂହପୁର ବସ୍‌ଷ୍ଟାଣ୍ଡରୁ ପ୍ରାୟ ଷୋହଳ ମାଇଲ ଦୂର ଥିଲା । ଅନେକଥର ଛୁଟି ପରେ କଟକ ଆସିବା ସମୟରେ ସେ ଆମ ଗାଁରେ ତାଙ୍କର ଜଣେ ବନ୍ଧୁଘରେ ରାତିରେ ରହିଯାଏ । ଦ୍ୱିତୀୟ ଦିନ ଆମେ ଦୁହେଁ ଜଗତ୍‌ସିଂହପୁରଠାରେ ବସ୍ ଚଢ଼ି କଟକ ଆସୁ । ସେ ସମୟରେ ମଧ୍ୟ ସେ କେତେଥର ଆମ ଘରେ ଖାଇଥିଲା ।

ସ୍କୁଲରେ ପାଞ୍ଚମାସ ପଢ଼ିବା ପରେ ପ୍ରଥମ ଷାଣ୍ମାସିକ ପରୀକ୍ଷାରେ ଉଭୟ ଚତୁର୍ଥ ହୋଇଥିଲୁ । ପରେ ନବମ ଶ୍ରେଣୀର ଦୁଇ ପରୀକ୍ଷା ଏବଂ ଦଶମ ଶ୍ରେଣୀର ପ୍ରଥମ ପରୀକ୍ଷାରେ ମୁଁ ତା'ଠାରୁ ଅଧିକ ନମ୍ବର ରଖିଥିଲି ମାତ୍ର ଦଶମ ଶ୍ରେଣୀର ଦ୍ୱିତୀୟ ଏବଂ ଏକାଦଶ ଶ୍ରେଣୀର ପ୍ରଥମ ପରୀକ୍ଷାରେ ସେ ମୋଠାରୁ ଅଧିକ ନମ୍ବର ରଖିଥିଲା ।

ସେତେବେଳକୁ ଆମ ଦୁହିଁଙ୍କ ମଧ୍ୟରେ ପଢ଼ାରେ ପ୍ରତିଯୋଗିତା ଲାଗିଗଲାଣି । ଦଶମ ଶ୍ରେଣୀ ଶେଷ ବେଳକୁ ମୁଁ ଯୋବ୍ରାରୁ ଆସି କାଠଯୋଡ଼ି ହଷ୍ଟେଲରେ ରହିଲି । ସେ ହଷ୍ଟେଲରେ ସେ ଅଷ୍ଟମ ଶ୍ରେଣୀରୁ ଥିଲା । ହଷ୍ଟେଲରେ ରହିବା ପରେ ମୁଁ ତାର ଚାଲିଚଳଣି ଏବଂ ପଢ଼ାର ରୀତି ଜାଣିଲି । ଏକାଦଶ ଶ୍ରେଣୀ ଶେଷ ବେଳକୁ ତାର ଦେହ ଖରାପ ହୋଇଗଲା ଏବଂ ସେ ଗାଁକୁ ଚାଲିଗଲା । ସେ ଟେଷ୍ଟ ପରୀକ୍ଷା ଦେଇପାରି ନ ଥିଲା । ମୁଁ ସେଥିରେ ପ୍ରଥମ ହୋଇଥିଲି । ମାଟ୍ରିକ୍ ପରୀକ୍ଷା ପୂର୍ବରୁ ସେ କଟକ ଆସିଲା, ମାତ୍ର ତାର ଦେହ ଖରାପ ହେତୁ ହଷ୍ଟେଲରେ ରହିପାରି ନ ଥିଲା । ତଥାପି ସେ ହଷ୍ଟେଲକୁ ଆସୁଥାଏ । ଆମେ ସମସ୍ତେ ମିଶି ଟେଷ୍ଟ ପେପରରୁ ଅଙ୍କ କଷୁଥିଲୁ । ତାର ଦେହ ଖରାପ ହେତୁ ଆମେ ସମସ୍ତେ ଦୁଃଖିତ ହୋଇଥିଲୁ । ୧୯୩୬ ମସିହା ଫେବୃଆରୀରେ ମାଟ୍ରିକ ପରୀକ୍ଷା ହେଲା । ଅପ୍ରେଲ ମାସ ଶେଷ ବେଳକୁ ଫଳ ବାହାରିବାରୁ ଆମେ ଜାଣିଲୁ ଯେ ସେ ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇଛି ଏବଂ ମୁଁ ପ୍ରଥମ ପାଞ୍ଚଜଣଙ୍କ ମଧ୍ୟରେ ସ୍ଥାନ ପାଇ ନାହିଁ । ମୋର ସ୍ଥାନ କେତେ ହୋଇଥିଲା ମୁଁ ଜାଣି ନାହିଁ । ସେତେବେଳେ କେବଳ ପ୍ରଥମ ପାଞ୍ଚଜଣଙ୍କ ନାମ ବାହାରୁଥିଲା ଏବଂ ସେମାନେ ପ୍ରାଦେଶିକ ସ୍କଲାରସିପ୍ ମାସକୁ କୋଡ଼ିଏ ଟଙ୍କା ଲେଖାଏଁ ପାଉଥିଲେ । ମୁଁ ପ୍ରଥମ ଶ୍ରେଣୀରେ ଉଚ୍ଚ ନମ୍ବର ରଖି ପାସ୍ କରିଥିଲି ଏବଂ ଓଡ଼ିଶା ଡିଭିଜନାଲ୍ ସ୍କଲାରସିପ୍ ମାସକୁ ପନ୍ଦର ଟଙ୍କା ଲେଖାଏଁ ପାଇଥିଲି ।

ତା'ପରେ ଉଭୟେ ରେଭେନ୍ସା କଲେଜରେ ପଢ଼ିଲୁ । ଉଭୟେ ମାଥମେଟିକ୍ସ, ଲଜିକ୍ ଓ ସଂସ୍କୃତ ଗ୍ରୁପ୍ ନେଇଥିଲୁ । ଶ୍ରୀରାମ ପ୍ରଥମ ବର୍ଷରେ କେତେ ମାସ ହଷ୍ଟେଲରେ ରହିପାରି ନ ଥିଲା । ପରେ ପ୍ରିନ୍ସପାଲ ଇଷ୍ଟ ହଷ୍ଟେଲରେ ତା ପାଇଁ ଗୋଟିଏ ସ୍ୱତନ୍ତ୍ର ରୁମ୍ ବରାଦ କରିଥିଲେ । ମୁଁ ମଧ୍ୟ ପ୍ରଥମ ବର୍ଷରେ ପୂଜାଛୁଟି ପର୍ଯ୍ୟନ୍ତ ହଷ୍ଟେଲରେ ଟଙ୍କାପଇସା ଅସୁବିଧା ହେତୁ ରହିପାରି ନ ଥିଲି । ପୂଜାଛୁଟି ପରେ ସେହି ଇଷ୍ଟ ହଷ୍ଟେଲରେ ରହିଲି । ଆଇ.ଏ. ପରୀକ୍ଷାରେ ସେ ବିଶ୍ୱବିଦ୍ୟାଳୟରେ ପ୍ରଥମ ଓ ମୁଁ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲୁ । ସେତେବେଳେ ଆମ ଦୁହିଁଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଥିଲା ଏବଂ ଆମେ କଲେଜରେ ଜଣାଶୁଣା ପିଲା ଥିଲୁ । ବି.ଏ.ରେ ଉଭୟ ଅର୍ଥନୀତି ଅନର୍ସ ନେଲୁ । ସେ ଓ୍ୱେଷ୍ଟହଷ୍ଟେଲରେ ରହିଲା । ମୁଁ ପୂର୍ବପରି ସେହି ଇଷ୍ଟ ହଷ୍ଟେଲରେ ରହୁଥାଏ । ବି.ଏ. ପଢ଼ିବାବେଳେ ନାନା କାରଣରୁ ତାର ଅନ୍ୟ ପିଲାମାନଙ୍କ ସହିତ କଳହ ଲାଗିଯାଉଥିଲା । ଯେଉଁମାନଙ୍କ ସହିତ ତାର କଳହ ହେଲା ସେମାନେ ମୋତେ ପ୍ରଶଂସା କଲେ । ଫଳରେ ତାର ଓ ମୋର ମନୋମାଳିନ୍ୟ ହେଉଥିଲା । ବି.ଏ. ପରୀକ୍ଷାରେ ପରୀକ୍ଷା ବର୍ଜନ ଗଣ୍ଡଗୋଳ ହେତୁ ସେ ବିଶ୍ୱବିଦ୍ୟାଳୟର ଦ୍ୱିତୀୟ ଶ୍ରେଣୀରେ ଦ୍ୱିତୀୟ ଏବଂ ମୁଁ ଦ୍ୱିତୀୟ ଶ୍ରେଣୀରେ ପଞ୍ଚମ ହୋଇଗଲି । ବିଶ୍ୱବିଦ୍ୟାଳୟରେ ସେ ବର୍ଷ ଅର୍ଥନୀତି ଅନର୍ସରେ କେହି ପ୍ରଥମ ଶ୍ରେଣୀରେ ପାସ୍ କରି ନ ଥିଲେ । ତା'ପରେ ଉଭୟେ ପାଟନା କଲେଜରେ ଅର୍ଥନୀତିରେ ଏମ୍.ଏ. ପଢ଼ିଲୁ ଏବଂ ରାଣୀହାଟ ପୋଷ୍ଟଗ୍ରାଜୁଏଟ୍ ହଷ୍ଟେଲରେ ରହିଥିଲୁ । ୧୯୪୨ ମସିହା ଅର୍ଥନୀତି ଏମ୍.ଏ. ପରୀକ୍ଷାରେ ମୁଁ ପ୍ରଥମ ଶ୍ରେଣୀର ପ୍ରଥମ ସ୍ଥାନ

ଅଧିକାର କରି ସ୍ୱର୍ଣ୍ଣପଦକ ପାଇଥିଲି । ସେ ପ୍ରଥମ ଶ୍ରେଣୀରେ ତୃତୀୟ ସ୍ଥାନ ଅଧିକାର କରିଥିଲା । ରେଭେନ୍ସା କଲେଜ ତୃତୀୟ ବାର୍ଷିକ ଶ୍ରେଣୀରୁ ଉଭୟଙ୍କ ମଧ୍ୟରେ ମନୋମାଳିନ୍ୟ ଥାଏ ମାତ୍ର ପ୍ରକାଶ୍ୟ କଳହ ହେଉ ନ ଥିଲା ।

ପରବର୍ତ୍ତୀ ଜୀବନରେ ଯଦି ଆମେ ବିଭିନ୍ନ ବିଭାଗରେ ଚାକିରି କରିଥାନ୍ତୁ ସେ ମନୋମାଳିନ୍ୟ ଉଭେଇ ଯାଇଥାନ୍ତା । ମାତ୍ର ଘଟଣାଚକ୍ରରେ ଉଭୟେ ପ୍ରାୟ ଏକବର୍ଷ ସପ୍ଲାଇ ବିଭାଗରେ ଚାକିରି କରି କଲେଜ ଲେକ୍‌ଚରର ହେଲୁ ଏବଂ ପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଚାକିରି କଲୁ । ଉଭୟେ ସିନେଟ୍, ସିଣ୍ଡିକେଟ୍ ଏବଂ ଏକାଡେମିକ୍ କାଉନ୍‌ସିଲ୍‌ରେ ବହୁକାଳ ସଭ୍ୟ ହେଲୁ । ପୂର୍ବର ପ୍ରତିଯୋଗିତା ନାନା ବିଷୟରେ ମତଭେଦ ହେତୁ କଳହରେ ପରିଣତ ହେଲା । ତଥାପି ତାହାର ବିଶ୍ୱବିଦ୍ୟାଳୟରୁ ବାଧ୍ୟତାମୂଳକ ଅବସର ଗ୍ରହଣ ମୁଁ କେବେ ଚାହିଁ ନ ଥିଲି । ଆମ ଦୁହିଁଙ୍କ ମଧ୍ୟରେ ପ୍ରତିଯୋଗିତା ଏବଂ ମତଭେଦ ମଧ୍ୟରେ ଡେୟାଳିଶ ବର୍ଷ କଟି ଯାଇଥିଲା । ଆଉ ତିନିବର୍ଷ ସେହିପରି ସ୍ୱଚ୍ଛନ୍ଦରେ କଟି ଯାଇଥାନ୍ତା । ଆମ ଦୁଇଜଣଙ୍କ ନାମ ସର୍ବଦା ଯୋଡ଼ି ହୋଇଥିଲା । ତାର ଦେହାନ୍ତରେ ମୁଁ ଶୂନ୍ୟସ୍ଥାନ ଅନୁଭବ କରୁଛି । ୧୯୩୨ ମସିହାରୁ ୧୯୯୪ ମସିହା ପର୍ଯ୍ୟନ୍ତ ବାଆଷଠି ବର୍ଷ ମଧ୍ୟରେ ତାହାର ଏବଂ ମୋ ମଧ୍ୟରେ ଥିବା ଭାବ ବିଶ୍ଳେଷଣ କରି ମୁଁ ଦେଖୁଛି ଯେ ତାହା ବନ୍ଧୁତା, ସହାନୁଭୂତି, ପ୍ରତିଯୋଗିତା, ଈର୍ଷା ଏବଂ ଘୃଣାର ସମ୍ମିଶ୍ରଣ ଥିଲା । ଅନେକ କାର୍ଯ୍ୟ ଆମେ ସହଯୋଗ କରି କରୁଥିଲୁ । ଆଉ ଅନେକ କାର୍ଯ୍ୟରେ ଆମ ମଧ୍ୟରେ ତୀବ୍ର ମତଭେଦ ଥିଲା । ସେ ଅତି ପ୍ରତିଭାଶାଳୀ ବ୍ୟକ୍ତି ଥିଲା ଏବଂ ତାର ସ୍ମୃତିଶକ୍ତି ପ୍ରଖର ଥିଲା । ମାତ୍ର ତାର ଚରିତ୍ରରେ ବହୁ ଭଲ ଓ ମନ୍ଦ ଗୁଣର ସମ୍ମିଶ୍ରଣ ହୋଇଥିଲା । ସର୍ବଦା ବିନୟହୀନ ଭାବରେ ନିଜର ଉତ୍କର୍ଷ ପ୍ରତିପାଦନ କରି ଏବଂ ଅନ୍ୟମାନଙ୍କୁ କର୍କଶ ଭାଷାରେ ଗାଳିଦେଇ ସେ ବହୁଲୋକଙ୍କର ଅପ୍ରିୟପାତ୍ର ହୋଇଥିଲା । ଅନ୍ୟ ଦିଗରେ ତାର ଲେଖା ଓ ବକ୍ତୃତା ଯୋଗୁଁ ସେ ବହୁ ଲୋକଙ୍କର ପ୍ରଶଂସାଭାଜନ ହୋଇଥିଲା ।

ରେଭେନ୍ସା କଲେଜିଏଟ୍ ସ୍କୁଲରେ ପଢୁଥିବା ସମୟରେ ଆମ ଶ୍ରେଣୀର ପିଲାମାନଙ୍କ ବ୍ୟତୀତ ଅନେକ ଅନ୍ୟ ଶ୍ରେଣୀର ପିଲାମାନଙ୍କ ସହିତ ମୋର ପରିଚୟ ହୋଇଥିଲା । ଆମେ ଅଷ୍ଟମ ଶ୍ରେଣୀରେ ପଢୁଥିବାବେଳେ ବିଜୁ ପଟ୍ଟନାୟକ ସେହି ସ୍କୁଲରେ ଏକାଦଶ ଶ୍ରେଣୀରେ ପଢୁଥିଲେ । ତାଙ୍କ ସହିତ ମୋର ପରିଚୟ ନ ଥିଲା । ମାତ୍ର ସେ ଭଲ ଫୁଟ୍‌ବଲ ଖେଳୁଥିଲେ ଏବଂ ସ୍କୁଲ ସ୍ପୋର୍ଟସ୍‌ରେ ଚମ୍ପିଅନ୍ ହୋଇଥିଲେ । ସେ ବର୍ଷ ଗଣେଶ ଓ ସରସ୍ୱତୀ ପୂଜାବେଳେ ଆମଠାରୁ ଚାନ୍ଦା ଆଦାୟ କରିଥିଲେ । ଆମ ଶ୍ରେଣୀର ପିଲାମାନେ ତାଙ୍କୁ ଜଣେ ମାତବର ପିଲା ବୋଲି କହୁଥିଲେ । ମାତବର ଶବ୍ଦର ଅର୍ଥ ମୁଁ ପରେ ଅଭିଧାନରୁ ଦେଖିଛି । ତାର ଅର୍ଥ ମୁରବି, ପ୍ରଧାନ ବା ଆସ୍ଥାଭାଜନ ବ୍ୟକ୍ତି ଲେଖା ହୋଇଛି । ସେ ଅର୍ଥରେ ଆମ ପିଲାମାନେ ସେ ଶବ୍ଦ ବ୍ୟବହାର କରୁଥିଲେ । ପରବର୍ତ୍ତୀ କାଳରେ ତାଙ୍କର ସେହି ଗୁଣର ଯଥାର୍ଥତା ଆମେ ଅନଭବ କରିଛୁ ।

ସେହିବର୍ଷ ଏକାଦଶ ଶ୍ରେଣୀରେ ସମାଜ ସମ୍ପାଦକ ଡକ୍ଟର ରାଧାନାଥ ରଥଙ୍କ ସାନଭାଇ ବିଶ୍ୱନାଥ ରଥ ପଢୁଥିଲେ । ସେ ଅତି ମେଧାବୀ ଛାତ୍ର ଥିଲେ ଏବଂ ତାଙ୍କ ଶ୍ରେଣୀରେ ପଢ଼ାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ତାଙ୍କ ବର୍ଷ ମାଟ୍ରିକୁଲେସନ୍ ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ପଞ୍ଚମ ସ୍ଥାନ ଅଧିକାର କରି ପ୍ରାଦେଶିକ ବୃତ୍ତି ପାଇଥିଲେ । ପରେ ସେ ରେଭେନ୍ସା କଲେଜରୁ ଇଂରାଜୀରେ ଏମ୍.ଏ. ପାସ କରି ବହୁବର୍ଷ କେନ୍ଦ୍ର ସରକାର ଅଧୀନରେ ଚାକିରି କରିଥିଲେ । ତାଙ୍କ ସହିତ ମୋର ସ୍କୁଲ ସ୍ତରରୁ ପରିଚୟ ଥିଲା ।

ଆମେ ଅଷ୍ଟମ ଶ୍ରେଣୀରେ ପଢୁଥିବାବେଳେ ମନମୋହନ ମିଶ୍ର ଦଶମ ଶ୍ରେଣୀରେ ପଢୁଥିଲେ । ସେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଡିଭିଜନାଲ ସ୍କଲାରସିପ୍ ପାଇ ରେଭେନ୍ସା କଲେଜରେ ପଢ଼ିଥିଲେ । ପରବର୍ତ୍ତୀ କାଳରେ ସେ ଜଣେ ରାଜନୀତିଜ୍ଞ, ଶ୍ରମିକ ନେତା ଓ କବି ହୋଇଥିଲେ ଏବଂ କେତେବର୍ଷ କଟକ ମ୍ୟୁନିସିପାଲିଟିର ଚେୟାରମ୍ୟାନ ହୋଇଥିଲେ । ତାଙ୍କ ସହିତ ମଧ ମୋର ସ୍କୁଲ ସ୍ତରରୁ ପରିଚୟ ଥିଲା ।

ସ୍କୁଲର ଆମ ଶ୍ରେଣୀରେ ପଢୁଥିବା ପିଲାମାନଙ୍କ ମଧ୍ୟରୁ ଆମେ କେତେଜଣ ପରବର୍ତ୍ତୀ କାଳରେ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ଓ କୁଳପତି ପର୍ଯ୍ୟନ୍ତ ଉଠିଥିଲୁ ଏବଂ ଆଉ କେତେଜଣ ସ୍ୱାସ୍ଥ୍ୟବିଭାଗର ଡିରେକ୍ଟର ପ୍ରଭୃତି ଉଚ୍ଚ ସରକାରୀ ପଦକୁ ଉଠିଥିଲେ । ସେ ସ୍କୁଲରେ ପଢୁଥିବା ବେଳେ କଟକର ପ୍ୟାରୀମୋହନ ଏକାଡେମି ଓ ଭିକ୍ଟୋରିଆ ହାଇସ୍କୁଲର କେତେକ ମେଧାବୀ ଛାତ୍ରଙ୍କ ସହିତ ମଧ ମୋର ପରିଚୟ ହୋଇଥିଲା । କାଠଯୋଡ଼ି ହଷ୍ଟେଲରେ ସେ ସମୟରେ କଟକର ସବୁ ହାଇସ୍କୁଲର ପିଲାମାନେ ରହି ପାରୁଥିଲେ । ବିଭିନ୍ନ ମେସ୍‌ମାନଙ୍କରେ ରହିବା ସମୟରେ ମଧ ମୁଁ ଅନ୍ୟ ସ୍କୁଲମାନଙ୍କର ପିଲାମାନଙ୍କ ସମ୍ପର୍କରେ ଆସିଥିଲି ।

ମୋଟାମୋଟି ଭାବରେ କଲେଜିଏଟ୍ ସ୍କୁଲରେ ଚାରିବର୍ଷ ମୁଁ ବହୁ କଷ୍ଟ ସହି ପଢ଼ିଥିଲି । ମାତ୍ର ସେ ସମୟରେ ସ୍କୁଲରେ ଶାନ୍ତିପୂର୍ଣ୍ଣ ଓ ଶୃଙ୍ଖଳିତ ଭାବରେ ପଢ଼ାପଢ଼ି ହେଉଥିଲା ଏବଂ ସେଥିରେ ବହୁ ଦକ୍ଷ ଶିକ୍ଷକ ଏବଂ ବିଶ୍ୱମ୍ଭର ମିଶ୍ର ଓ ପଣ୍ଡିତ କୁଳମଣି ଦାଶଙ୍କ ପରି ଆଦର୍ଶ ଗୁରୁ ଥିଲେ । ସ୍କୁଲରେ ପଢୁଥିବାବେଳେ ମୋର ବନ୍ଧୁ ଓ ପରିଚିତ ବ୍ୟକ୍ତିଙ୍କ ପରିସର ପ୍ରସାରିତ ହୋଇଥିଲା । ଶେଷ ପରୀକ୍ଷାରେ ମୋର ଆଶାନୁରୂପ ଫଳ ହୋଇ ନ ଥିଲେ ମଧ ପ୍ରଥମ ଶ୍ରେଣୀରେ ପାସ୍ କରି ଡିଭିଜନାଲ୍ ସ୍କଲାରସିପ୍ ପାଇବାରୁ ମୋର କଲେଜରେ ଉଚ୍ଚଶିକ୍ଷା ପାଇବାର ପଥ ସୁଗମ ହୋଇଥିଲା ।

# ରେଭେନ୍ସା କଲେଜ

ମାଟ୍ରିକ୍ୟୁଲେସନ ପରୀକ୍ଷା ପ୍ରଥମ ଶ୍ରେଣୀରେ ପାସ୍ କରିବା ପରେ ମୁଁ କଲେଜରେ ପଢ଼ିବାକୁ ଉଦ୍ୟମ କଲି । ସେତେବେଳେ ରେଭେନ୍ସା କଲେଜ ଓଡ଼ିଶା ଡିଭିଜନରେ ଏକମାତ୍ର କଲେଜ ଥିଲା ଏବଂ ତାହା ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । କଲେଜରେ ପଢ଼ିବାକୁ ଇଚ୍ଛା କରୁଥିବା ପ୍ରାୟ ସବୁ ଓଡ଼ିଆ ପିଲା ସେହି କଲେଜରେ ପଢୁଥିଲେ । ସେତେବେଳେ ସବୁ ଜିନିଷପତ୍ର ଶସ୍ତା ଥିଲା । ହଷ୍ଟେଲରେ ରହି ଜଣେ ପିଲା କଲେଜରେ ପଢ଼ିବାକୁ ସର୍ବନିମ୍ନ ମାସକୁ ପଚିଶ ଟଙ୍କା ଆବଶ୍ୟକ ହେଉଥିଲା । ମୋର ମାସକୁ ପନ୍ଦର ଟଙ୍କା ସ୍କଲାରସିପ୍ ମିଳିବାର ଥିଲା । ତାହା ପରେ ଆଉ ମାସକୁ ଆଠ ନଅଟଙ୍କା ଦରକାର ଥିଲା । ସେତେବେଳେ ମୋର ନନା ଓ ଦଦେଇ ଉଭୟ ବୁଢ଼ା ହୋଇଯାଇଥିବାରୁ, ମୋର ମଝିଆଁଭାଇ ଆମ ଘରର ଜମିବାଡ଼ି ଓ ଖର୍ଚ୍ଚବାର୍ଚ୍ଚ ପରିଚାଳନା କରୁଥିଲେ । ସେ ମୋତେ ଆଉ ଉପରକୁ ନ ପଢ଼ି ଖଣ୍ଡିଏ ଚାକିରି କରିବାକୁ ପରାମର୍ଶ ଦେଲେ । ବୋଉ ପାଖରେ ମଧ୍ୟ ଟଙ୍କା ନ ଥିଲା । ସେ ନୀରବ ଥିଲା । କିନ୍ତୁ ତା ମନରେ ଥିଲା ଯେ ପିଲାଟା ଭଲ ପଢୁଛି । କଲେଜରେ ପଢ଼ିଲେ ଭଲ ହୁଅନ୍ତା । ମୋର ସେତେବେଳକୁ ଟିକିଏ ଆତ୍ମପ୍ରତ୍ୟୟ ହୋଇ ଯାଇଥିଲା । ମୁଁ ଭାବିଲି ସ୍କଲାରସିପ୍ ଟଙ୍କା ପରେ ଆଉ ଆଠ ନଅ ଟଙ୍କା ମୁଁ ଟ୍ୟୁସନ କରି ଯୋଗାଡ଼ କରିପାରିବି । ତେଣୁ ମୁଁ ଭାଇନାଙ୍କ କଥା ମାନିଲି ନାହିଁ । ସେ ସମୟର ପାଞ୍ଚ ବର୍ଷ ଆଗରୁ ମୋର ବିବାହ ହୋଇଥିଲା । ସେତେବେଳେ ଶଶୁରଘରୁ ପାଇଥିବା ଗୋଟାଏ ସୁନାମୁଦି ଓ ବେଙ୍କର ଗୋଟାଏ ଗୋପ ବୋଉ ପାଖରେ ଥିଲା । ସୁନା ଭରି ସେତେବେଳେ ମୋଟେ ୩୫ ଟଙ୍କା ଥିଲା । ମୁଁ ସେହି ଦୁଇଟାକୁ ବିକି ପ୍ରାୟ ପଚାଶ ଟଙ୍କା ନାମ ଲେଖାଇବା ପାଇଁ ଯୋଗାଡ଼ କଲି ଏବଂ କଲେଜରେ ନାମ ଲେଖାଇଲି । ନାମ ଲେଖାଇବା ବେଳକୁ ସ୍କଲାରସିପ୍ ଟଙ୍କା ମିଳି ନ ଥିଲା । ତେଣୁ ପ୍ରଥମ ତିନିମାସ ମୁଁ ହଷ୍ଟେଲରେ ରହି ପାରି ନ ଥିଲି ।

ସେତେବେଳକୁ ମୁଁ ସ୍କୁଲରେ ପଢୁଥିବା ସମୟରେ କାଜିବଜାର ଛକରେ ଯେଉଁ ମେସ୍‌ରେ ଥିଲି, ତାହା ଭାଙ୍ଗିଯାଇଥିଲା । ସେହି ଘରଟାରେ ମୋର ପରମ ହିତାକାଂକ୍ଷୀ କୃପାସିନ୍ଧୁ ମିଶ୍ର ପରିବାର ସହ ରହୁଥିଲେ । ମୁଁ ତାଙ୍କୁ ମାସକୁ ଖାଇବା ଖର୍ଚ୍ଚ ମାତ୍ର ସାତଟଙ୍କା ଦେଇ ସେହି ଘରେ ଥିବା ଗୋଟିଏ ଛୋଟ କୋଠରିରେ ତାଙ୍କ ପରିବାରର ଜଣେ ପିଲା ଭାବରେ ରହିଲି । ସେତେବେଳକୁ ମୋର ଗୋଟିଏ ସାଇକେଲ୍ ଥିଲା । ସୁତରାଂ କାଜିବଜାରରୁ କଲେଜକୁ ଯିବାଆସିବା କରିବାକୁ ବିଶେଷ ଅସୁବିଧା ହେଲା ନାହିଁ । ସେହି ଅବସ୍ଥାରେ ପୂଜାଛୁଟି ପର୍ଯ୍ୟନ୍ତ ପ୍ରାୟ ତିନିମାସ ରହିଥିଲି । ପୂଜାଛୁଟି ପରେ ସ୍କଲାରସିପ୍

ଟଙ୍କା ମିଳିଯିବାରୁ ମୁଁ ହଷ୍ଟେଲରେ ରହିବାକୁ ଗଲି । ପ୍ରଥମେ କଲେଜର ପଶ୍ଚିମ ଛାତ୍ରାବାସରେ ରହିବାକୁ ଚେଷ୍ଟା କଲି । ମାତ୍ର ସେଥିରେ ସ୍ଥାନ ନ ଥିବାରୁ ପୂର୍ବ ଛାତ୍ରାବାସରେ ରହିଲି । ହଷ୍ଟେଲରେ ରହି କଲେଜରେ ପଢ଼ିବା ଖର୍ଚ୍ଚ ତେଇଶି ଟଙ୍କା ଭିତରେ ରଖିବାକୁ ଚେଷ୍ଟା କଲି । ଭାଇନା ବୋଉଠାରୁ ଆଣି ମାସକୁ ପ୍ରାୟ ପାଞ୍ଚ ଛଅ ଟଙ୍କା ପଠାଉଥିଲେ । କଲେଜ ସୋସିଆଲ୍ ସର୍ଭିସ୍ ଗିଲଡ୍‌ରୁ ମାସକୁ ପ୍ରାୟ ତିନି ଟଙ୍କା ଆଠମାସ ପାଇଁ ମିଳିଗଲା । ସେଥିଯୋଗୁଁ ଆଉ ଟ୍ୟୁସନ କରିବାକୁ ପଡ଼ିଲା ନାହିଁ । ସୋସିଆଲ ସର୍ଭିସ୍ ଗିଲଡ୍‌ରୁ ସେତେବେଳେ ଯେଉଁ ୨୪ ଟଙ୍କା ପାଇଥିଲି, ଚାକିରି କଲା ପରେ ମୁଁ ତାହା ପରିଶୋଧ କରିଥିଲି ।

କଲେଜରେ ପ୍ରଥମେ ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇବାକୁ ଇଚ୍ଛା କରିଥିଲି, କାରଣ ପିଲାଦିନୁ ଗଣିତ ମୋର ପ୍ରିୟ ବିଷୟ ଥିଲା । ମାତ୍ର ପ୍ରଥମେ ହଷ୍ଟେଲରେ ରହିପାରି ନ ଥିବାରୁ ଏବଂ କେତେକ ଉପରଶ୍ରେଣୀର ପିଲାଙ୍କ ପରାମର୍ଶରେ ମାଥିମେଟିକ୍‌ସ, ଲଜିକ୍ ଓ ସଂସ୍କୃତ ଗ୍ରୁପ୍ ବିଷୟ ନେଇ ପ୍ରଥମ ବାର୍ଷିକ କଳା ଶ୍ରେଣୀରେ ନାମ ଲେଖାଇଥିଲି । କଲେଜର କୋଠାବାଡ଼ି, ଖେଳପଡ଼ିଆ, ଲନ୍ ଓ ଉଦ୍ୟାନ, ବୋଟ କ୍ଲବ୍, ଫିଜିକ୍ସ ଓ କେମିଷ୍ଟ୍ରି ଡିପାର୍ଟମେଣ୍ଟ ପଛପଟ ଛାୟାପ୍ରଦ ଗଛ ଓ ରାସ୍ତା ସହିତ ପରିବେଶ ଆମକୁ ଖୁବ୍ ନୂଆ ଏବଂ ଆମୋଦଦାୟକ ମନେ ହେଉଥିଲା । ଆମେ ନାମ ଲେଖାଇବାର ପନ୍ଦର ବର୍ଷ ତଳେ ୧୯୨୧ ମସିହାରେ କଲେଜ କଲେଜିଏଟ୍ ସ୍କୁଲରୁ ନୂଆ ଘରକୁ ଉଠି ଆସିଥିଲା । ଆମ ସମୟରେ କଲେଜ, ହଷ୍ଟେଲ୍, ଲାଇବ୍ରେରୀ ପ୍ରଭୃତିର ଘର ନୂଆଭଳିଆ ଥିଲା । ପୂର୍ବ ଓ ପଶ୍ଚିମ ଛାତ୍ରାବାସ ଆଗରେ ଏବଂ କଲେଜର ଆର୍ଟସ୍ ବ୍ଲକ୍ ଓ ସାଇନ୍ସ ବ୍ଲକ ମଝିରେ ଥିବା ଲନ୍ ଅତି ଯତ୍ନର ସହିତ ସୁରକ୍ଷିତ ହେଉଥିଲା । ଆମ ପୂର୍ବରୁ କଲେଜର ପ୍ରିନ୍ସପାଲ୍‌ମାନେ ଇଂରେଜ ସାହେବ ଥିଲେ । ଆମବର୍ଷ ଆରମ୍ଭରୁ ଶ୍ୟାମଚନ୍ଦ୍ର ତ୍ରିପାଠୀ ପ୍ରଥମ ଓଡ଼ିଆ ପ୍ରିନ୍ସପାଲ୍ ହୋଇଥିଲେ । ତାଙ୍କର ଚାଲିଚଳଣି ମଧ ସାହେବମାନଙ୍କ ପରି ଥିଲା । ପିଲାମାନେ ତାଙ୍କ ପାଖକୁ ଯିବାକୁ ଭୟ କରୁଥିଲେ । କଲେଜ ଅଫିସ୍‌ରେ ଚାରିଜଣ କିରାଣି ଥାଆନ୍ତି । ହେଡ୍ କିରାଣି ଜଗନ୍ନାଥ ମିଶ୍ର ଅତି ହର୍ଷମୁଖ ଓ ଅମାୟିକ ଲୋକ ଥିଲେ ଏବଂ ତାଙ୍କର ପ୍ରିନ୍ସପାଲଙ୍କ ଉପରେ ଭଲ ପ୍ରଭାବ ଥିଲା । ଆମେ ସମସ୍ତ କାର୍ଯ୍ୟରେ ଜଗନ୍ନାଥବାବୁଙ୍କୁ ଭେଟୁଥିଲୁ ଏବଂ ତାଙ୍କ ଦ୍ୱାରା ଆମର କାର୍ଯ୍ୟ ସମ୍ପନ୍ନ କରୁଥିଲୁ ।

କଲେଜରେ ସେତେବେଳେ ପଢ଼ାପଢ଼ି ଶୃଙ୍ଖଳିତ ଓ ନିୟମିତ ଭାବରେ ହେଉଥିଲା । କଲେଜ ଅଧାପକମାନେ ସମସ୍ତେ ପ୍ରିନ୍ସପାଲଙ୍କୁ ଭୟ କରୁଥିଲେ ଏବଂ ତାଙ୍କର ଆଦେଶକୁ ଶିରୋଧାର୍ଯ୍ୟ କରିଥିଲେ । କଲେଜ ଅଧାପକମାନେ ସେତେବେଳେ କଟକରେ ଏବଂ ଓଡ଼ିଶାରେ ଉଚ୍ଚ ସମ୍ମାନ ପାଉଥିଲେ । ଓଡ଼ିଶାରେ ସେତେବେଳେ ଗୋଟିଏ ମାତ୍ର କଲେଜ ଥିଲା । ଅଧାପକମାନେ ଉଚ୍ଚ ଦରମା ପାଉଥିଲେ, ନିଜର କିମ୍ବା କଲେଜର ଭଲ ଘରେ ରହୁଥିଲେ ଏବଂ ଘୋଡ଼ାଗାଡ଼ିରେ ଯିବାଆସିବା କରୁଥିଲେ । ସମସ୍ତଙ୍କ ଚକ୍ଷୁରେ ସେମାନେ ବିଦ୍ୱାନ ଏବଂ ସଂସ୍କୃତିସମ୍ପନ୍ନ ଜୀବନ ଯାପନ କରୁଥିଲେ । ସେଥିଯୋଗୁଁ କଟକ ସହରରେ

ସମସ୍ତେ ତାଙ୍କୁ ଖାତିର କରୁଥିଲେ । ଆମେ ଆଇ.ଏ. ପଢ଼ିବାବେଳେ ପଶ୍ଚିମ ଛାତ୍ରାବାସରେ ପରିଜା ଓ୍ୟାର୍ଡ଼େନ୍, ପରଶୁରାମ ମିଶ୍ର ସୁପରିଣ୍ଟେଣ୍ଡେଣ୍ଟ ଏବଂ ବି.ଏନ୍. ରୋହାତଗି ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ଆମ ପୂର୍ବ ଛାତ୍ରାବାସରେ କେ.ପି. ସିହ୍ନା ଓ୍ୟାର୍ଡ଼େନ୍, ଘନଶ୍ୟାମ ଦାସ ସୁପରିଣ୍ଟେଣ୍ଡେଣ୍ଟ୍ ଏବଂ ବାମାଚରଣ ଦାସ ଆସିଷ୍ଟାଣ୍ଟ୍ ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ । ପରଶୁରାମବାବୁଙ୍କ ବ୍ୟତୀତ ଏମାନେ ସମସ୍ତେ ବିଲାତରୁ ପାଠ ପଢ଼ି ଫେରିଥିଲେ । ଆମ ସମୟରେ ପରଶୁରାମବାବୁ ବିଲାତ ଯାଇ ଉଦ୍ଭିଦ ବିଜ୍ଞାନରେ ଡକ୍ଟରେଟ୍ କରିଥିଲେ । ହଷ୍ଟେଲ ଏବଂ ହଷ୍ଟେଲ ମେସ୍‌ମାନ ସେତେବେଳେ ଅତି ଶୃଙ୍ଖଳିତ ଭାବରେ ଚାଲୁଥିଲା । ହଷ୍ଟେଲମାନଙ୍କର ମେସ୍ ସବୁ ଅର୍ଦ୍ଧସରକାରୀ ଭାବରେ ପରିଚାଳିତ ହେଉଥିଲା ।

କଲେଜର ବିଭିନ୍ନ ବିଷୟରେ ଏବଂ ସର୍ବମୋଟ୍ ଅଧ୍ୟାପକମାନଙ୍କ ସଂଖ୍ୟା କମ୍ ଥିବାରୁ ଆମେ ପ୍ରଥମ ବର୍ଷରୁ ହିଁ ସବୁ ଅଧ୍ୟାପକଙ୍କୁ ଚିହ୍ନିଥିଲୁ ଏବଂ ଆମେ ପଢୁଥିବା ବିଷୟମାନଙ୍କର ଅଧ୍ୟାପକମାନଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିଲୁ । ଆମେ ଆଇ.ଏ. ପଢ଼ିବାବେଳେ ଇଂରାଜୀରେ ନିରଞ୍ଜନ ନିୟୋଗି, କେ.ପି. ସିହ୍ନା, କୃତ୍ତିବାସ ସାମନ୍ତରାୟ, ଗିରିଜାଶଙ୍କର ରାୟ, ନାରାୟଣ ମୋହନ ଦେ, ଜନାଥନ ମହାନ୍ତି ଇଂରାଜୀ ଅଧ୍ୟାପକ ଥିଲେ । ସେମାନଙ୍କ ମଧ୍ୟରୁ ନିରଞ୍ଜନ ନିୟୋଗି ଦୁଇବର୍ଷ ପରେ ଅବସର ଗ୍ରହଣ କଲେ । ଆମେ ବି.ଏ. ପଢ଼ିବାବେଳେ ପି.ଏସ୍. ସୁନ୍ଦରମ୍ ଏବଂ ଭି.ଭିଜନ୍ ଇଂରାଜୀ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । କେ.ପି. ସିହ୍ନା ଆମକୁ ଟେନିସନ୍‌ଙ୍କର ଇନକ୍ ଆର୍ଡ଼େନ୍ କାବ୍ୟ ଏବଂ ନିୟୋଗି ଆମକୁ ସେକ୍ସପିଅରଙ୍କ ଅଥେଲୋ ନାଟକ ପଢ଼ାଉଥିଲେ । ସେ ସବୁ ବିଷୟ ପଢ଼ିବା ଆମକୁ ବିଶେଷ ଆମୋଦଦାୟକ ଥିଲା । ଗିରିଜାବାବୁଙ୍କର କାନକୁ ଶୁଭୁ ନ ଥିଲା ଏବଂ ତାଙ୍କର ଗୋଟିଏ ଆଖି ନଷ୍ଟ ହୋଇଯାଇଥିବାରୁ କାଚ ଆଖି ଲଗାଇଥିଲେ । ମାତ୍ର ତାଙ୍କର ସ୍ମୃତିଶକ୍ତି ଅତି ତୀକ୍ଷ୍ଣ ଥିଲା ଏବଂ ଇଂରାଜୀ ପାଠ୍ୟକ୍ରମର ସବୁ ବହି ସେ ଭଲରୂପେ ପଢ଼ିଥିଲେ । ଟ୍ୟୁଟୋରିଆଲ କ୍ଲାସମାନଙ୍କରେ ପିଲାମାନଙ୍କର ପ୍ରଶ୍ନ ସେ ଶୁଣିପାରନ୍ତି ନାହିଁ । କିନ୍ତୁ ଗଦ୍ୟ କିମ୍ବା ପଦ୍ୟ ବହିରୁ ଗୋଟିଏ ସ୍ଥାନରେ ଟିପ ଲଗାଇ ଆମେ ବୁଝାଇ ଦେବାକୁ ଅନୁରୋଧ କଲେ ସେ ଅନର୍ଗଳ ଭାବରେ ବୁଝାଇ ଯାଉଥିଲେ ।

ଲଜିକ୍‌ରେ ପ୍ରଥମେ ମୋହିନୀମୋହନ ସେନାପତି ଏବଂ ବିପିନ ବିହାରୀ ରାୟ ଆମର ଅଧ୍ୟାପକ ଥିଲେ । ତିନିମାସ ପରେ ମୋହିନୀମୋହନବାବୁ ଅବସର ଗ୍ରହଣ କଲେ । ତା'ପରେ ରତ୍ନାକର ପତି ଓ ଶରତ ଚନ୍ଦ୍ର ଘୋଷାଲ ଦର୍ଶନ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ସଂସ୍କୃତରେ ଏବଂ ଓଡ଼ିଆରେ କାଶୀନାଥ ଦାଶ, ଆର୍ତ୍ତବଲ୍ଲଭ ମହାନ୍ତି ଏବଂ ଲକ୍ଷ୍ମୀକାନ୍ତ ଚୌଧୁରୀ ଅଧ୍ୟାପକ ଥିଲେ । ଲକ୍ଷ୍ମୀକାନ୍ତବାବୁ ଦୁଇବର୍ଷ ପରେ ମରିଯାଇଥିଲେ । ଆର୍ତ୍ତବଲ୍ଲଭବାବୁଙ୍କର ଶୂଳ ରୋଗ ହେତୁ ଦେହ ଅନେକ ସମୟରେ ଭଲ ରହୁ ନ ଥିଲା । ମାତ୍ର ସେ ପ୍ରାଚୀନ ଓଡ଼ିଆ ସାହିତ୍ୟ ବିଷୟରେ ଗବେଷଣା କରି ସୁନାମ ଅର୍ଜନ କରିଥିଲେ । ମାଥମେଟିକ୍ସରେ ହରେକୃଷ୍ଣ ଦାସ, ବାମାଚରଣ ଦାସ ଓ ରମାନାଥ

ମହାନ୍ତି ଅଧ୍ୟାପକ ଥିଲେ । ବାମାଚରଣବାବୁ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ୍ କରି ପାଟନା ସାଇନ୍ସ କଲେଜରେ ଅଧ୍ୟାପକ ଥିଲେ । ଆମ ପ୍ରଥମ ବାର୍ଷିକ ଶ୍ରେଣୀ ବର୍ଷ ସେ ରେଭେନ୍ସା କଲେଜକୁ ବଦଳି ହୋଇ ଆସିଥିଲେ । ରମାନାଥବାବୁ ପାଟନାରୁ ମାଥମେଟିକ୍ସ ଏମ.ଏ.ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସେହିବର୍ଷ ରେଭେନ୍ସା କଲେଜରେ ଯୋଗ ଦେଇଥିଲେ । ପରେ ହରେକୃଷ୍ଣ ଦାସଙ୍କ ଅବସର ଗ୍ରହଣ ପରେ ଇନ୍ଦୁଭୂଷଣ ଦାସଗୁପ୍ତ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ସେତେବେଳେ କଲେଜ ଅତି ଶୃଙ୍ଖଳିତ ଭାବରେ ଚାଲୁଥିଲା ଏବଂ ଅଧ୍ୟାପକମାନେ ନିୟମିତ ଭାବରେ କ୍ଲାସ ନେଉଥିଲେ । ଅଧିକାଂଶ ଅଧ୍ୟାପକ ମଧ୍ୟ ତାଙ୍କ ବିଷୟରେ ଦକ୍ଷ ଅଧ୍ୟାପକ ଥିଲେ ।

ଆମେ ଆଇ.ଏ.କ୍ଲାସରେ ଇଂରାଜୀ କାବ୍ୟ ଓ ଉପନ୍ୟାସ ବିଷୟମାନଙ୍କରେ ଟେନିସନ୍‌ଙ୍କର ଇନକ୍ ଅଡୋନ୍, ସେକ୍ସପିଅରଙ୍କ ଅଥେଲୋ ଏବଂ ରବର୍ଟ ଲୁଇସ୍ ଷ୍ଟିଭେନସନଙ୍କ ପ୍ରିନ୍ସ ଅଟୋ, ମିଷ୍ଟର ଜେକିଲ୍ ଓ ମାଷ୍ଟର ହାଇଡ଼ ଉପନ୍ୟାସମାନ ପଢୁଥିଲୁ । ସଂସ୍କୃତରେ କାଳିଦାସଙ୍କର ରଘୁବଂଶ କାବ୍ୟର ଚତୁର୍ଦ୍ଦଶ ସର୍ଗ ଏବଂ ଭଟ୍ଟିଙ୍କର ଭଟ୍ଟି କାବ୍ୟ ଓ ଭାଷଙ୍କର ସ୍ୱପ୍ନବାସବଦତ୍ତା ନାଟକ ପଢ଼ି ମୁଗ୍ଧ ହେଉଥିଲୁ । ଲଜିକ୍ ବହି ସବୁ ବଙ୍ଗାଳୀ ଲେଖକମାନେ ଲେଖିଥିଲେ । ଆମେ ଅମ୍ବିକା ମିତ୍ର ଓ ଭୋଳାନାଥ ରାୟଙ୍କ ଡିଡକ୍ଟିଭ୍ ଓ ଇଣ୍ଡକ୍ଟିଭ୍ ଲଜିକ୍ ବହିମାନ ପଢୁଥିଲୁ । ଲଜିକ୍‌ରେ ଶତକଡ଼ା ଅଶୀ ଉପରେ ନମ୍ବର ରଖିବା ସହଜ ଥିଲା । ମାଥମେଟିକ୍ସ ବହିସବୁ ଇଂରେଜୀ ସାହେବ ଲେଖକମାନେ ଲେଖିଥିଲେ । ହଷ୍ଟେଲରେ ରହିବା ପରେ ନିୟମିତ ପଢ଼ାପଢ଼ି କରିବାରେ କିଛି ଅସୁବିଧା ନ ଥିଲା ।

କଲେଜରେ ନାମ ଲେଖାଇବା ପରେ ବହୁ ପିଲାଙ୍କ ସହିତ ପରିଚୟ ହେଲା । କଲେଜିଏଟ୍ ସ୍କୁଲରେ ପଢୁଥିବା ସମୟରେ ଆମର ଛାତ୍ରବନ୍ଧୁମାନଙ୍କ ପରିସର କେବଳ କଟକ ଜିଲ୍ଲାରେ ସୀମାବଦ୍ଧ ଥିଲା । ମାତ୍ର କଲେଜକୁ ଆସିବା ପରେ ଆମର ଛାତ୍ରବନ୍ଧୁବଳୟ ପୂରା ଓଡ଼ିଶାକୁ ବ୍ୟାପିଥିଲା । କଲେଜର ଆଇ.ଏ. ଶ୍ରେଣୀରେ ଆମ ସ୍କୁଲର ନୃସିଂହ, ଶ୍ରୀରାମ, ଗୁରୁଚରଣ ଓ ଗୋପୀନାଥ ପ୍ରଭୃତି ଥିଲେ, ତାହାଛଡ଼ା କଟକର ଅନ୍ୟ ହାଇସ୍କୁଲମାନଙ୍କରୁ ଅନେକ ପିଲା ନାମ ଲେଖାଇଥିଲେ । ସେମାନଙ୍କ ବ୍ୟତୀତ ପୁରୀ, ବାଲେଶ୍ୱର, ସମ୍ବଲପୁର ଏବଂ ବିଭିନ୍ନ ଗଡ଼ଜାତ ରାଜ୍ୟମାନଙ୍କର ହାଇସ୍କୁଲମାନଙ୍କରୁ ପିଲାମାନେ ଆସି ନାମ ଲେଖାଇଥିଲେ । ହଷ୍ଟେଲରେ ଆମ ଶ୍ରେଣୀର ପିଲାମାନଙ୍କ ବ୍ୟତୀତ ଆମ ଉପର ଶ୍ରେଣୀର ବହୁ ପିଲାଙ୍କ ସହିତ ପରିଚୟ ହୋଇଥିଲା । ହଷ୍ଟେଲରେ ଆମ ସ୍କୁଲରୁ ଆସିଥିବା ଗୁରୁଚରଣ ମହାନ୍ତି ଏବଂ ଭିକ୍ଟୋରିଆ ସ୍କୁଲରୁ ଆସିଥିବା ଭୋଳାନାଥ ମିଶ୍ରଙ୍କ ସହିତ ଘନିଷ୍ଠ ବନ୍ଧୁତା ହୋଇଥିଲା । ମାତ୍ର ଆଇ.ଏ. କ୍ଲାସରୁ ଆମ ହଷ୍ଟେଲରେ ଥିବା ବ୍ରଜବନ୍ଧୁ ମିଶ୍ର ଏବଂ ନୀଳମଣି ରାଉତରାୟ ମୋର ସବୁଠାରୁ ବେଶୀ ଅନ୍ତରଙ୍ଗ ବନ୍ଧୁ ହୋଇଥିଲେ । ବ୍ରଜ ତାଳଚେର ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକୁଲେସନ୍ ପାସ୍ କରି କଲେଜରେ ଆଇ.ଏସ୍‌ସି. କ୍ଲାସରେ ନାମ

ଲେଖାଇଥିଲା । ନୀଳମଣି ଭଦ୍ରକ ସ୍କୁଲରୁ ଆସି ଆଇ.ଏ. କ୍ଲାସରେ ନାମ ଲେଖାଇ ଥିଲା । କଲେଜକୁ ଆସିବା ପୂର୍ବରୁ ସେ କଂଗ୍ରେସ କର୍ମୀ ଥିଲା ଏବଂ ହରେକୃଷ୍ଣ ମହତାବଙ୍କର ବିଶ୍ୱସ୍ତ ଅନୁଗାମୀ ଥିଲା । କଲେଜରେ ସେ ଖଦଡ଼ ଧୋତି ଏବଂ ଖଦଡ଼ ପଞ୍ଜାବି ପିନ୍ଧୁଥିଲା ଏବଂ ସବୁବେଳେ କାନ୍ଧରେ ଖଣ୍ଡିଏ ଚଦର ପକାଉଥିଲା । ଆମ୍ଭେମାନେ ତାକୁ ନେତା ବୋଲି କହୁଥିଲୁ । ସଭାସମିତିମାନଙ୍କରେ ଯୋଗ ଦେବାପାଇଁ ସେ ସର୍ବଦା ଆଗଭର ଥିଲା । ଗୁରୁଚରଣ ସହିତ ସ୍କୁଲ କ୍ଲାସରୁ ଏବଂ ବ୍ରଜ ଓ ନୀଳମଣିଙ୍କ ସହିତ କଲେଜର ପ୍ରଥମବାର୍ଷିକ ଶ୍ରେଣୀରୁ ଯେଉଁ ବନ୍ଧୁତା ହୋଇଥିଲା ତାହା ଜୀବନଯାକ ଦୃଢ଼ ରହିଥିଲା । ଗୁରୁଚରଣର ଦେହାନ୍ତ ହୋଇଗଲାଣି । ମାତ୍ର ବ୍ରଜ, ନୀଳମଣି ଓ ମୁଁ ଆଜିଯାଏ ଘନିଷ୍ଠ ବନ୍ଧୁ ହୋଇ ରହିଛୁ ଏବଂ ସବୁବେଳେ ପରସ୍ପର ହିତାକାଂକ୍ଷୀ ହୋଇଛୁ । ପରବର୍ତ୍ତୀ ଜୀବନରେ ନୀଳମଣି ଓଡ଼ିଶାର ବହୁକାଳ ବରିଷ୍ଠ ମନ୍ତ୍ରୀ ଏବଂ ଶେଷରେ ତିନିବର୍ଷ ମୁଖ୍ୟମନ୍ତ୍ରୀ ହୋଇଥିଲା । ବ୍ରଜ ବହୁକାଳ ରାଜ୍ୟର ବିଭିନ୍ନ ବଡ଼ କଲେଜରେ ପ୍ରିନ୍ସପାଲ, ଓଡ଼ିଶାର ସ୍କୁଲ୍ ଡି.ପି.ଆଇ., ସେକେଣ୍ଡାରୀ ବୋର୍ଡ଼ର ପ୍ରେସିଡେଣ୍ଟ ଏବଂ ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲା । ସେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରେ ପଢ଼ିଥିଲା । ମୁଁ ଲଣ୍ଡନ ସ୍କୁଲ୍ ଅଫ୍ ଇକନମିକ୍ସରେ ପଢ଼ିଥିଲି । ବ୍ରଜ, ନୀଳମଣି ଓ ମୋର ଅନାବିଳ ବନ୍ଧୁତା ମୃତ୍ୟୁ ପର୍ଯ୍ୟନ୍ତ ଅତୁଟ ରହିଥିବ ବୋଲି ମୁଁ ଆଶା କରୁଛି । କଲେଜରେ ଏବଂ ହଷ୍ଟେଲରେ ଅନ୍ୟ ବହୁ ଛାତ୍ରଙ୍କ ସହିତ ମଧ୍ୟ ବନ୍ଧୁତା ହୋଇଥିଲା । ବିବୁଧେନ୍ଦୁ ମିଶ୍ର, ବୀରେନ୍ଦ୍ର ମୋହନ ପଟ୍ଟନାୟକ ଏବଂ ଉଦୟ ନାଥ ମିଶ୍ର, ଯେକି ପରେ ସରକାରୀ ଛାପାଖାନାର ସୁପରିଣ୍ଟେଣ୍ଡେଣ୍ଟ ହୋଇଥିଲେ ପ୍ରଭୃତି ଆମ କ୍ଲାସରେ ପଢୁଥିଲେ । ସୁରଜମଲ୍ଲ ସାହା, ପ୍ରଫେସର ଗଣେଶ୍ୱର ମିଶ୍ର ଓ ବନମାଳୀ ପଟ୍ଟନାୟକ ପ୍ରଭୃତି ଆମ ତଳ କ୍ଲାସରେ ପଢୁଥିଲେ । ଏ ସମସ୍ତଙ୍କ ସହିତ ମୋର ଘନିଷ୍ଠ ପରିଚୟ ହୋଇଥିଲା । ଆମ ଇଷ୍ଟ ହଷ୍ଟେଲରେ ସେତେବେଳେ ରାମକୃଷ୍ଣ ପତି, ବିଜୟ ଦାସ ପ୍ରଭୃତି କମ୍ୟୁନିଷ୍ଟ ମତବାଦୀ ପିଲାମାନେ ରହିଥିଲେ ଏବଂ ମୁଁ ସେମାନଙ୍କ ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲି । ସ୍ମୃତି ଚାରଣ କରି ଦେଖୁଛି ଯେ, ସେ ସମୟରେ କଲେଜର ଉଭୟ ହଷ୍ଟେଲରେ ଥିବା ବିଭିନ୍ନ କ୍ଲାସର ମୋର ଛାତ୍ରବନ୍ଧୁ ପରବର୍ତ୍ତୀ କାଳରେ ଓଡ଼ିଶାରେ ବହୁ ସରକାରୀ ଚାକିରିରେ ଏବଂ ରାଜନୈତିକ ଏବଂ ସର୍ବସାଧାରଣ କ୍ଷେତ୍ରରେ ବହୁ ଉଚ୍ଚ ପଦବୀ ଅଧିକାର କରିଥିଲେ । ଆଜିସୁଦ୍ଧା ସେମାନଙ୍କ ମଧ୍ୟରୁ ଯେଉଁମାନେ ଜୀବିତ ଅଛନ୍ତି ସେମାନଙ୍କୁ ଦେଖିଲେ ମନ ଆନନ୍ଦରେ ପୂରିଯାଏ ।

ପଢ଼ାପଢ଼ି ବ୍ୟତୀତ ସେ ସମୟରେ ପ୍ରତିବର୍ଷ ବାର୍ଷିକ ବୋଡ଼ାସମ୍ବର ଡିବେଟ୍ ପ୍ରତିଯୋଗିତା ଏବଂ କଲେଜ କମ୍ମେମୋରେସନ୍ ହେଉଥିଲା । କମ୍ମେମୋରେସନ୍ ସମୟରେ କଲେଜରେ ଦୁଇ ତିନି ଦିନ ପାଇଁ ବଡ଼ଧରଣର ଗୋଟିଏ ପ୍ରଦର୍ଶନୀ ହେଉଥିଲା । କଟକ ସହରର ବହୁଲୋକ ସେ ପ୍ରଦର୍ଶନୀ ଦେଖିବାକୁ ଆସୁଥିଲେ । ରେଭେନ୍ସା କଲେଜ ସେତେବେଳେ ସମଗ୍ର ଓଡ଼ିଶାର ଗୋଟିଏ ଶିକ୍ଷା ଓ ସଂସ୍କୃତିର କେନ୍ଦ୍ର

ଥିଲା । କଲେଜ ବାହାର କଥା ଦେଖିଲେ ଆମର ପ୍ରଥମ ବାର୍ଷିକ ଶ୍ରେଣୀ ୧୯୩୬ ମସିହା ଅପ୍ରେଲ ୧ ତାରିଖରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ପରବର୍ଷ ୧୯୩୭ ମସିହା ଆରମ୍ଭରେ ଓଡ଼ିଶା ବିଧାନସଭା ପାଇଁ ସାଧାରଣ ନିର୍ବାଚନ ହେଲା ଏବଂ ବିଶ୍ୱନାଥ ଦାଶଙ୍କ ପ୍ରଧାନମନ୍ତ୍ରିତ୍ୱରେ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ଓଡ଼ିଶା ଆସେମ୍ବ୍ଲି ଘର ତିଆରି ହୋଇ ନ ଥିବାରୁ ରେଭେନ୍ସା କଲେଜ ହଲ୍‌ରେ ଆସେମ୍ବ୍ଲି ବସୁଥିଲା । ସ୍ୱତନ୍ତ୍ର ପ୍ରଦେଶ ଗଠନ ଉପଲକ୍ଷେ 'ଯୁଗେ ଯୁଗେ ଓଡ଼ିଶା' ଶୀର୍ଷକ ଗୋଟିଏ ପ୍ରେଜେଣ୍ଟ କଲେଜ ପଡ଼ିଆରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ସାର ଜନ୍ ଅଷ୍ଟିନ୍ ହବାକ୍ ତାକୁ ଉଦ୍‌ଘାଟନ କରିଥିଲେ । କଟକର ବହୁ ଲୋକ ସେ ଅଭିନୟ ଦେଖିବାକୁ ଆସିଥିଲେ । ପ୍ରଥମ ବର୍ଷ ଶେଷରେ ଅଧ୍ୟାପକମାନେ କଲେଜର ସବୁ ଛାତ୍ରଙ୍କୁ ଗୋଟିଏ ବଡ଼ ଭୋଜିରେ ଆପ୍ୟାୟିତ କରିଥିଲେ ଏବଂ ନିଜ ହାତରେ ସେମାନଙ୍କୁ ଖାଦ୍ୟ ପରଷିଥିଲେ ।

କଲେଜ ହଷ୍ଟେଲରେ ରହି ସ୍କୁଲଠାରୁ ଆମ ଚାଲିଚଳଣି ବହୁତ ବଦଳି ଯାଇଥିଲା । ମୁଁ ପ୍ରଥମ ବାର୍ଷିକ ଶ୍ରେଣୀରୁ ପାଦରେ ଚପଲ ପିନ୍ଧିବା ଆରମ୍ଭ କରିଥିଲି । ହଷ୍ଟେଲ ମେସ୍‌ରେ ଖାଇବା ପିଇବା ଭଲ ହେଉଥିଲା । ପିଲାଙ୍କ କାମ କରିବା ପାଇଁ ପ୍ରତି ୱାର୍ଡ଼ରେ ଚାକର ଥିଲେ ଏବଂ ମେସ୍‌ରେ ପୂଜାରୀ ଚାକର ଥିଲେ । ହଷ୍ଟେଲ କମନରୁମ୍‌କୁ ସେତେବେଳେ ପ୍ରଥମ ହୋଇ ରେଡ଼ିଓ ଆସିଥିଲା । କମନରୁମ୍‌ରେ ପିଲାଙ୍କ ପଢ଼ିବାପାଇଁ ବିଭିନ୍ନ ପତ୍ରପତ୍ରିକା ଦିଆଯାଉଥିଲା । ଉପରମହଲାର ପ୍ରାର୍ଥନା ହଲରେ ପ୍ରତିଦିନ ସକାଳ ସାତଟା ସମୟରେ ସୁପରିଣ୍ଟେଣ୍ଡେଣ୍ଟ ଛାତ୍ରମାନଙ୍କର ଉପସ୍ଥାନ ନେଉଥିଲେ । ଆମ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ, ଅଧ୍ୟାପକ ଘନଶ୍ୟାମ ଦାସ ପ୍ରତିଦିନ ଉପସ୍ଥାନ ନେବା ସମୟରେ ଲମ୍ବା ବକ୍ତୃତା ଦେଉଥିଲେ । ହଷ୍ଟେଲର ଗେମ୍‌ସ ରୁମ୍‌ରେ ପଢ଼ା ସମୟ ପରେ ପିଙ୍ଗ୍‌ପଙ୍ଗ୍ ଓ କାରମ ପ୍ରଭୃତି ଖେଳିବାର ବ୍ୟବସ୍ଥା ଥିଲା । ଡିକ୍ସନ ସାହେବ ନାମରେ ଜଣେ ଆଇ.ସି.ଏସ୍. ଅଫିସର ସେତେବେଳେ ଶିକ୍ଷାବିଭାଗର ସଚିବ ଥିଲେ । ସେ ଆମ ହଷ୍ଟେଲ ପାଖରେ ପ୍ରଫେସରମାନଙ୍କ ପାଇଁ ଥିବା ଗୋଟିଏ ବଡ଼ ଘରେ ରହୁଥିଲେ । ଘନଶ୍ୟାମବାବୁ ଆମ ପ୍ରଥମବର୍ଷ ଶୀତଦିନେ ସକାଳଓଳା ମୋ ସମେତ କେତେକ ହଷ୍ଟେଲ ପିଲାଙ୍କୁ ନେଇ ଡିକ୍‌ସନଙ୍କ ସହିତ କ୍ରିକେଟ ଖେଳୁଥିଲେ । ମୋର ସେ ଖେଳରେ ଆଗ୍ରହ ନ ଥିଲା ଏବଂ ପଢ଼ାପଢ଼ି ନଷ୍ଟ ହେଉଥିବାରୁ ମୁଁ ଖେଳିବାକୁ ଅମଙ୍ଗ ଥିଲି । ତଥାପି ଘନଶ୍ୟାମବାବୁଙ୍କ କଥା ଭାଙ୍ଗି ନ ପାରି ଖେଳରେ ଯୋଗ ଦେଉଥିଲି । ଡିକ୍‌ସନ ଆମ ହଷ୍ଟେଲକୁ ଗୋଟିଏ ପିଙ୍ଗପଙ୍ଗ୍ ଟେବୁଲ ଦାନ କରିଥିଲେ ।

ଆମେ ଆଇ.ଏ. ପଢ଼ିବା ଦୁଇବର୍ଷଯାକ କଲେଜରେ କୌଣସି ଗୋଳମାଳ ହୋଇ ନ ଥିଲା । ବନ୍ଧୁ ମେଳରେ ପଢ଼ାପଢ଼ି, ହସଖେଳ, ଆନନ୍ଦ ଉଲ୍ଲାସରେ ଦୁଇବର୍ଷ କଟିଗଲା । ଦୁଇବର୍ଷ ଶେଷରେ ୧୯୩୮ ମସିହା ଫେବୃଆରୀ ମାସରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ହେଲା । ପରୀକ୍ଷାରେ ମୁଁ ଭଲ କରିଥିଲି । ମାତ୍ର ସେଥିରେ ଶ୍ରୀରାମ ବିଶ୍ୱବିଦ୍ୟାଳୟରେ ପ୍ରଥମ ହେଲା ଏବଂ ମୁଁ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ହେଲି । ସେ ବର୍ଷ ପୂରା ପାଟନା

ବିଶ୍ୱବିଦ୍ୟାଳୟରେ ଆଇ.ଏ. ପରୀକ୍ଷାରେ କେବଳ ଚାରିଜଣ ପିଲା ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ । ସେଥିରେ ଆମ କଲେଜରୁ ଶ୍ରୀରାମ ଓ ମୁଁ ପ୍ରଥମ ଓ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲୁ । ଆଇ.ଏସ୍‌ସି. ପରୀକ୍ଷାରେ ବ୍ରଜ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ପାଟନା ବିଶ୍ୱବିଦ୍ୟାଳୟର ସେ ବର୍ଷ ଆଇ.ଏ. ଏବଂ ଆଇ.ଏସ୍‌ସି. ପରୀକ୍ଷାରେ ଆମ କଲେଜର ପିଲାମାନେ ଅଧିକ ଭଲ କରିଥିଲେ ।

ପରୀକ୍ଷା ପରେ ମୁଁ ଗାଁକୁ ଚାଲିଯାଇଥିଲି । ଗାଁରେ ପରୀକ୍ଷା ଫଳ ସମାଜ କାଗଜରୁ ଦେଖିଲି । ଜୁଲାଇ ମାସରେ ବି.ଏ. କ୍ଲାସରେ ନାମ ଲେଖାଇବାକୁ ବାହାରିଲି । ଭାଇନା ସେତେବେଳେ ସୁଦ୍ଧା ମୋର ନାମ ଲେଖାଇବାପାଇଁ ଆଗ୍ରହ ଦେଖାଇ ନ ଥିଲେ କିମ୍ବା ନାମ ଲେଖାଇବା ଖର୍ଚ୍ଚ ଯୋଗାଡ଼ କରି ଦେଇ ନ ଥିଲେ । ତାଙ୍କର ସବୁବେଳେ ଇଚ୍ଛା ଥିଲା ମୁଁ ଚାକିରି କରି ଘରକୁ ଟଙ୍କା ଦେବାକୁ । ମୁଁ ମାସରେ କୋଡ଼ିଏ ଟଙ୍କା ସ୍କଲାରସିପ୍ ପାଉଥିବାରୁ ଏବଂ ପଢ଼ିବା ଖର୍ଚ୍ଚ ମାସକୁ ପଚିଶ ଟଙ୍କାରେ ଚଳି ଯାଉଥିବାରୁ ଘରୁ ବେଶି କିଛି ଟଙ୍କା ଦେବାର ନ ଥିଲା । କେବଳ କଟକ ଆସିବାକୁ ସାମାନ୍ୟ ବାଟ ଖର୍ଚ୍ଚ ଆଣି କଟକ ଆସିଲି ଏବଂ କେତେକ ବନ୍ଧୁଙ୍କଠାରୁ ଧାର କରି ନାମ ଲେଖାଇବା ଖର୍ଚ୍ଚ ଯୋଗାଡ଼ କଲି । ସ୍କଲାରସିପ୍ ଟଙ୍କା ମିଳିବା ପରେ ହଷ୍ଟେଲର ମେସ୍ ଖର୍ଚ୍ଚ ପ୍ରଭୃତି ଦେବାପାଇଁ ସୁପରିଣ୍ଟେଣ୍ଡେଣ୍ଟ ଅନୁମତି ଦେଲେ ।

ବି.ଏ. ପଢ଼ିବାବେଳେ ମୁଁ କଲେଜର ସେହି ପୂର୍ବ ଛାତ୍ରାବାସରେ ରହିଥିଲି । ଶ୍ରୀରାମ ପଶ୍ଚିମ ଛାତ୍ରାବାସରେ ଗୋଟିଏ ଜଣକିଆ ରହିବା ରୁମ୍‌ରେ ରହିଥିଲା । ତୃତୀୟ ବାର୍ଷିକ ଶ୍ରେଣୀରେ କଲେଜ କିମ୍ବା ହଷ୍ଟେଲ ଆମକୁ କିଛି ନୂଆ ଲାଗୁ ନ ଥିଲା, କାରଣ ତା ପୂର୍ବରୁ ସେଠାରେ ଦୁଇବର୍ଷ ରହି ସାରିଥିଲୁ । ପୂର୍ବ ବର୍ଷର ସାଙ୍ଗ ବ୍ରଜ ଓ ନୀଳମଣି ପ୍ରଭୃତିଙ୍କ ସହିତ ଖୁସିରେ ରହିଲି । ଆଇ.ଏ. ପଢ଼ିବା ବିଷୟ ସବୁ ବଦଳାଇ ଅନ୍ୟ ବିଷୟମାନ ନେଲି । ଆଇ.ଏ.ରେ ମୋର ନିର୍ବାଚିତ ଗ୍ରୁପ୍ ଥିଲା ମାଥମେଟିକ୍ସ, ଲଜିକ୍ ଓ ସଂସ୍କୃତ । ବିଶ୍ୱବିଦ୍ୟାଳୟରେ ଏ ତିନି ବିଷୟରେ ମୁଁ ସର୍ବୋଚ୍ଚ ନମ୍ବର ରଖିଥିଲି । ତଥାପି ବି.ଏ.ରେ ସେ ବିଷୟ ସବୁ ବଦଳାଇ ଅର୍ଥନୀତି ଓ ଇତିହାସ ନେଲି ଏବଂ ଅର୍ଥନୀତିରେ ଅନର୍ସ ନେଲି । ଶ୍ରୀରାମ ମଧ୍ୟ ସେହି ବିଷୟମାନ ନେଲା ।

କଲେଜର ଅଧ୍ୟାପକମାନଙ୍କ ମଧ୍ୟରେ ଅଳ୍ପ ପରିବର୍ତ୍ତନ ହୋଇଥିଲା । ଇଂରାଜୀ ଅଧ୍ୟାପକ କେ.ପି. ସିହ୍ନା ପାଟନା କଲେଜକୁ ବଦଳି ହୋଇ ଯାଇଥିଲେ । ତାଙ୍କ ସ୍ଥାନରେ ପି.ଏସ୍.ସୁନ୍ଦରମ୍ ଇଂରାଜୀ ପ୍ରଫେସର ହୋଇଥିଲେ । ସେ ଆମ ଇଷ୍ଟ ହଷ୍ଟେଲର ଓ୍ୟାର୍ଡ଼େନ ହୋଇଥିଲେ । ପଶ୍ଚିମ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ପରଶୁରାମ ମିଶ୍ର ବିଲାତରେ ଡକ୍ଟରେଟ୍ କରିବାକୁ ଗଲେ । ତାଙ୍କ ସ୍ଥାନରେ ଘନଶ୍ୟାମବାବୁ ପଶ୍ଚିମ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ହେଲେ । ପ୍ରଫେସର ବାମାଚରଣ ଦାସ ଆମ ପୂର୍ବ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ହେଲେ । ଏବଂ ରମାନାଥବାବୁ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ହେଲେ । ସଦାଶିବ ମିଶ୍ର ଏବଂ ଜଗଦାନନ୍ଦ ଦାସ ସେ ବର୍ଷ କଲେଜର ଅର୍ଥନୀତି ଓ

ଇତିହାସ ଲେକ୍‌ଚରର ରୂପେ ଯୋଗ ଦେଲେ । ସବୁଠାରୁ ବଡ଼ ପରିବର୍ତ୍ତନ ହେଲା ପ୍ରିନ୍ସପାଲ୍ ଶ୍ୟାମଚନ୍ଦ୍ର ତ୍ରିପାଠୀ ଡି.ପି.ଆଇ. ହୋଇଗଲେ ଏବଂ ପରିଜା କଲେଜର ସ୍ଥାୟୀ ପ୍ରିନ୍ସପାଲ ହେଲେ । ତ୍ରିପାଠୀ ଓଡ଼ିଶାର ପ୍ରଥମ ଓଡ଼ିଆ ଡି.ପି.ଆଇ. ହୋଇଥିଲେ । ପରିଜା ପ୍ରିନ୍ସପାଲ ହେବାପରେ ଡକ୍ଟର ବଳଭଦ୍ର ପ୍ରସାଦ ପଣ୍ଡିମ ଛାତ୍ରାବାସର ଓ୍ୟାର୍ଡେନ୍ ହେଲେ ।

ଆମେ ତୃତୀୟ ବାର୍ଷିକ ଶ୍ରେଣୀରେ ଯୋଗ ଦେବାବେଳେ ଅନେକ ନୂଆ ପିଲା ଆଇ.ଏ. ଓ ଆଇ.ଏସ୍‌ସି. ଶ୍ରେଣୀରେ ନାମ ଲେଖାଇଥିଲେ । ସେମାନଙ୍କ ମଧ୍ୟରେ ବିଧୁଭୂଷଣ ଦାସ, ପ୍ରଫୁଲ୍ଲ କୁମାର ପତି, ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ଓ ମହେନ୍ଦ୍ର କୁମାର ରାଉତ ପ୍ରଭୃତି ଅନ୍ତର୍ଭୁକ୍ତ ଥିଲେ । ଏମାନେ ସମସ୍ତେ ପରବର୍ତ୍ତୀ କାଳରେ ଡି.ପି.ଆଇ. ଏବଂ ବିଭିନ୍ନ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । କଲେଜରେ ପଢ଼ାପଢ଼ି ପୂର୍ବ ରୀତିରେ ଶୃଙ୍ଖଳିତ ଭାବରେ ଚାଲିଥିଲା ଏବଂ ସେହିପରି ବାର୍ଷିକ କମ୍ମେମୋରେସନ୍ ଏବଂ ବୋଡ଼ାସମ୍ଭର ବକ୍ତୃତା ପ୍ରତିଯୋଗିତା ହେଉଥିଲା । ମୁଁ ପୂର୍ବ ଛାତ୍ରାବାସ ମାଗାଜିନ୍ 'ଜାଗରଣ'ର ସମ୍ପାଦକ ହୋଇଥିଲି । ହଷ୍ଟେଲମାନଙ୍କର ମେସ୍ ସବୁ ମଧ୍ୟ ପୂର୍ବ ରୀତିରେ ଚାଲୁଥିଲା । ମାତ୍ର ଦେଶର ରାଜନୈତିକ ପରିସ୍ଥିତି ହେତୁ କଲେଜର ରାଜନୈତିକ ବାତାବରଣ ଉଷ୍ମ ହୋଇଯାଇଥିଲା । ଓଡ଼ିଶାରେ ସେତେବେଳେ ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳ କାର୍ଯ୍ୟ କରୁଥାଏ । ଇଉରୋପରେ ନାଜିବାଦର ପ୍ରଗତି ହେତୁ ପୃଥିବୀରେ ବିଶ୍ୱଯୁଦ୍ଧର କଳାମେଘ ଘନେଇ ଆସୁଥାଏ । ୧୯୩୮ ମସିହାରେ କଲେଜରେ ପ୍ରଥମେ ଛାତ୍ର ଇଉନିଅନ୍ ଗଠିତ ହୋଇଥିଲା । କଲେଜର ଆଇନ କ୍ଲାସର ଅଶୋକ ଦାସ, ବି.ଏ. ଏବଂ ଆଇ.ଏ. ଶ୍ରେଣୀମାନଙ୍କର ବିବୁଧେନ୍ଦ୍ର ମିଶ୍ର, ନୀଳମଣି ରାଉତରାୟ, ସୁରଜମଲ୍ଲ ସାହା ଓ ବନମାଳୀ ପଟ୍ଟନାୟକ ପ୍ରଭୃତି ରାଜନୈତିକ ଭାବାପନ୍ନ ଛାତ୍ରମାନେ କଲେଜର ରାଜନୈତିକ ପରିବେଶ ଉଷ୍ମ କରି ରଖିଥାନ୍ତି । ମାତ୍ର କଲେଜରେ ପ୍ରିନ୍ସପାଲ୍ ପରିଜାଙ୍କର କଡ଼ା ଶାସନ ଚାଲିଥାଏ ।

ଆମେ ତୃତୀୟ ବାର୍ଷିକ ଶ୍ରେଣୀରେ ପଢୁଥିବାବେଳେ କଲେଜରେ ପ୍ରଥମେ ଷ୍ଟ୍ରାଇକ୍ ଆରମ୍ଭ ହେଲା । କଲେଜର ଲ' ପ୍ରଫେସର ଜେ.ଏନ୍. ବାନାର୍ଜୀ କଲେଜ ହତାରେ ଆଇ.ଇ.ଏସ୍ ପ୍ରଫେସରମାନଙ୍କ ପାଇଁ ଉଦ୍ଦିଷ୍ଟ ଗୋଟିଏ ଘରେ ରହୁଥିଲେ । ତାଙ୍କୁ ସେ ଘର ଛାଡ଼ିଦେବାକୁ କୁହାଯିବାରୁ ସେ କଲେଜ ଚାକିରିରୁ ଇସ୍ତଫା ଦେଲେ । ତାର ପ୍ରତିବାଦରେ ଲ' କ୍ଲାସର ପିଲାମାନେ ଷ୍ଟ୍ରାଇକ୍ କଲେ ଏବଂ ତାଙ୍କ ପ୍ରରୋଚନାରେ ପୂରା କଲେଜରେ ଷ୍ଟ୍ରାଇକ୍ ହେଲା । ଆମ୍ଭେମାନେ ମଧ୍ୟ ସେ କାଳରେ ପଡ଼ି ଷ୍ଟ୍ରାଇକ୍‌ରେ ଯୋଗଦେଲୁ । ପ୍ରିନ୍ସପାଲ କିନ୍ତୁ ଦୃଢ଼ ହସ୍ତରେ ସେ ଷ୍ଟ୍ରାଇକ୍ ଦମନ କଲେ । ଲ' ପ୍ରଫେସରଙ୍କ ଇସ୍ତଫା ଗୃହୀତ ହେଲା । ଆମ୍ଭେମାନେ କଲେଜର ଜଣାଶୁଣା ପିଲାଥିଲୁ । ଆମେ ପ୍ରିନ୍ସପାଲଙ୍କ ବିଷଦୃଷ୍ଟିରେ ପଡ଼ି ଷ୍ଟ୍ରାଇକ୍ ହୋଇଥିବା ଦିନମାନଙ୍କର ସ୍କଲାରସିପ୍ ହରାଇଲୁ ।

ପରବର୍ଷ ୧୯୩୯ ମସିହା ସେପ୍ଟେମ୍ବର ମାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଭାରତର ପ୍ରଦେଶମାନଙ୍କରେ ଚାଲୁଥିବା ଲୋକ ପ୍ରତିନିଧି ସରକାରମାନଙ୍କର ମତ ନ ନେଇ ଭାରତ ସରକାର ଯୁଦ୍ଧରେ ଯୋଗଦେବା ଘୋଷଣା କରିବା ହେତୁ, କଂଗ୍ରେସର ନିଷ୍ପତ୍ତି ଅନୁସାରେ ପ୍ରାଦେଶିକ କଂଗ୍ରେସ ସରକାର ସବୁ ଇସ୍ତଫା ଦେଲେ । ସେହି କାର୍ଯ୍ୟକ୍ରମରେ ଓଡ଼ିଶାର ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳ ସେହି ବର୍ଷ ନଭେମ୍ବର ମାସ ୬ ତାରିଖରେ ଇସ୍ତଫା ଦେଲେ ଏବଂ ପ୍ରଦେଶରେ ଲାଟ ଶାସନ ଜାରି ହେଲା । ୧୯୪୦ ମସିହା ଜାନୁଆରୀ ୨୬ ତାରିଖରେ ଆମ କ୍ଲାସର ବି.ଏ. ପରୀକ୍ଷାର୍ଥୀ ନୀଳମଣି ଓ ବିବୁଧେନ୍ଦ୍ର କଲେଜ ଟେନିସ୍ ପଡ଼ିଆରେ ଜାତୀୟ ପତାକା ଉତ୍ତୋଳନ କରିବାରୁ ପ୍ରିନ୍ସିପାଲ୍ ତାଙ୍କୁ କୋଡ଼ିଏ ଟଙ୍କା ଲେଖାଏଁ ଜୋରିମାନା କଲେ । ସେମାନେ ଜୋରିମାନା ନ ଦେବାରୁ ତାଙ୍କଠାରୁ ପରୀକ୍ଷା ଫିସ୍ ନିଆଗଲା ନାହିଁ । ତଦ୍ୱାରା ସେମାନେ ବିଶ୍ୱବିଦ୍ୟାଳୟର ପରୀକ୍ଷା ଦେବାରୁ ବଞ୍ଚିତ ହେଲେ । ତାର ପ୍ରତିବାଦରେ ଆମେ ସବୁ ବି.ଏ. ଏବଂ ଆଇ.ଏ. ପରୀକ୍ଷାର୍ଥୀ ପରୀକ୍ଷା ବର୍ଜନ କରିବାକୁ ଘୋଷଣା କଲୁ ଏବଂ କଲେଜରେ ବିରାଟ ଷ୍ଟ୍ରାଇକ୍ ହେଲା । ସେ ଆନ୍ଦୋଳନ କିପରି ଚାଲିଥିଲା ଓ କିପରି ଭାଙ୍ଗି ଯାଇଥିଲା ଏବଂ ଶେଷରେ ଆମ୍ଭେମାନେ କିପରି ବିଳମ୍ବରେ ପରୀକ୍ଷା ଦେଇଥିଲୁ ତାହାସବୁ ମୁଁ ମୋର ''ବିଂଶ ଶତାବ୍ଦୀର ଓଡ଼ିଶା ମୋ ଅନୁଭୂତି'' ବହିରେ ବିଶଦ ଭାବରେ ବର୍ଣ୍ଣନା କରିଛି । ସେଗୁଡ଼ିକର ଏଠାରେ ପୁନରାବୃତ୍ତି କରିବା ସମୀଚୀନ ମନେ କରୁ ନାହିଁ । ସେ ବିଷୟରେ କେବଳ ଏତିକି କୁହାଯାଇ ପାରେ ଯେ ସେ ଅଶାନ୍ତ ପରିସ୍ଥିତିରେ ପରୀକ୍ଷା ଦେଇଥିବା ହେତୁ ଅର୍ଥନୀତି ବି.ଏ. ଅନର୍ସ ପରୀକ୍ଷାରେ ଆମେ କେହି ପ୍ରଥମ ଶ୍ରେଣୀରେ ପାସ୍ କଲୁ ନାହିଁ । ପାଟନା କଲେଜର ପିଲାମାନେ ଆମଠାରୁ ଅଧିକ ଭଲ କଲେ, ଯଦିଓ ସେମାନେ ମଧ୍ୟ କେହି ପ୍ରଥମ ଶ୍ରେଣୀରେ ପାସ୍ କରି ନ ଥିଲେ । ସେ ପରୀକ୍ଷାରେ ଶ୍ରୀରାମ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ଏବଂ ମୁଁ ପଞ୍ଚମ ହୋଇଥିଲୁ । ଆମ ଜୀବନର ସବୁ ପରୀକ୍ଷା ମଧ୍ୟରେ ଆମେ ଦୁଇଜଣ ମାତ୍ର ସେହିଥରକ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଥିଲୁ ।

ରେଭେନ୍ସା କଲେଜରେ ପଢ଼ିବାର ଅନ୍ତିମ ପର୍ଯ୍ୟାୟରେ ପ୍ରାୟ ମାସେ ଦେଢ଼ମାସ ଏହିପରି ଅଶାନ୍ତି ଓ ଗଣ୍ଡଗୋଳ ମଧ୍ୟରେ କଟିଥିଲା । ପରୀକ୍ଷାପରେ ମୁଁ ଗାଁକୁ ଚାଲିଯାଇଥିଲି । ଗାଁରେ ଏପରି ନୈରାଶ୍ୟଜନକ ପରୀକ୍ଷା ଫଳ ଜାଣିଲି ।

# ପାଟନା ସହର ଓ ପାଟନା କଲେଜ

ବି.ଏ. ପରୀକ୍ଷାରେ ଭଲ ହୋଇ ନ ଥିବା ଜାଣି ଏମ୍.ଏ. ପଢ଼ିବାର ଆଶା ତ୍ୟାଗ କଲି । ସେତେବେଳେ ରେଭେନ୍ସା କଲେଜରେ କେବଳ ଇଂରାଜୀରେ ଏମ୍.ଏ. ପଢ଼ିବାର ସୁବିଧା ଥିଲା । ଅନ୍ୟ ବିଷୟମାନଙ୍କରେ ଏମ୍.ଏ. ବା ଏମ୍.ଏସ୍‌ସି. ପଢ଼ିବାପାଇଁ ଓଡ଼ିଶାର ପିଲାମାନେ ସାଧାରଣତଃ ପାଟନା ଯାଉଥିଲେ । କେତେକ ପିଲା ମଧ୍ୟ ଆଲାହାବାଦ୍ ଏବଂ ବନାରସ ବିଶ୍ୱବିଦ୍ୟାଳୟକୁ ଯାଉଥିଲେ । ସେ ସମୟରେ ସରକାରୀ ନିୟମ ଥିଲା ଯେ ପ୍ରତି ବିଷୟରେ ଅନର୍ସରେ ଓଡ଼ିଶାରେ ପ୍ରଥମ ହୋଇଥିବା ଏମ୍.ଏ. ପଢୁଥିବା ଛାତ୍ରକୁ ମାସକୁ ତିରିଶ ଟଙ୍କା ଲେଖାଏଁ ପୋଷ୍ଟଗ୍ରାଜୁଏଟ୍ ସ୍କଲାରସିପ୍ ମିଳିବ । ବ୍ରଜ ମାଥମେଟିକ୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲା । ସେ ସ୍କଲାରସିପ୍ ପାଇ ଆଲାହାବାଦରେ ପଢ଼ିବାକୁ ଗଲା । ଶ୍ରୀରାମ ଅର୍ଥନୀତି ଅନର୍ସରେ ଦ୍ୱିତୀୟ ଶ୍ରେଣୀରେ ଓଡ଼ିଶାରେ ପ୍ରଥମ ହୋଇଥିଲା । ଅର୍ଥନୀତି ପଢ଼ିବାପାଇଁ ସ୍କଲାରସିପ୍ ପାଇ ସେ ପାଟନାରେ ଏମ୍.ଏ. ପଢ଼ିବାକୁ ଗଲା । ମୁଁ ଅର୍ଥନୀତିରେ ଓଡ଼ିଶାରେ ଦ୍ୱିତୀୟ ହୋଇଥିବାରୁ କୌଣସି ସ୍କଲାରସିପ୍ ପାଇବାର ନ ଥିଲା । ସବୁଦିନ ପରି ଭାଇନା ଚାକିରି କରିବାକୁ କହୁଥିଲେ । ମାତ୍ର ମୁଁ ଚାକିରି କରିବି କିମ୍ବା ଟ୍ରେନିଂ କଲେଜରେ ପଢ଼ିବି ବା ନ' ପଢ଼ିବି, କିଛି ସ୍ଥିର କରି ପାରି ନ ଥିଲି । ପରବର୍ତ୍ତୀ କାର୍ଯ୍ୟପନ୍ଥା ଗ୍ରହଣ କରିବାପାଇଁ ଜୁଲାଇ ମାସରେ କଟକ ଆସିଲି ଏବଂ ପ୍ୟାରୀମୋହନ ଏକାଡେମି ପାଖରେ ଗୋଟିଏ ମେସ୍‌ରେ କିଛିଦିନ ରହିଥିଲି ।

ଏହି ସମୟରେ ଏମ୍.ଏ. ପଢ଼ିବାକୁ ଛାତ୍ରମାନଙ୍କୁ ପ୍ରଫେସର ବିପିନ ବିହାରୀ ରାୟ ଅର୍ଥ ସାହାଯ୍ୟ ଦେଉଥିବା ଶୁଣି କୃପାସିନ୍ଧୁବାବୁ ମୋ ବିଷୟରେ ତାଙ୍କ ସହିତ କଥାବାର୍ତ୍ତା କରିଥିଲେ ଏବଂ ବିପିନବାବୁଙ୍କୁ ଦେଖା କରିବାକୁ ମୋତେ କହିଲେ । ମୁଁ ବିପିନବାବୁଙ୍କୁ ଦେଖା କଲି । ସେ ରେଭେନ୍ସା କଲେଜର ଅର୍ଥନୀତି ଅଧ୍ୟାପକ ଭୈରବନାଥ ରୋହାତଗୀଙ୍କୁ ପଚାରି ପାଟନାରେ ଏମ୍.ଏ. ପଢ଼ିବାପାଇଁ ମାସକୁ ମୋତେ କୋଡ଼ିଏ ଟଙ୍କା ସାହାଯ୍ୟ ଦେବାକୁ ରାଜି ହେଲେ । ସେତେବେଳେ ପାଟନାରେ ଏମ୍.ଏ. ପଢ଼ିବାକୁ ଜଣେ ଛାତ୍ରକୁ ସର୍ବନିମ୍ନ ମାସକୁ ପ୍ରାୟ ପଚିଶି ଟଙ୍କା ଖର୍ଚ୍ଚ କରିବାକୁ ପଡୁଥାଏ । ମୁଁ ଆମ ଅର୍ଥନୀତି ପ୍ରଫେସର ସୁରେଶ ଚନ୍ଦ୍ର ବର୍ଦ୍ଧନଙ୍କୁ ମୋତେ କିଛି ଅର୍ଥ ସାହାଯ୍ୟ କରିବାକୁ ଅନୁରୋଧ କଲି । ସେ ମୋତେ ମାସକୁ ପାଞ୍ଚଟଙ୍କା ଦେବାକୁ ରାଜି ହେଲେ । ସେଥିଯୋଗୁଁ ମୁଁ ପାଟନାରେ ଏମ୍.ଏ. ପଢ଼ିବାକୁ ଯିବାକୁ ସାହସ କଲି । କଟକ ମେସରୁ ମୁଁ ଘରକୁ ନ ଯାଇ ବିପିନ୍‌ବାବୁଙ୍କଠାରୁ ଟଙ୍କା ନେଇ ପାଟନା ଗଲି । କାରଣ ମୁଁ ଜାଣିଥିଲି ଯେ ଭାଇନା

ମୋତେ ପାଟନାରେ ପଢ଼ିବାକୁ ପଠାଇବାକୁ କେବେହେଲେ ରାଜି ହୋଇ ନ ଥାନ୍ତେ । ବିପିନବାବୁ ତାଙ୍କ କଥା ଅନୁସାରେ ନିୟମିତ ଭାବରେ ଦୁଇବର୍ଷ ମୋତେ ମାସକୁ କୋଡ଼ିଏ ଟଙ୍କା ଦେଉଥିଲେ । ସୁରେଶବାବୁ ଗୋଟିଏ ବର୍ଷ ମାସକୁ ପାଞ୍ଚଟଙ୍କା ଲେଖାଏଁ ଦେଇଥିଲେ । ଶେଷବର୍ଷ ଭାଇନା ବାଧ୍ୟହୋଇ ପ୍ରାୟ ଦୁଇଶହ ଟଙ୍କା ଧାର କରି ଦେଇଥିଲେ । ସେହିଥିରେ ଯତ୍ର କତ୍ର ମୋର ଏମ୍‌.ଏ. ପଢ଼ିବା, ପରୀକ୍ଷା ଫିସ୍‌, ଯିବାଆସିବା ବାଟ ଖର୍ଚ୍ଚ ପ୍ରଭୃତି ଚଳି ଯାଇଥିଲା । ପରବର୍ତ୍ତୀ ସମୟରେ ମୁଁ ବିପିନ୍‌ବାବୁଙ୍କ ଟଙ୍କା ଏବଂ ଘରର ସବୁ ଧାର ଟଙ୍କା ପରିଶୋଧ କରି ଦେଇଥିଲି ।

ଆଗରୁ ମୁଁ କଟକ ବାହାର କଲିକତା ବା ପାଟନା ପ୍ରଭୃତି କୌଣସି ସହରକୁ ଯାଇ ନ ଥିଲି । କଟକ ଓ ପୁରୀ ବ୍ୟତୀତ ଓଡ଼ିଶାର ଅନ୍ୟ ସହରମାନଙ୍କୁ ମଧ୍ୟ ଯାଇ ନ ଥିଲି । ଏମ୍‌.ଏ. ପଢ଼ିବାପାଇଁ ପ୍ରଥମେ କଲିକତା ବାଟେ ପାଟନା ଗଲି । ସେତେବେଳେ ଆମ ଗାଁର ଡାକ୍ତର କୈଳାସ ଚନ୍ଦ୍ର ତ୍ରିପାଠୀ ପାଟନା ମେଡ଼ିକାଲ୍ କଲେଜରୁ ଏମ୍‌.ବି.ବି.ଏସ୍‌. ପାସ୍ କରି ସେ କଲେଜରେ ହାଉସ୍ ସର୍ଜନ ରୂପେ ରହିଥିଲେ । ମୁଁ ତାଙ୍କରି ପାଖରେ ପହଞ୍ଚି ସେଠାରେ ଦୁଇ ତିନି ଦିନ ରହିଲି ଏବଂ ପାଟନା କଲେଜର ଏମ୍‌.ଏ. ଅର୍ଥନୀତି ଶ୍ରେଣୀରେ ନାମ ଲେଖାଇଲି । ତା'ପରେ ସହରର ବିଭିନ୍ନ ସ୍ଥାନରେ ରହିବାର ସୁବିଧା ଅନ୍ୱେଷଣ କଲି । ସେତେବେଳକୁ ଜୁଲାଇ ମାସର ଶେଷ ସପ୍ତାହ ହୋଇଯାଇଥାଏ । ପାଟନା କଲେଜର ଗଙ୍ଗାକୂଳ ରାଣୀଘାଟଠାରେ ମାତ୍ର ଅଠାବନ ସିଟ୍ ଥାଇ ଗୋଟିଏ ପୋଷ୍ଟ ଗ୍ରାଜୁଏଟ୍ ହଷ୍ଟେଲ ଥିଲା । ସେଥିରେ ସବୁସ୍ଥାନ ପୂର୍ଣ୍ଣ ହୋଇ ଯାଇଥିଲା । ସହରରେ ଛାତ୍ରମାନଙ୍କର ଯେଉଁ ମେସ୍ ଥିଲା, ସେଗୁଡ଼ିକ ଅତି ଅପରିଷ୍କାର ଥିବା ଦେଖିଲି । ଗୋଟିଏ ମେସ୍‌ରେ ମଧ୍ୟ ତିନି ଚାରି ଦିନ ରହିଲି । ମାତ୍ର ତାହା ଅତି ଅପରିଷ୍କାର ଥିବାରୁ ସେଠାରେ ରହିବାକୁ ରାଜି ହେଲି ନାହିଁ । ସେତେବେଳେ ଆମ ପୂର୍ବବର୍ଷର ଛାତ୍ର ରାଜକିଶୋର ମିଶ୍ର, ଦୟାନିଧି ପଟ୍ଟନାୟକ ପ୍ରଭୃତି ପାଟନା ସାଇନ୍ସ କଲେଜରେ ପଢୁଥାନ୍ତି । ସେମାନେ ରାଣୀଘାଟ ହଷ୍ଟେଲ ନିକଟରେ ଜଣେ ପଣ୍ଡିତଜୀଙ୍କ ଘରେ ଗୋଟିଏ ଗୋଟିଏ କୋଠରି ଭଡ଼ାନେଇ ରହିଥାନ୍ତି । ସେ ଘରଟା ଗଙ୍ଗାକୂଳରେ ପୋଷ୍ଟଗ୍ରାଜୁଏଟ୍ ହଷ୍ଟେଲ କଡ଼ରେ ଥିବାରୁ ସେମାନେ ହଷ୍ଟେଲର ମେସ୍‌ରେ ଖାଉଥାନ୍ତି ଏବଂ ସେଠାରେ ଗାଧୁଆ ପାଧୁଆ କରୁଥାନ୍ତି । ପଣ୍ଡିତଜୀଙ୍କ ରୁମ୍‌ରେ କେବଳ ରହି ପଢ଼ାପଢ଼ି କରୁଥାନ୍ତି । ରାଜୁବାବୁ ପଣ୍ଡିତଜୀଙ୍କୁ କହି ଉପର ମାହାଲାରେ ଆଉ ଗୋଟିଏ ରୁମ୍ କରାଇଦେଲେ । ସେହି ରୁମ୍‌ରେ ଗୁରୁଚରଣ ଓ ମୁଁ ରହିଲୁ ଏବଂ ପୋଷ୍ଟଗ୍ରାଜୁଏଟ୍ ହଷ୍ଟେଲରେ ଆମେ ମଧ୍ୟ ଗାଧୁଆ ପାଧୁଆ ଓ ଖିଆପିଆ କଲୁ । ହଷ୍ଟେଲରେ ଘରୋଇ ମେସ୍ ଥାଏ । ସେ ହତା ମଧ୍ୟରେ ଲ' କଲେଜ ହଷ୍ଟେଲରେ ଥିବା କେତେକ ଓଡ଼ିଆ ପିଲା ମଧ୍ୟ ସେ ମେସ୍‌ରେ ଖାଉଥାନ୍ତି । ସେଠାରେ ଆମକୁ ହଷ୍ଟେଲରେ ରହିବା ପରି ଲାଗୁଥାଏ କାରଣ ସେ ଘରଟା ହଷ୍ଟେଲ ପାଚେରି ବାହାରେ ଅତି ନିକଟରେ ଥାଏ । ସେଠାରେ ମୁଁ ଏମ୍‌.ଏ. ପଢ଼ିବାର ପ୍ରଥମ ବର୍ଷଟି ରହିଥିଲି । ପରବର୍ଷ ହଷ୍ଟେଲରେ ରହିଥିଲି ।

କଟକ ସହର ହଜାର ବର୍ଷର ସହର ହୋଇଥିବା ବେଳେ ପାଟନା ସହର ତିନିହଜାରରୁ ଅଧିକ ବର୍ଷର ସହର । ପାଟଳିପୁତ୍ର ଉତ୍ତରଭାରତରେ ମଗଧର ନନ୍ଦବଂଶ ଓ ମୌର୍ଯ୍ୟବଂଶ ରାଜାମାନଙ୍କର ବିଭବଶାଳୀ ରାଜଧାନୀ ଥିଲା ବୋଲି ଇତିହାସରୁ ଜଣାଯାଏ । ମୌର୍ଯ୍ୟବଂଶର ରାଜାମାନେ ସମସ୍ତ ଭାରତବର୍ଷରେ ରାଜ୍ୟ ବିସ୍ତାର କରି ବିଶାଳ ରାଜ୍ୟରେ ରାଜତ୍ୱ କରୁଥିଲେ । ମୌର୍ଯ୍ୟବଂଶର ରାଜା ଅଶୋକ କଳିଙ୍ଗଯୁଦ୍ଧରେ ଜୟଲାଭ କରି ଓଡ଼ିଶାରେ ବୌଦ୍ଧଧର୍ମ ପ୍ରଚାର କରାଇଥିଲେ ଏବଂ ସମଗ୍ର ଭାରତବର୍ଷରେ ତାଙ୍କର ବିରାଟ ସାମ୍ରାଜ୍ୟରେ ବୌଦ୍ଧଧର୍ମର ପ୍ରସାର କରିଥିଲେ । ତାହାତ ଇତିହାସର କଥା । ଆଧୁନିକ ପାଟନା ସହରଠାରୁ ଅଳ୍ପ ଦୂରରେ ମୌର୍ଯ୍ୟ ସମ୍ରାଟମାନଙ୍କର ରାଜନଅରର ଭଗ୍ନାଂଶ ଆଜିସୁଦ୍ଧା ଦେଖିବାକୁ ମିଳେ ।

ଆମେ ପଢ଼ିବାବେଳେ ୧୯୩୬ ପର୍ଯ୍ୟନ୍ତ, ପାଟନା ସହର ବିହାର ଓଡ଼ିଶା ପ୍ରଦେଶର ରାଜଧାନୀ ଥିଲା, କଟକଠାରୁ ସେ ସହର ଅନେକ ବଡ଼ ଥିଲା । ଗଙ୍ଗାନଦୀ କୂଳେ କୂଳେ ପାଟନା ସିଟିଠାରୁ ଦାନାପୁର କାଣ୍ଟନମେଣ୍ଟ ପର୍ଯ୍ୟନ୍ତ ସହର ପ୍ରାୟ ପନ୍ଦର ମାଇଲରୁ ଅଧିକ ଲମ୍ବ ଥିଲା । ପାଟନା ସିଟି ଓ ଗୁଲଜାରିବାଗ ଅଞ୍ଚଳ ଜନାକୀର୍ଣ୍ଣ ଏବଂ ଅତି ପୁରାତନ ଅଞ୍ଚଳ । ସେଗୁଡ଼ିକ ସହରର ବସ୍ତି ଅଞ୍ଚଳ । ମାତ୍ର ରାଣୀଘାଟଠାରୁ ବାଙ୍କିପୁର, ମଇଦାନ୍, ଫ୍ରେଜର ରୋଡ୍, ପାଟନା ଜଙ୍କ୍ସନ ରେଳଷ୍ଟେସନ ପ୍ରଭୃତି ଆଧୁନିକ ଅଞ୍ଚଳ । ତାହାପରେ ଗର୍ଦ୍ଦନୀବାଗରେ ପାଟନା ସେକ୍ରେଟେରିଆଟ୍, ସରକାରୀ ଘରଦ୍ୱାର ପ୍ରଭୃତି ଆଧୁନିକ ଏବଂ ପରିଷ୍କାର ପରିଚ୍ଛନ୍ନ ଥିଲା । ରାଣୀଘାଟଠାରୁ ବାଙ୍କିପୁର ଲନ୍ (ବର୍ତ୍ତମାନର ଗାନ୍ଧୀ ମଇଦାନ) ମଧ୍ୟରେ ଗଙ୍ଗାକୂଳରେ ସେତେବେଳେ ଆଇନ କଲେଜ, ବିହାର ଇଞ୍ଜିନିଅରିଂ କଲେଜ, ସାଇନ୍ସ କଲେଜ, ପାଟନା କଲେଜ, ମେଡ଼ିକାଲ କଲେଜ ଓ ବିହାର ନାସନାଲ୍ କଲେଜ ପ୍ରଭୃତି ଉଚ୍ଚଶିକ୍ଷା ଅନୁଷ୍ଠାନମାନ ଅବସ୍ଥିତ ଥିଲା । ପାଟନା ସିଟିରୁ ଲନ ପର୍ଯ୍ୟନ୍ତ ଦୁଇଟି ରାସ୍ତା ଗଙ୍ଗାନଦୀ ସହିତ ସମାନ୍ତରାଳ ଭାବରେ ଚାଲିଥିଲା । ସେତେବେଳେ ସେହି ରାସ୍ତା ଦୁଇଟିକୁ ଲୋକମାନେ ଅପର ଓ ଲୋୟର ରୋଡ଼ ବୋଲି କହୁଥିଲେ । ଅପରରୋଡ଼୍ ବିଶେଷ ଚଉଡ଼ା ଏବଂ ଭଲ ପିଚୁରାସ୍ତା ଥିଲା ଏବଂ ତାହା ଦାନାପୁର ପର୍ଯ୍ୟନ୍ତ ଲମ୍ବିଥିଲା । ସେହି ରୋଡ଼ ଓ ଗଙ୍ଗାନଦୀ ମଧ୍ୟରେ ସମସ୍ତେ ଉଚ୍ଚ ଶିକ୍ଷାନୁଷ୍ଠାନ, ପାଟନା ବିଶ୍ୱବିଦ୍ୟାଳୟ ଅଫିସ୍, ଲାଇବ୍ରେରୀ, ସିନେଟ୍ ହଲ୍ ପ୍ରଭୃତି ଥିଲା । ସେତେବେଳେ ପାଟନାର ଚଉଡ଼ା ରାସ୍ତାରେ ପାଟନା ଦାନାପୁର ବସ୍‌ମାନଙ୍କ ବ୍ୟତୀତ ଅନ୍ୟ କୌଣସି ଟାଉନ୍ ବସ୍ ଚାଲୁ ନ ଥିଲା । ଲୋକମାନେ ଏକ୍କା ଓ ଫିଟନ୍ ପ୍ରଭୃତି ଘୋଡ଼ାଗାଡ଼ିମାନଙ୍କରେ ଯିବାଆସିବା କରୁଥିଲେ । ଏକ୍କା ଖୁବ୍ ଜୋରରେ ଯାଏ ଏବଂ ବସିଥିବା ଲୋକମାନଙ୍କର କିଛି ଧରିବାର ନ ଥାଏ । ପଡ଼ିଯିବା ଭୟ ଥିବାରୁ ମୁଁ ସେଥିରେ ବସୁ ନ ଥିଲି । ପାଟନାର ଏକ୍କା ଓ ଫିଟନେ ଗାଡ଼ିମାନଙ୍କରେ ଘୋଡ଼ାମାନେ ସୁସ୍ଥ, ଧବଳ ଓ ଶକ୍ତ ଥିଲେ ଏବଂ ଦ୍ରୁତ ଗତିରେ ଚାଲୁଥିଲେ । କଟକରେ ଗୋଟାଏ ଘୋଡ଼ା ଟାଣୁଥିବା ଗାଡ଼ି ମୋଟେ ନ ଥିଲା ଏବଂ ସେଠାର ଘୋଡ଼ାଗାଡ଼ିମାନଙ୍କର ଘୋଡ଼ାମାନେ ଦୁର୍ବଳ

ଥିଲେ । ଲମ୍ୱା ଚଉଡ଼ା ରାସ୍ତା ନ ଥିବାରୁ କଟକର ଘୋଡ଼ାଗାଡ଼ିମାନେ ଦ୍ରୁତ ଗତିରେ ଯାଇପାରୁ ନ ଥିଲେ । ବର୍ତ୍ତମାନ ସାଇକେଲ୍ ରିକ୍ସା ଓ ମଟରଗାଡ଼ିମାନଙ୍କ ଯୋଗୁଁ ସହରମାନଙ୍କରୁ ଘୋଡ଼ାଗାଡ଼ିମାନ ଲୋପ ପାଇଯାଇଛି ।

ପାଟନାର ସବୁଠାରୁ ଆକର୍ଷଣୀୟ ବସ୍ତୁ ଥିଲା ସୁଗଭୀର, ସୁନାବ୍ୟା, ଚିରସ୍ରୋତା, ପତିତପାବନୀ ଗଙ୍ଗାନଦୀ । ଆମ ପୋଷ୍ଟଗ୍ରାଜୁଏଟ୍ ହଷ୍ଟେଲଟା ଠିକ୍ ନଦୀ ବନ୍ଧ ଉପରେ ଥିଲା ଏବଂ ପୂର୍ବପାଖ ରୁମ୍‌ମାନଙ୍କରୁ ସୁଦୂରବିସ୍ତାରୀ ବହିଯାଉଥିବା ଗଙ୍ଗାନଦୀର ପାଣି ଦେଖାଯାଏ । ବର୍ଷାଦିନେ ସୋନ୍ ଏବଂ ଗଣ୍ଡକନଦୀର ପାଣି ସହ ଗଙ୍ଗାନଦୀ ଖୁବ୍ ଓସାରିଆ ହୋଇଯାଏ । ହଷ୍ଟେଲ କଡ଼ରେ ଠିଆହୋଇ ଉତ୍ତର ଓ ଉତ୍ତରପୂର୍ବକୁ ଚାହିଁଲେ ନଦୀର ବିସ୍ତୃତ ଜଳରାଶି ସମୁଦ୍ର ପରି ଦେଖାଯାଏ । ଉତ୍ତରପଶ୍ଚିମରୁ ନଈପାଣି ଦକ୍ଷିଣପୂର୍ବକୁ ବହିଯାଉଛି । ବର୍ଷାଦିନେ ଦକ୍ଷିଣପୂର୍ବରୁ ପବନ ବହେ । ନାଉରୀମାନେ ଡଙ୍ଗାରେ ଦକ୍ଷିଣପୂର୍ବକୁ ଯିବାବେଳେ ନଈ ସୁଅରେ ଭାସିଯାଆନ୍ତି । ଉତ୍ତରପଶ୍ଚିମକୁ ଯିବାବେଳେ ଡଙ୍ଗାରେ ପାଲ ଟାଣି ଦିଅନ୍ତି । ମହାନଦୀ ଓ କାଠଯୋଡ଼ି ନଦୀରେ ବର୍ଷାଦିନେ ବଢ଼ି ସମୟରେ ନଈପାଣି ସମୁଦ୍ର ପରି ବିସ୍ତୀର୍ଣ୍ଣ ହୋଇଯାଏ । ମାତ୍ର ବଢ଼ି ଛାଡ଼ିଗଲେ ନଦୀଶଯ୍ୟା ବାଲୁକାମୟ ହୋଇଯାଏ । କିନ୍ତୁ ଗଙ୍ଗାନଦୀରେ ସବୁ ଋତୁରେ ଗଭୀର ଜଳସ୍ରୋତ ବହୁଥାଏ । ଚିରସ୍ରୋତା ଗଙ୍ଗାନଦୀର ଦୃଶ୍ୟ ସବୁ ଋତୁରେ ଅତି ସୁନ୍ଦର । ମାତ୍ର ପାଟନାରେ ନଦୀକୂଳରେ ବୁଲିବାର କୌଣସି ସୁବିଧା ନ ଥାଏ । ସହର ପାଖର ନଦୀର ଧାର ଇଟାରେ ନିର୍ମିତ ବନ୍ଧଦ୍ୱାରା ଆବଦ୍ଧ ହୋଇଛି ମାତ୍ର କଟକର ନଦୀମାନଙ୍କ ପଥର ବନ୍ଧରେ ଯେପରି ଲୋକମାନଙ୍କର ବୁଲିବାର ସୁବିଧା ଅଛି, ସେଠାରେ ସେପରି ରାସ୍ତା କରା ହୋଇ ନାହିଁ କିମ୍ୱା ଲୋକମାନେ ନଈକୂଳରେ ବୁଲନ୍ତି ନାହିଁ । ମୁଁ କେତେଥର ପୋଷ୍ଟଗ୍ରାଜୁଏଟ୍ ହଷ୍ଟେଲରୁ ଇଞ୍ଜିନିଅରିଂ କଲେଜ ଧାରରେ ପାଟନା କଲେଜଯାଏ ଯିବାକୁ ଚେଷ୍ଟାକରିଛି । ମାତ୍ର କଲେଜମାନଙ୍କର ହତାସବୁ ନଈକୂଳକୁ ଲାଗିଯାଇଥାଏ । ନଈକୂଳରେ ଯିବାଆସିବା କରିବାକୁ ମୋଟେ ବାଟ ନ ଥାଏ । ନଈକୂଳରେ ଯେଉଁ ଟିକିଏ ସ୍ଥାନ ଥାଏ, ସେ ସବୁ ମଳମୂତ୍ର ଓ ଆବର୍ଜନାରେ ପୂର୍ଣ୍ଣ ହୋଇଥାଏ । କଟକରେ ନଦୀକୂଳରେ ବୁଲିବାକୁ ଅଭ୍ୟସ୍ତ ଥିବାରୁ, ମୁଁ ଏ ଅବସ୍ଥା ଦେଖି ବ୍ୟଥିତ ହେଉଥାଏ । ନଈକୂଳରେ ବୁଲିବାକୁ ସବୁବେଳେ ଇଚ୍ଛା ହେଉଥାଏ, ମାତ୍ର ବୁଲିବାର ସୁବିଧା ନ ଥିବାରୁ ମନ ତିକ୍ତ ହେଉଥାଏ ।

ପୋଷ୍ଟଗ୍ରାଜୁଏଟ୍ ହଷ୍ଟେଲରେ ରହିଥିବା ଦୁଇବର୍ଷଯାକ ଆମେ ପ୍ରତିଦିନ ସନ୍ଧ୍ୟାବେଳେ ରାଣୀଘାଟଠାରୁ ଅଶୋକ ରୋଡ଼ରେ କଲେଜମାନଙ୍କ ଆଗଦେଇ ଗାନ୍ଧୀ ମଇଦାନ ପର୍ଯ୍ୟନ୍ତ ପ୍ରାୟ ଅଢ଼େଇମାଇଲ ବାଟ ବୁଲି ଯାଉଥିଲୁ । ସେ ରାସ୍ତାରେ କଲେଜମାନଙ୍କ ଆଗରେ ଦୋକାନ ନ ଥାଏ, ଅନ୍ୟ ପାଖରେ ଦୋକାନମାନ ଥାଏ । ରାସ୍ତା କଡ଼ରେ ବିଭିନ୍ନ ଋତୁରେ ଲୋକମାନେ ଉହ୍ମେଇରେ ମକା ପୋଡ଼ି ବିକୁଥାନ୍ତି । ଶୀତଦିନେ ଭଜା ଚୀନାବାଦାମ ଓ କଞ୍ଚା ବୁଟ ପ୍ରଭୃତି ଲୋକମାନେ ବିକୁଥାନ୍ତି । ଇଚ୍ଛାମତେ ସେ ସବୁରୁ

ପୁକାଏ ପୁକାଏ ନେଇ ଚୋବାଇ ଚୋବାଇ ମଇଦାନ ପର୍ଯ୍ୟନ୍ତ ଯାଇ ଅନ୍ଧାର ହେବା ବେଳକୁ ହଷ୍ଟେଲକୁ ଫେରିଆସୁ । ଦିନେ ଦିନେ ସହରର ପଶ୍ଚିମ ପାଖରେ ରେଳଲାଇନ୍ କଡ଼େ କଡ଼େ ଥିବା ବିସ୍ତୀର୍ଣ୍ଣ ପିଜୁଳି ବଗିଚାରେ ବୁଲୁ । ପିଜୁଳି ବଗିଚାମାନଙ୍କର ଜଗୁଆଳମାନେ ଜଣେ ପିଲାଠାରୁ ଦୁଇଅଣା ପଇସା ନେଇ ଯେତେ ଇଚ୍ଛା ସେତେ ଖାଇବାକୁ ଛାଡ଼ିଦିଅନ୍ତି । ଚୋକି କରି ଘରକୁ ନେବାକୁ ଅନୁମତି ଦିଅନ୍ତି ନାହିଁ । ସେମାନେ ଜାଣିଥାନ୍ତି ଯେ ଗୋଟାଏ ପିଲା ବେଶୀ ଖାଇପାରିବ ନାହିଁ । ଖାଇପାରିବା ପିଜୁଳି ପାଇଁ ଦୁଇଅଣା ପଇସା ଯଥେଷ୍ଟ ।

ଆମେ ମୂଳରୁ ପାଟନା ସହରରେ ଖାଇବା ଜିନିଷର ପ୍ରାଚୁର୍ଯ୍ୟ ଅନୁଭବ କଲୁ । ପନିପରିବା, ଦୁଧଦହି, ରାବିଡ଼ି, ପେଡ଼ା, ବିଭିନ୍ନ ପ୍ରକାର ଫଳ ଶସ୍ତାରେ ପ୍ରଚୁର ପରିମାଣରେ ସେଠାରେ ମିଳୁଥାଏ । ସାଧାରଣ ଲୋକମାନେ ଅପରିଷ୍କାର ଲୁଗାପଟା ପିନ୍ଧିଥିଲେ ମଧ ଖାଇପିଇ ସୁସ୍ଥ ଓ ବଳବାନ୍ ଥାଆନ୍ତି । ବହୁଲୋକ ଗଙ୍ଗାକୂଳରେ ଫୁଲ୍‌କାମାନଙ୍କରେ କାଛା ପିନ୍ଧି ଗଙ୍ଗାମାଟି ବୋଳି ହୋଇ ଦଣ୍ଡ ବୈଠକ କରନ୍ତି ଏବଂ କୁସ୍ତି କସରତ୍ କରିସାରି ନଈରେ ପହଁରନ୍ତି । ଶାରୀରିକ ଶକ୍ତି ଦୃଷ୍ଟିରୁ ପାଟନାର ସାଧାରଣ ବିହାରୀ ଲୋକମାନେ ଯେ କଟକର ଓଡ଼ିଆ ଲୋକଙ୍କ ଠାରୁ ଅଧିକ ଶକ୍ତିଶାଳୀ ଥିଲେ, ଏଥିରେ ସନ୍ଦେହ ନାହିଁ । ଏସବୁ ସୁଜଳା ସୁଫଳା ଓ ଉର୍ବରା ଗଙ୍ଗାମାଟିର ପ୍ରଭାବରୁ ସମ୍ଭବ ହୋଇଥିଲା ।

ସେ ସମୟର ଚାରି ପାଞ୍ଚ ବର୍ଷ ପୂର୍ବରୁ ପାଟନା ବିହାର ଓଡ଼ିଶା ପ୍ରଦେଶର ରାଜଧାନୀ ଥିଲା । ସେଥିରେ ପ୍ରଦେଶର ରାଜଭବନ, ସେକ୍ରେଟାରିଆଟ୍, ହାଇକୋର୍ଟ, ବିଶ୍ୱବିଦ୍ୟାଳୟ ଏବଂ ବିଭାଗୀୟ ସର୍ବୋଚ୍ଚ କର୍ତ୍ତାଙ୍କ ଅଫିସ୍‌ମାନ ଥିଲା । ସେଠାରେ ମଧ ମେଡ଼ିକାଲ ଓ ଇଞ୍ଜିନିଅରିଂ କଲେଜ ଏବଂ କଳା ଓ ବିଜ୍ଞାନ କଲେଜରେ ସ୍ନାତକୋତ୍ତର ବିଭାଗମାନ ଥିଲା । ଓଡ଼ିଶାର ପାଞ୍ଚଟା ଜିଲ୍ଲା ସେ ପ୍ରଦେଶର ଗୋଟିଏ ଡିଭିଜନ ମାତ୍ର ଥିଲା । କଟକ ଓଡ଼ିଶା ଡିଭିଜନର ଏବଂ ପାଟନା ସମଗ୍ର ପ୍ରଦେଶର ରାଜଧାନୀ ଥିଲା । ପାଟନାରେ ଚାରିଟା ରେଳଷ୍ଟେସନ ଥିଲା ଏବଂ ପାଟନା ଜଙ୍କ୍‌ସନ୍ ଷ୍ଟେସନ୍ କଟକଠାରୁ ଯଥେଷ୍ଟ ବଡ଼ ଥିଲା । ପାଟନାର ରାସ୍ତାଘାଟ, ହୋଟେଲ, ବଜାର, ଯାନବାହାନ ଓ ଘରଦ୍ୱାର ପ୍ରଭୃତି କଟକ ସହରଠାରୁ ଅଧିକ ଉନ୍ନତ ଥିଲା । ଲୋକସଂଖ୍ୟା ମଧ କଟକର ଲୋକସଂଖ୍ୟାର ଦୁଇଗୁଣରୁ ଅଧିକ ଥିଲା । ଗଙ୍ଗା, ଗଣ୍ଡକ ଓ ସୋନ ନଦୀମାନଙ୍କର ସଂଗମ ସ୍ଥଳରେ ଅବସ୍ଥିତି ପୁରାତନ ପାଟନା ସହର ଧନ, ଜନ, ବାଣିଜ୍ୟ, ବ୍ୟବସାୟ ପ୍ରଭୃତି ସମସ୍ତ ଦୃଷ୍ଟିରୁ ଉତ୍ତରଭାରତର ଗୋଟିଏ ପ୍ରଧାନ ସହର ଥିଲା । କଟକରେ ସେତେବେଳ ପର୍ଯ୍ୟନ୍ତ ହାଇକୋର୍ଟ ପ୍ରତିଷ୍ଠିତ ହୋଇ ନ ଥିଲା । ଓଡ଼ିଶାର କେତେକ ବିଶିଷ୍ଟ ଓକିଲ ପୀତାମ୍ବର ମିଶ୍ର, ଗଜେନ୍ଦ୍ର ପ୍ରସାଦ ଦାସ ପ୍ରଭୃତି ପାଟନା ସହରରେ ରହି ହାଇକୋର୍ଟରେ ଓକିଲାତି କରୁଥିଲେ । ସେ ସମୟରେ ପାଟନା କଲେଜ ଓ ସାଇନ୍ସ କଲେଜରେ କେତେକ ଛାତ୍ର ସେମାନଙ୍କ ଘରକୁ ଯିବାଆସିବା କରୁଥିଲେ । ମୁଁ କିନ୍ତୁ

ସେମାନଙ୍କ ଘରକୁ କେବେହେଲେ ଯାଇ ନାହିଁ । ସେତେବେଳେ ସେ ସହରରେ ମେଡ଼ିକାଲ, ଇଞ୍ଜିନିଅରିଂ, ସାଇନ୍ସ କଲେଜ ଏବଂ ପାଟନା କଲେଜରେ ବହୁ ଓଡ଼ିଆ ପିଲା ଅଣ୍ଡରଗ୍ରାଜୁଏଟ୍ ଏବଂ ପୋଷ୍ଟଗ୍ରାଜୁଏଟ୍ ଶ୍ରେଣୀମାନଙ୍କରେ ପଢୁଥିଲେ । ପ୍ରଥମରୁ ଆମର ସେମାନଙ୍କ ସହିତ ପରିଚୟ ଓ ବନ୍ଧୁତା ହୋଇଥିଲା । ଓଡ଼ିଆ ପିଲାମାନେ ମଧ୍ୟ ବର୍ଷ ବର୍ଷ ଧରି କ୍ରମାନ୍ୱୟରେ ବିଭିନ୍ନ କଲେଜରେ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । କହିବାକୁ ଗଲେ ଶାରୀରିକ ଦୃଷ୍ଟିରୁ ବିହାରୀ ପିଲାମାନେ ଓଡ଼ିଆ ପିଲାମାନଙ୍କ ଠାରୁ ଅଧିକ ବଳଶାଳୀ ଥିଲେ ମଧ୍ୟ ମାନସିକ ବୁଦ୍ଧି ଦୃଷ୍ଟିରୁ ଓଡ଼ିଆ ପିଲାମାନେ ବିଭିନ୍ନ ବିଷୟରେ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ଅଧିକ ଭଲ କରୁଥିଲେ । ଆମର ସମସାମୟିକ ଗିରିଜା ଦାସ ମହାପାତ୍ର ପ୍ରଭୃତି ମେଡ଼ିକାଲ କଲେଜରେ, ଜନାର୍ଦ୍ଦନ ତ୍ରିପାଠୀ, ଆର୍ତ୍ତବନ୍ଧୁ ମହାନ୍ତି, ଆନନ୍ଦ ପାଢ଼ୀ ପ୍ରଭୃତି ଇଞ୍ଜିନିଅରିଂ କଲେଜରେ କ୍ରମାନ୍ୱୟରେ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ପରବର୍ତ୍ତୀ କାଳରେ ସେମାନେ ଓଡ଼ିଶାରେ ସେ ସବୁ ବିଷୟରେ ଉଚ୍ଚପଦବୀ ମାନ ଅଧିକାର କରିଥିଲେ । ଆମ୍ଭେମାନେ ମଧ୍ୟ କଳା ଓ ବିଜ୍ଞାନର ବିଭିନ୍ନ ବିଷୟରେ ସ୍ନାତକୋତ୍ତର ପରୀକ୍ଷାମାନଙ୍କରେ ବିହାରୀ ପିଲାମାନଙ୍କଠାରୁ ଯଥେଷ୍ଟ ଅଧିକ ଭଲ କରିଥିଲୁ । ପାଟନା ବିଶ୍ୱବିଦ୍ୟାଳୟ ସେତେବେଳେ ବିହାର ଓଡ଼ିଶା ପ୍ରଦେଶର ଏକମାତ୍ର ବିଶ୍ୱବିଦ୍ୟାଳୟ ଥିଲା । ଏହା କେବଳ ଗୋଟିଏ ଆଫିଲିଏଟିଙ୍ଗ୍ ବିଶ୍ୱବିଦ୍ୟାଳୟ ଥିଲା । ଏହାର ପ୍ରତ୍ୟକ୍ଷ ପରିଚାଳନା ଅଧୀନରେ କୌଣସି ଶିକ୍ଷାଦାନୀ ସ୍ନାତକ କିମ୍ବା ସ୍ନାତକୋତ୍ତର ବିଭାଗ ନ ଥିଲା । ପ୍ରଦେଶର ଅଧିକାଂଶ ବଡ଼ କଲେଜ ସରକାରୀ କଲେଜ ଥିଲା । କଳା ଓ ବିଜ୍ଞାନରେ ସବୁ ବିଷୟରେ ସ୍ନାତକୋତ୍ତର ଶିକ୍ଷା ପାଟନା କଲେଜ ଓ ସାଇନ୍ସ କଲେଜରେ ଦିଆଯାଉଥିଲା । ରେଭେନ୍ସା କଲେଜରେ କେବଳ ଇଂରାଜୀ ଏମ୍.ଏ. କ୍ଲାସ ଥିଲା । ଏହି ତିନିଗୋଟି କଲେଜ ସରକାରୀ କଲେଜ ଥିଲା ଏବଂ ସେଗୁଡ଼ିକ ପାଟନା ବିଶ୍ୱବିଦ୍ୟାଳୟକୁ ଆଫିଲିଏଟେଡ୍ ହୋଇଥିଲେ । ଡକ୍ଟର ସଚ୍ଚିଦାନନ୍ଦ ସିଂହ ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସେତେବେଳେ କୁଳପତି ବିଶ୍ୱବିଦ୍ୟାଳୟରୁ ଦରମା ପ୍ରାପ୍ତ ପୂର୍ଣ୍ଣସମୟ କର୍ମଚାରୀ ନ ଥିଲେ । ବିଶ୍ୱବିଦ୍ୟାଳୟ ଆଇନ ଅନୁସାରେ ସେଥିରେ ସିନେଟ୍, ସିଣ୍ଡିକେଟ୍ ଓ ଏକାଡେମିକ୍ କାଉନ୍ସିଲ୍ ପ୍ରଭୃତି ଥିଲା । ସେଥିରେ ଆମ ରେଭେନ୍ସା କଲେଜରୁ ଅନେକ ଅଧ୍ୟାପକ ମଧ୍ୟ ସଭ୍ୟ ଥିଲେ । ଆମେ ଥିବା ସମୟରେ ମହେଶ୍ ପ୍ରଧାନ, ବିପିନ ବିହାରୀ ରାୟ, ଆର୍ତ୍ତବଲ୍ଲଭ ମହାନ୍ତି, ରତ୍ନାକର ପତି ପ୍ରଭୃତି ପ୍ରଫେସରମାନେ ବିଶ୍ୱବିଦ୍ୟାଳୟର ବିଭିନ୍ନ ସଭାମାନଙ୍କରେ ଯୋଗ ଦେବାପାଇଁ ଅନେକ ଥର ପାଟନା ଯାଉଥିଲେ ଏବଂ ପାଟନା କଲେଜ ପାଖରେ ଥିବା ପିଣ୍ଟୁ ଓ ରିଗାଲ ହୋଟେଲମାନଙ୍କରେ ରହୁଥିଲେ । ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ ଏବଂ ପ୍ରଫେସର ପ୍ରାଣକୃଷ୍ଣ ପରିଜା ବିଶ୍ୱବିଦ୍ୟାଳୟରେ ପ୍ରାଧାନ୍ୟ ଲାଭ କରିଥିଲେ ଏବଂ ତାହାର ବିଭିନ୍ନ ସଭାମାନଙ୍କରେ ଯୋଗ ଦେବାକୁ ବହୁବାର ପାଟନା ଯାଉଥିଲେ । ସେମାନେ ସେମାନଙ୍କର ସାଙ୍ଗ ଆଇ.ଇ.ଏସ୍. ଅଧ୍ୟାପକମାନଙ୍କ ଘରେ ରହନ୍ତି । ପରିଜା ବରାବର

ପାଟନା କଲେଜର ଇତିହାସ ଅଧ୍ୟାପକ ଆଇ.ଇ.ଏସ୍ ଅଫିସର ତାରପୁରଓ୍ୱାଲାଙ୍କ ଘରେ ରହୁଥିଲେ । ଅନେକଥର ମୁଁ ତାଙ୍କୁ ସେଠାରେ ଭେଟିଥିଲି । ତାରପୁରଓ୍ୱାଲା ଆମ ପୋଷ୍ଟଗ୍ରାଜୁଏଟ୍ ହଷ୍ଟେଲର ଓ୍ୱାର୍ଡେନ୍ ଥିଲେ । ପରିଜାଙ୍କ ପରି ସେ ଅତ୍ୟନ୍ତ ଗମ୍ଭୀର ଓ ସମୟାନୁବର୍ତ୍ତୀ ଥିଲେ ।

ବିଶ୍ୱବିଦ୍ୟାଳୟ ଅଫିସ୍, ଲାଇବ୍ରେରୀ ଓ ସିନେଟ ହଲ ସବୁ ପାଟନା କଲେଜ ଓ ସାଇନ୍ସ କଲେଜ ପାଖରେ ଥିଲା । ବିଶ୍ୱବିଦ୍ୟାଳୟ ଅଫିସ ଅତି ଛୋଟ ଥିଲା । ସେଥିରେ ମୋଟେ ଦଶବାର ଜଣ କିରାଣି ଥାଆନ୍ତି । ସେମାନଙ୍କ ମଧ୍ୟରେ ଆମ ବାଙ୍କୀ ଅଞ୍ଚଳର ଲୋକ ଜଗନ୍ନାଥ ମିଶ୍ର ଏକମାତ୍ର ଓଡ଼ିଆ କିରାଣି ଥିଲେ । ସବୁ ଦରକାରୀ କାର୍ଯ୍ୟରେ ସେ ଆମକୁ ସାହାଯ୍ୟ କରୁଥିଲେ । କୁଳପତି ସେ ଅଫିସକୁ ଆସନ୍ତି ନାହିଁ । ରେଜିଷ୍ଟ୍ରାର ସବୁଦିନେ ଅଫିସକୁ ଆସନ୍ତି ଏବଂ ଆବଶ୍ୟକ ଫାଇଲପତ୍ର କୁଳପତିଙ୍କ ଘରକୁ ପଠାନ୍ତି । ବିଶ୍ୱବିଦ୍ୟାଳୟର ବିଭିନ୍ନ କମିଟି ମିଟିଂ ଲାଇବ୍ରେରୀ ଗୃହରେ ଥିବା ରୁମ୍‌ମାନଙ୍କରେ ହୁଏ । ବିଶ୍ୱବିଦ୍ୟାଳୟ ଲାଇବ୍ରେରୀ ଏବଂ ପାଟନା କଲେଜ ଲାଇବ୍ରେରୀମାନ ଆମ ରେଭେନ୍ସା କଲେଜର କନିକା ଲାଇବ୍ରେରୀଠାରୁ ଛୋଟ ଥିଲା । ସେଠାରେ ବଡ଼ ବଡ଼ ରିଡ଼ିଂରୁମ୍‌ମାନ ନ ଥିଲା ଏବଂ ପ୍ରତିଦିନ ପିଲାମାନେ ରିଡ଼ିଂରୁମ୍‌ରେ ବସି ପଢୁ ନ ଥିଲେ । ପିଲାମାନେ ଲାଇବ୍ରେରୀମାନଙ୍କରୁ ବହି ଇସୁ କରି ଘରକୁ ପଢ଼ିବାକୁ ନିଅନ୍ତି । ଆମେ ଉଭୟ ପାଟନା କଲେଜ ଓ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରୁ ବହି ହଷ୍ଟେଲରେ ପଢ଼ିବାକୁ ଆଣୁଥିଲୁ ।

ପାଟନା କଲେଜରେ ନାମ ଲେଖାଇ ମୁଁ ଦେଖିଲି ଯେ ସେ କଲେଜର ବିଭିନ୍ନ ବିଭାଗମାନଙ୍କର ଘରସବୁ ଆମ ରେଭେନ୍ସା କଲେଜ ପରି ଯୋଜନାବଦ୍ଧ ଭାବରେ ତିଆରି ହୋଇ ନ ଥିଲା । କଲେଜ ଅଫିସ୍, ପ୍ରିନ୍ସପାଲଙ୍କ ଅଫିସ୍, ଆମ ଅର୍ଥନୀତି ସ୍ନାତକୋତ୍ତର ବିଭାଗ ପ୍ରଭୃତି କଲେଜ ହତାରେ ଗଙ୍ଗାକୂଳରେ ଗୋଟିଏ କମ୍ପାନୀ ଅମଳର ଦୋମହଲା ଘରେ ଅବସ୍ଥିତ ଥିଲା । ଇତିହାସ, ଇଂରାଜୀ ପ୍ରଭୃତି ବିଭାଗମାନଙ୍କ ପାଇଁ କଲେଜ ହତା ମଧ୍ୟରେ ଅନ୍ୟ ଦିଗରେ ନୂତନ ଘରସବୁ ତିଆରି ହୋଇଥିଲା । କଲେଜ ପଡ଼ିଆ ମଝିରେ ଗୋଟିଏ ହଲ୍‌ରେ ପିଲାମାନଙ୍କର କମନରୁମ୍ ଥିଲା ଏବଂ ପଡ଼ିଆର ଗୋଟିଏ ପାଖରେ ମୁସଲମାନ ପିଲାମାନଙ୍କ ପାଇଁ ଗୋଟିଏ ଛାତ୍ରାବାସ ନିର୍ମିତ ହୋଇଥିଲା । କଲେଜର ପିଲାମାନଙ୍କ କମନରୁମ୍‌ରେ ବେଶୀ ପିଲା ବସିବାର ବ୍ୟବସ୍ଥା ନ ଥିଲା । କଲେଜର ବି.ଏ. ଓ ଆଇ.ଏ. ଶ୍ରେଣୀରେ ପିଲାମାନଙ୍କ ପାଇଁ କଲେଜ ହତା ମଧ୍ୟରେ ଦୁଇଟା ହଷ୍ଟେଲ ଥିଲା । ସେଥିରେ ମଧ୍ୟ ବହୁ ପିଲାଙ୍କ ରହିବାପାଇଁ ସ୍ଥାନ ନ ଥିଲା । ମୋଟ ଉପରେ କଲେଜର ବିଭିନ୍ନ ବିଭାଗମାନଙ୍କର ଓ ହଷ୍ଟେଲମାନଙ୍କର ଘରସବୁ ବିଭିନ୍ନ ପ୍ରକାରର ଥିଲା ଏବଂ ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ସମୟରେ ତିଆରି ହୋଇଥିଲା । କଲେଜ ହତାରେ ଅଳ୍ପ କେତେକ ଅଧ୍ୟାପକଙ୍କ ପାଇଁ ରହିବା ଘର ଥିଲା । ଆଉ କେତେକ ଅଧ୍ୟାପକଙ୍କ ବାସଗୃହ ରାଣୀଘାଟ ହଷ୍ଟେଲ ଓ ଲ' କଲେଜ ପାଖରେ ତିଆରି ହୋଇଥିଲା । କଲେଜର ଅଧିକାଂଶ ଛାତ୍ରଛାତ୍ରୀ ସହରର ବିଭିନ୍ନ ସ୍ଥାନରେ ରହି କଲେଜରେ ପଢୁଥିଲେ । ସାଇନ୍ସ, ଇଞ୍ଜିନିଅରିଂ

ଓ ମେଡ଼ିକାଲ କଲେଜମାନଙ୍କର ଗୃହ ଏବଂ ସେମାନଙ୍କର ଲାବୋରେଟରୀ, ଲାଇବ୍ରେରୀ ଓ ଛାତ୍ରାବାସ ସବୁ ଯୋଜନାବଦ୍ଧ ହୋଇ ନୂତନ ଭାବରେ ତିଆରି ହୋଇଥିଲା । ସରକାରୀ ପାଟନା କଲେଜ, ସାଇନ୍ସ କଲେଜ, ଆଇନ କଲେଜ ଓ ସେମାନଙ୍କର ଛାତ୍ରାବାସମାନ ଏବଂ ବିଶ୍ୱବିଦ୍ୟାଳୟର ଅଫିସ୍, ଲାଇବ୍ରେରୀ, ସିନେଟ ହଲ୍ ପ୍ରଭୃତି ଗୋଟିଏ ଅଞ୍ଚଳରେ ସଂଲଗ୍ନ ଭାବରେ ଅବସ୍ଥିତ ଥିଲା । ମାତ୍ର ସେଗୁଡ଼ିକ ବିଭିନ୍ନ ସମୟରେ ତିଆରି ହୋଇଥିବାରୁ ଏବଂ ବିଭିନ୍ନ ପରିଚାଳନା ଅଧୀନରେ ଥିବାରୁ ତାହା ଗୋଟିଏ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ନ ଥିଲା ।

ପାଟନା କଲେଜରେ ପଢ଼ିବା ସମୟରେ ମୁଁ ବନାରସ୍ ଓ ଆଲାହାବାଦ୍ ବିଶ୍ୱବିଦ୍ୟାଳୟ ସବୁ ଦେଖିବାକୁ ଯାଇଥିଲି, ଆଲାହାବାଦ ବିଶ୍ୱବିଦ୍ୟାଳୟର ଗୋଟିଏ ଯୋଜନାବଦ୍ଧ କ୍ୟାମ୍ପସ୍ ଥିଲା । ସବୁ ଭାରତୀୟ ବଡ଼ ସହରପରି ଆଲାହାବାଦର ପୁରୁଣା ଚାନ୍ଦିନୀଚଉକ ପ୍ରଭୃତି ଅଞ୍ଚଳ ଜନାକୀର୍ଣ୍ଣ ଓ ଅପରିଷ୍କାର ଏବଂ ସିଭିଲ୍ ଲାଇନ ଅଞ୍ଚଳ ଚଉଡ଼ା ରାସ୍ତା ବିଶିଷ୍ଟ ପରିଷ୍କାର ଅଞ୍ଚଳ ଥିଲା । ବନାରସ୍ ବିଶ୍ୱବିଦ୍ୟାଳୟ ମହାମାନବ ମଦନ ମୋହନ ମାଲବ୍ୟଙ୍କର ଗୋଟିଏ ଅଭିନବ ବିରାଟ କଳ୍ପନା ଥିଲା । ବାରଶହ ଏକର ପରିମିତ ବିଶ୍ୱବିଦ୍ୟାଳୟ ହତା ମଧ୍ୟରେ ଆୟୁର୍ବେଦ, ମେଡ଼ିକାଲ, ଇଞ୍ଜିନିଅରିଂ, ଆର୍ଟସ, ସାଇନ୍ସ ପ୍ରଭୃତି ଅନେକ ଫାକଲ୍‌ଟିର କଲେଜ ଓ ହଷ୍ଟେଲମାନ ଏବଂ ବିଶ୍ୱବିଦ୍ୟାଳୟର ବିଭିନ୍ନ ଅଫିସ୍‌ସବୁ କାମ୍ପସ୍‌ର ମଧ୍ୟଭାଗରେ ଥିଲା । କାମ୍ପସ୍‌ର ବାହାର ବଳୟରେ ଅଧ୍ୟାପକମାନଙ୍କ ପାଇଁ ବହୁ ବାସଗୃହ ତିଆରି ହୋଇଥିଲା । ଆଜିକାଲି ବନାରସ ବିଶ୍ୱବିଦ୍ୟାଳୟ କାମ୍ପସ୍ ଏବଂ ପୃଥିବୀର ବିଭିନ୍ନ ଦେଶରେ ଥିବା ଅକ୍ସଫୋର୍ଡ଼, କ୍ୟାମ୍ବ୍ରିଜ୍, ଷ୍ଟାନ୍‌ଫୋର୍ଡ଼ ପ୍ରଭୃତି ବହୁ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ମାନଙ୍କର ଆଦର୍ଶରେ ଭାରତର ନୂତନ ବିଶ୍ୱବିଦ୍ୟାଳୟମାନଙ୍କର କ୍ୟାମ୍ପସ୍ ସବୁ ନିର୍ମିତ ହେଉଛି । ବନାରସ୍ ବିଶ୍ୱବିଦ୍ୟାଳୟର ବିରାଟ ପ୍ରବେଶ ଦ୍ୱାର ଦେଇ କ୍ୟାମ୍ପସ୍ ମଧ୍ୟରେ ପ୍ରବେଶ କରି ବିଭିନ୍ନ କଲେଜ ଓ ହଷ୍ଟେଲ ସବୁ ଦେଖିଲେ ଗୋଟିଏ ବିରାଟ ଗୁରୁକୁଳ ଓ ବିଦ୍ୟାନଗରୀ ନିର୍ମାଣର ପରିକଳ୍ପନା ମାଲବ୍ୟଙ୍କର ଉଦ୍ଦେଶ୍ୟ ଥିଲା ବୋଲି ସ୍ୱତଃ ମନରେ ଧାରଣା ହୁଏ । ତାଙ୍କର ସେହି ଉଦ୍ଦେଶ୍ୟ ସଫଳ କରିବା ପାଇଁ ସେ ତାଙ୍କ କର୍ମଜୀବନର ଅଧିକାଂଶ ସମୟ ବିନିଯୋଗ କରିଥିଲେ ଏବଂ ଭାରତର ସବୁ ଅଞ୍ଚଳର ରାଜା, ଜମିଦାର ଓ ଧନୀଲୋକମାନଙ୍କଠାରୁ ଅର୍ଥ ସାହାଯ୍ୟ ସଂଗ୍ରହ କରିଥିଲେ । ଭାରତର ଅନ୍ୟ ବିଶ୍ୱବିଦ୍ୟାଳୟମାନଙ୍କର କ୍ୟାମ୍ପସ୍ ସବୁ ସରକାରୀ ପରିକଳ୍ପନା ।

ଆମେ ପଢ଼ିବା ସମୟରେ ପାଟନା କଲେଜର ସ୍ନାତକୋତ୍ତର ଅର୍ଥନୀତି ଶ୍ରେଣୀମାନଙ୍କରେ ଛଅଜଣ ଅଧ୍ୟାପକ ପଢ଼ାଉଥିଲେ । ସେମାନଙ୍କ ମଧ୍ୟରୁ ଡକ୍ଟର ଜ୍ଞାନ ଚାନ୍ଦ ଏବଂ ସଚିନ୍ ଦତ୍ତ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରୁ ଏବଂ ପ୍ରଫେସର ଗୋରଖନାଥ ସିହ୍ନା କାମ୍ବ୍ରିଜର ଡିଗ୍ରୀ ପାଇଥିଲେ । ଜ୍ଞାନଚାନ୍ଦ ବିଭାଗର ମୁଖ୍ୟ ଥିଲେ । ସେ ପ୍ରାଞ୍ଜଳ ଭାବରେ ଭାବବିହ୍ୱଳ ହୋଇ କ୍ଲାସରେ ପଢ଼ାଉଥିଲେ । ସେ ଗବେଷଣା କରି ପାଞ୍ଚ ଛଅଗୋଟି ବହି ଲେଖିଥିଲେ । ସାମ୍ୟବାଦୀ ଅର୍ଥନୀତିରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ଲଣ୍ଡନ ସ୍କୁଲ

ଅଫ୍ ଇକନମିକ୍ସ ଡାଃଥାରେ ତାଙ୍କ ଘରେ ସେ ମାସରେ ଦୁଇଥର ସେମିନାର କରୁଥିଲେ । ସେ ଆମକୁ ଭାରତୀୟ ବିତ୍ତ ବ୍ୟବସ୍ଥା ସ୍ପେସିଆଲ୍ ପେପର ଗ୍ରୁପ୍ ପଢ଼ାଉଥିଲେ । ମୁଁ ସେହି ବିଷୟ ସବୁ ନେଇଥିଲି ଏବଂ ମୁଁ ତାଙ୍କର ପ୍ରିୟ ଛାତ୍ର ଥିଲି । ସେ ଗୋଟିଏ ବର୍ଷ ଭାରତୀୟ ଅର୍ଥନୀତି ସଂସଦର ସଭାପତି ହୋଇଥିଲେ ଏବଂ ସ୍ୱାଧୀନତା ପରେ ଇଣ୍ଟରନାସନାଲ୍ ମନିଟାରୀ ଫଣ୍ଡରେ ତିନିବର୍ଷ ଭାରତ ତରଫରୁ ଜଣେ ବିଶେଷଜ୍ଞ ରୂପେ କାର୍ଯ୍ୟ କରିଥିଲେ ।

ସଚିନ୍ ଦତ୍ତ ରାଜନୀତି ବିଜ୍ଞାନରେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରୁ ବି.ଏ. ପାସ୍ କରି ଆମେ ପଢୁଥିବାବେଳେ ପ୍ରଥମେ ପାଟନା କଲେଜରେ ଯୋଗ ଦେଇଥିଲେ । ପରେ ସେ ଆଇ.ଏ.ଏସ୍.ରେ ଯୋଗଦେଇ ବିହାରରେ ଚିଫ୍ ସେକ୍ରେଟାରୀ ପର୍ଯ୍ୟନ୍ତ ଉଠିଥିଲେ । ଆମେ ପଢୁଥିବାବେଳେ ସେ ପୋଷ୍ଟଗ୍ରାଜୁଏଟ୍ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ ଏବଂ ଆମର ତାଙ୍କ ସହିତ ବିଶେଷ ପରିଚୟ ଥିଲା ।

ଏହି ପରିବେଶରେ ପାଟନା କଲେଜରେ ମୁଁ ଦୁଇବର୍ଷ ଅର୍ଥନୀତିରେ ଏମ୍.ଏ. ପଢ଼ିଥିଲି । ବ୍ୟକ୍ତିଗତ ଭାବରେ ମୋର ସବୁବେଳେ ଅର୍ଥର ଅନଟନ ଥିଲା । ବିପିନ୍‌ବାବୁ ନିୟମିତ ଭାବରେ ମାସକୁ କୋଡ଼ିଏ ଟଙ୍କା ପଠାଉଥିଲେ । ଆମ ପରିବାର ଗୋଟିଏ ଏକାନ୍ନବର୍ତ୍ତୀ ପରିବାର ଥିବାରୁ ଧାନ, ଚାଉଳ କିମ୍ବା ଜମିବାଡ଼ି ବିକି ମୋତେ କିଛି ପଇସା ଦେଉ ନ ଥିଲେ । ପ୍ରଥମ ବର୍ଷ ପରେ ମୁଁ ଘରକୁ ଯାଇ ଶହେଟଙ୍କା ଧାର କରି ଆଣିଥିଲି । ଶେଷରେ ପରୀକ୍ଷା ଫିସ୍ ଦାଖଲ କରିବା ବେଳେ ଭାଇନା ଆଉ ଶହେଟଙ୍କା ଧାର କରି ପଠାଇଥିଲେ । ସେ ସବୁ ଧାରଟଙ୍କା ଏବଂ ବିପିନ୍ ବାବୁଙ୍କ ଟଙ୍କା ପରେ ମୁଁ ଚାକିରି କରିବା ସମୟରେ ପରିଶୋଧ କରିଥିଲି ।

୧୯୪୦ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ଆମେ ପାଟନାରେ ପଢ଼ିବା ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗି ରହିଥାଏ ଏବଂ ଭାରତର ସ୍ୱାଧୀନତା ପାଇଁ ବ୍ୟକ୍ତିଗତ ସତ୍ୟାଗ୍ରହ ଏବଂ କ୍ରିପ୍‌ସ୍ ମିସନ ପ୍ରଭୃତିଙ୍କ ସହିତ କଥାବାର୍ତ୍ତା ଚାଲିଥାଏ । ଭାରତରେ ଯୁଦ୍ଧକାଳୀନ ପରିସ୍ଥିତି ସର୍ବଦା ସରଗରମ ଥାଏ ମାତ୍ର ତାହାଦ୍ୱାରା ଆମ ପଢ଼ାପଢ଼ି କ୍ଷତିଗ୍ରସ୍ତ ହୋଇ ନ ଥାଏ । ୧୯୪୧ ମସିହାର ଡିସେମ୍ବର ମାସରେ ଜାପାନ ଯୁଦ୍ଧରେ ଯୋଗଦେବା ପରେ ଭାରତରେ ଯୁଦ୍ଧ ସମ୍ବନ୍ଧୀୟ ଏବଂ ରାଜନୈତିକ ବାତାବରଣ ଅଧିକ ସରଗରମ ହେଲା । ଦରଦାମ୍ ଦ୍ରୁତ ଗତିରେ ବଢ଼ିଲା । ଆମ ଏମ୍.ଏ. ପରୀକ୍ଷା ଜୁଲାଇ ମାସରେ ହେବାର ଥିଲା । ସେ ବର୍ଷ ଗ୍ରୀଷ୍ମଋତୁରେ ଅତି ଗରମରେ ଆମେ ପାଟନାରେ ରହି ପଢ଼ାପଢ଼ି କରୁଥିଲୁ । ପାଟନାରେ ଶୀତଦିନେ ଅତି ଶୀତ ଓ ଗ୍ରୀଷ୍ମ ଋତୁରେ ଅତି ଗରମ ହୁଏ । ଦୁଇ ତିନିମାସ ଗରମରେ ପଢ଼ିବା ପରେ କେତେକ ପିଲାଙ୍କ ଅନୁରୋଧରେ କୁଳପତି ଏମ୍.ଏ. ପରୀକ୍ଷାକୁ ମାସେ ଘୁଞ୍ଚାଇଦେଲେ । ଜୁଲାଇ ପରିବର୍ତ୍ତେ ଅଗଷ୍ଟ ପ୍ରଥମ ସପ୍ତାହରେ ପରୀକ୍ଷା ହେଲା । ସାତଟି ପତ୍ର ପରୀକ୍ଷା ଶେଷ ହେବା ପରେ ଅଗଷ୍ଟ ନଅ ତାରିଖରେ ଶେଷ ପତ୍ର ପରୀକ୍ଷା ହେବାର ଥିଲା । ମାତ୍ର ନଅ ତାରିଖ ଭୋର ସମୟରୁ ଭାରତ ଛାଡ଼

ଆନ୍ଦୋଳନ ତୀବ୍ର ହେଲା ଏବଂ ଗାନ୍ଧିଜୀଙ୍କ ସମେତ ଚାରିଆଡ଼େ କଂଗ୍ରେସ ନେତାମାନେ ଗିରଫ ହେଲେ । ଆମ୍ଭେମାନେ ଅତିକଷ୍ଟରେ ଶେଷ ପତ୍ରର ପରୀକ୍ଷା ଦେଇଥିଲୁ । ତାହାପରେ ପାଟନାରେ ଯେଉଁ ତୁମୁଳ ହିଂସାକାଣ୍ଡ ହେଲା, କିପରି ସେକ୍ରେଟାରିଆଟ୍ ଘେରାଉ ଓ ଗୁଳି କାଣ୍ଡ ହେଲା, ଲୋକମାନେ କିପରି ରେଲଲାଇନ୍ ଉପାଡ଼ି ଫୋପାଡ଼ି ଦେଲେ ଏବଂ ରାସ୍ତାଘାଟ ବନ୍ଦ କରିଦେଲେ, ପରୀକ୍ଷା ପରେ ଆମେ କିପରି ଘରକୁ ଫେରି ନ ପାରି ସେଠାରେ ଆଠ ନଅଦିନ ଅଟକିଗଲୁ ଏବଂ ଶେଷରେ କିପରି ରାଞ୍ଚିବାଟେ କଟକ ଫେରିଲୁ, ସେ ସବୁ ବିଷୟ ମୁଁ ମୋର 'ବିଂଶ ଶତାବ୍ଦୀର ଓଡ଼ିଶା– ମୋ ଅନୁଭୂତି' ବହିରେ ବିଶଦ ଭାବରେ ବର୍ଣ୍ଣନା କରିଛି । ଏଠାରେ ତାହାର ପୁନରାବୃତ୍ତି କରିବା ସମୀଚୀନ ମନେ କରୁ ନାହିଁ ।

ପାଟନାରେ ପଢ଼ିବା ଦୁଇବର୍ଷ ସମୟ ବନ୍ଧୁମେଳରେ ଏକ ପ୍ରକାର ଶାନ୍ତିରେ କଟିଥିଲା । ଶେଷ ପର୍ଯ୍ୟାୟରେ ଏପରି ଗଣ୍ଡଗୋଳ ଘଟିଥିଲା । ଏମ୍.ଏ. ପରୀକ୍ଷା କିନ୍ତୁ ତାହାଦ୍ୱାରା ବାଧାପ୍ରାପ୍ତ ହୋଇ ନ ଥିଲା । ତାହା ମୋର ଛାତ୍ର ଜୀବନର ଶେଷ ପରୀକ୍ଷା ଥିଲା ଏବଂ ସେଥିରେ ମୁଁ ଛାତ୍ର ଜୀବନରେ ସବୁ ପରୀକ୍ଷା ଅପେକ୍ଷା ଅଧିକ ଭଲ କରିଥିଲି । ୧୯୪୨ ମସିହା ପାଟନା ବିଶ୍ୱବିଦ୍ୟାଳୟର ଅର୍ଥନୀତି ଏମ୍.ଏ. ପରୀକ୍ଷାରେ ମୁଁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାସ୍ କରିଥିଲି ଏବଂ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ଓ ଦୁଇଶହ ଟଙ୍କାର ପୁସ୍ତକ ପୁରସ୍କାର ପାଇଥିଲି ।

# ଗତିପଥ ଅନ୍ୱେଷଣ

ଭାରତର ସ୍ୱାଧୀନତା ଆନ୍ଦୋଳନର ଘଡ଼ିସନ୍ଧି ସମୟରେ ୧୯୪୨ ମସିହା ଅଗଷ୍ଟ ନଅ ତାରିଖରେ ଏମ୍.ଏ. ପରୀକ୍ଷା ଶେଷ କରି ଘରକୁ ଆସି ନ ପାରି ଦଶବାର ଦିନ ପାଟନା ସହରରେ ଅଟକି ଯାଇଥିଲି । ଦଶବାର ଦିନ ପରେ ପାଟନାରୁ ରାଞ୍ଚିକୁ ବସ୍‌ରେ ଆସି ସେଠାରୁ ରେଳ ଯୋଗେ କଟକ ଫେରିଲି ଏବଂ ସେଠାରୁ ସଙ୍ଗେ ସଙ୍ଗେ ଗାଁକୁ ଚାଲିଗଲି । ଗାଁରେ ମୋତେ ଦଶବାର ଦିନ ରହି କଟକ ଫେରିଲି । ଦେଶରେ ଗଣ୍ଡଗୋଳ ଲାଗିଥାଏ । ଆମ ପରୀକ୍ଷା ଫଳ ବାହାରି ନ ଥାଏ । କଟକରେ ଗୋଟିଏ ମେସ୍‌ରେ ରହି ଖର୍ଚ୍ଚ ତୁଲାଇବାକୁ ଦିନକୁ ତିନିଗୋଟି ଟ୍ୟୁସନ୍ କରୁଥାଏ ଏବଂ ବିଭିନ୍ନ ବିଭାଗରେ ଚାକିରି ଖୋଜୁଥାଏ । ମିସନ ହାଇସ୍କୁଲରେ ସେତେବେଳେ ଜଣେ ଶିକ୍ଷକଙ୍କ ସ୍ଥାନ ଖାଲିଥାଏ । ସାମୟିକ ଭାବରେ ସେଠାରେ ଚାକିରି କରିବାକୁ ଦରଖାସ୍ତ କରିଥାଏ । ସାଧାରଣ ଭାବେ ଶିକ୍ଷିତ ଲୋକଙ୍କ ପାଇଁ ସେତେବେଳେ ଚାକିରି ସଂଖ୍ୟା ଅତି ଅଳ୍ପ ଥିଲା । ପ୍ରତିବର୍ଷ ସେମାନେ ଚାରି ପାଞ୍ଚ ଜଣ ସବ୍‌ଡେପୁଟି, ଦୁଇ ଚାରି ଜଣ ସବ୍‌ରେଜିଷ୍ଟ୍ରାର ଏବଂ କେତେଜଣ ଶିକ୍ଷକ ଓ କିରାଣି ଚାକିରି ରହିବାକୁ ସୁବିଧା ପାଉଥିଲେ । ସମୁଦାୟ ମିଶି ବର୍ଷକୁ ପନ୍ଦର କୋଡ଼ିଏଟି ସ୍ଥାନରୁ ଅଧିକ ପୂରଣ ହେଉ ନ ଥାଏ । ପ୍ରଥମରୁ ମୁଁ ସବ୍ ରେଜିଷ୍ଟ୍ରାର, ଶିକ୍ଷକ ବା କିରାଣି ହେବାକୁ ଇଚ୍ଛା କରି ନ ଥିଲି କିମ୍ୱା ଚେଷ୍ଟାକରି ନ ଥିଲି । ମିସନ ସ୍କୁଲରେ କେବଳ ଟ୍ୟୁସନ କରିବା ପରି କେତେ ମାସ ରହିବାକୁ ଚେଷ୍ଟା କରିଥିଲି । ଏମ୍.ଏ. ପଢ଼ିଲାବେଳେ ଦୁଇବର୍ଷ ଯାକ ସବ୍‌ଡେପୁଟି ଚାକିରି ପାଇଁ ଦରଖାସ୍ତ କରିଥିଲି ଏବଂ ସେଥିପାଇଁ ଦୁଇବର୍ଷଯାକ ବିହାର ଓଡ଼ିଶା ଓ ମଧ୍ୟପ୍ରଦେଶର ଜଏଣ୍ଟ ପବ୍ଲିକ ସର୍ଭିସ୍ କମିସନରେ ସାକ୍ଷାତ କରି ମୌଖିକ ପରୀକ୍ଷା (Interview) ଦେଇଥିଲି । ମାତ୍ର ଦୁଇଥରଯାକ ସେଥିରେ କୃତକାର୍ଯ୍ୟ ହୋଇ ନ ଥିଲି । କୃତକାର୍ଯ୍ୟ ହୋଇଥିଲେ ପଢ଼ା ଛାଡ଼ି ଦେଇଥାନ୍ତି । ଏମ୍.ଏ. ପରୀକ୍ଷା ପରେ ମଧ୍ୟ ସେହି ଚାକିରି ପାଇଁ ଦରଖାସ୍ତ କରିଥିଲି । ସେତେବେଳେଯାଏ ଇଣ୍ଟରଭିଉ ହୋଇ ନ ଥାଏ । ସେ ବର୍ଷ ପ୍ରାୟ ସେପ୍ଟେମ୍ବର ଶେଷ କିମ୍ୱା ଅକ୍ଟୋବର ପ୍ରଥମ ସପ୍ତାହରେ ଏମ୍.ଏ. ପରୀକ୍ଷାର ଫଳ ବାହାରିଲା । ସେଥିରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିବାରୁ ଉଚ୍ଚଚାକିରି ପାଇବାର ଆଶା ମୋତେ ଉଜ୍ଜ୍ୱଳ ଦେଖା ଯାଉଥିଲା । ମିସନ ସ୍କୁଲରେ ଶିକ୍ଷକ ପଦ ପାଇଥିଲି, ମାତ୍ର ସେହି ସମୟରେ ପରୀକ୍ଷା ଫଳ ବାହାରିବାରୁ ସେଥିରେ ଯୋଗ ଦେଲି ନାହିଁ ।

ପରୀକ୍ଷାଫଳ ପ୍ରକାଶ ପାଇବା ପରେ କଲେଜରେ ଲେକ୍‌ଚରର ପଦ ପାଇବାପାଇଁ ସେତେବେଳେ ଡି.ପି.ଆଇ. ଥିବା ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କୁ ଦେଖା କରିଥିଲି ।

ସେତେବେଳେ ରେଭେନ୍ସା କଲେଜ ଓଡ଼ିଶାରେ ଏକମାତ୍ର ସରକାରୀ କଲେଜ ଥିଲା । ସେଥିରେ ଅର୍ଥନୀତିରେ କୌଣସି ଲେକ୍‌ଚରର ପଦ ଖାଲି ନ ଥିଲା । କଲେଜରେ କୌଣସି ଲେକ୍‌ଚରର ପଦ ଖାଲି ନ ଥିବାରୁ ଡି.ପି.ଆଇ. ମୋତେ ଟ୍ରେନିଂ କଲେଜରେ ପଢ଼ିବାକୁ ପରାମର୍ଶ ଦେଲେ । ମାତ୍ର ମୁଁ ତାଙ୍କ ପରାମର୍ଶ ଗ୍ରହଣ କଲି ନାହିଁ । କାରଣ ସେହି ଟ୍ରେନିଂ କଲେଜରେ ନାମ ଲେଖାଇବାକୁ ଇଚ୍ଛା ନ କରି ମୁଁ ଏତେ କଷ୍ଟ ସହ୍ୟ କରି ପାଟନାରେ ଦୁଇବର୍ଷ ପଢ଼ିଥିଲି । ଦୁଇବର୍ଷ ପରେ ଉଚ୍ଚଶ୍ରେଣୀରେ ଏମ୍.ଏ. ପାସ୍ କରି ପୁଣି ସେହି ଟ୍ରେନିଂ କଲେଜରେ ନାମ ଲେଖାଇବାକୁ ମୁଁ ଇଚ୍ଛା କଲିନାହିଁ । ମାତ୍ର ସେତେବେଳେ ଉଚ୍ଚଶ୍ରେଣୀରେ ଏମ୍.ଏ. ପାସ୍ କରି ମଧ୍ୟ ମେଧାବୀ ଛାତ୍ରମାନେ ଚାକିରି ଅଭାବରୁ ଟ୍ରେନିଂ କଲେଜରେ ବର୍ଷେ ଲେଖାଏଁ ପଢୁଥିଲେ । ସଦାଶିବ ମିଶ୍ର ଅର୍ଥନୀତିରେ ପ୍ରଥମ ଶ୍ରେଣୀରେ ଏମ୍.ଏ. ପାସ୍ କରି ଟ୍ରେନିଂ କଲେଜରେ ଏକ ବର୍ଷ ପଢ଼ିଥିଲେ । ମାୟାଧର ମାନସିଂହ ମଧ୍ୟ ଏମ୍.ଏ. ପାସ୍ କରି ଟ୍ରେନିଂ କଲେଜରେ ବର୍ଷେ ପଢ଼ିଥିଲେ । ସେ ଯାହାହେଉ, ମୁଁ ଟ୍ରେନିଂ କଲେଜରେ ପଢ଼ିବାକୁ ଇଚ୍ଛା ନ କରି ଅନ୍ୟ ବିଭାଗମାନଙ୍କରେ ଚାକିରି କରିବାକୁ ଉଦ୍ୟମ କଲି ।

ସେ ବର୍ଷର ସବ୍‌ଡେପୁଟି ପଦ ପାଇଁ ଇଣ୍ଟରଭିଉ ନଭେମ୍ବର ମାସରେ ହେଲା । ସେତେବେଳକୁ ଆମ ଏମ୍.ଏ. ପରୀକ୍ଷାର ଫଳ ବାହାରିସାରିଥାଏ ଏବଂ ମୁଁ କଟକରେ ଟ୍ୟୁସନ କରି ଗୋଟିଏ ମେସରେ ରହିଥାଏ । ସବ୍‌ଡେପୁଟି ଚାକିରି ଇଣ୍ଟରଭିଉ ପରେ ଜାଣିପାରିଲି ଯେ ସେଥିରେ ମୁଁ ପ୍ରଥମ ହୋଇଥିଲି । ମାତ୍ର ଇଣ୍ଟରଭିଉ ଫଳ ବାହାରି ଚାକିରିରେ ଯୋଗ ଦେବାକୁ ସାତ ଆଠ ମାସ ଲାଗିଯିବ । ସେହି ସମୟ କଟକରେ ପୂର୍ବପରି ଟ୍ୟୁସନ କରି ରହିବାକୁ ସ୍ଥିର କଲି । କିନ୍ତୁ ଅଳ୍ପଦିନ ପରେ ତାଳଚେର ରାଜ୍ୟର ଯୁବରାଜ ହୃଦୟବଲ୍ଲଭ ଦେବ ମୋତେ ଦିନେ ତାଙ୍କ କଟକ ତାଳଚେର କୋଠିକୁ ଡକାଇଲେ । ତାଙ୍କର ବଡ଼ପୁଅ ସୌଭାଗ୍ୟଚନ୍ଦ୍ର ଦେବ ସେତେବେଳେ ରେଭେନ୍ସା କଲେଜର ପ୍ରଥମ ବାର୍ଷିକ ଶ୍ରେଣୀରେ ପଢୁଥାଏ । ମାତ୍ର କଟକରେ ତାର ଦେହ ଭଲ ରହୁ ନ ଥିବାରୁ ଯୁବରାଜ ତାକୁ ତାଳଚେର ନେଇ ଜଣେ ଦୁଇଜଣ ଗୃହଶିକ୍ଷକ ରଖି ପଢ଼ାଇବାକୁ ଇଚ୍ଛା କରିଥିଲେ । ସେଥିପାଇଁ ସେ ରେଭେନ୍ସା କଲେଜ ପ୍ରିନ୍ସପାଲଙ୍କ ଠାରୁ ଅନୁମତି ନେଇଥିଲେ । ଯୁବରାଜ ମୋତେ ତାଳଚେରଗଡ଼ରେ ରହି ଟିକାୟତଙ୍କୁ ଇଂରାଜୀ, ଲଜିକ ଓ ଅର୍ଥନୀତି ପଢ଼ାଇବାକୁ କହିଲେ । ଓଡ଼ିଆ ଏବଂ ସଂସ୍କୃତ ପଢ଼ାଇବା ପାଇଁ ସେ ସେହି ତାଳଚେର ସହରର ଜଣେ ପଣ୍ଡିତଙ୍କୁ ନିଯୁକ୍ତ କରିଥିଲେ । ମୁଁ ମାସକୁ ଶହେଟଙ୍କା ଦରମାରେ ସାତ ଆଠ ମାସ ତାଳଚେରରେ ରହି ଟିକାୟତଙ୍କୁ ପଢ଼ାଇବା ପାଇଁ ରାଜି ହେଲି । ତାଳଚେରଗଡ଼ରେ ରହିବାର ମୋର ଅଭିଜ୍ଞତା, ରାଜପରିବାର ଲୋକଙ୍କର ଚାଲିଚଳଣି ଏବଂ ତାଳଚେର ସହରର ଲୋକମାନଙ୍କ ଚଳିବା ରୀତି ମୁଁ ମୋର ''ବିଂଶ ଶତାବ୍ଦୀରେ ଓଡ଼ିଶା'' ବହିରେ ଲେଖିଛି ।

ତାଳଚେରଗଡ଼ଠାରେ ପ୍ରାୟ ଆଠମାସ ରହିବାପରେ ୧୯୪୩ ମସିହା ଜୁଲାଇ ମାସରେ ସବ୍‌ଡେପୁଟି ଚାକିରି ପାଇଁ ମେଡ଼ିକାଲ ବୋର୍ଡ଼ ହେଲା । ଦୁର୍ଭାଗ୍ୟକୁ ମୋର ହୃତ୍‌ପିଣ୍ଡରେ ଅନିୟମିତ ସ୍ପନ୍ଦନ ଥିବା କହି ମେଡ଼ିକାଲ ବୋର୍ଡ଼ ମୋତେ ସେ ଚାକିରିକି ସୁପାରିସ କଲେ ନାହିଁ । ଏ କଥା ଜାଣି ମୁଁ ହତାଶ ହେଲି । ତାହା ପୂର୍ବରୁ ଓଡ଼ିଶା ସରକାରଙ୍କ ଅଧୀନରେ ସବ୍‌ଡେପୁଟି ଚାକିରିଠାରୁ ଅଳ୍ପ ଅଧିକ ଦରମା ଥିବା ଜୁନିଅର ମାର୍କେଟିଂ ଅଫିସର ଚାକିରିଟିଏ ପାଇଥିଲି । ମାତ୍ର ସବ୍‌ଡେପୁଟି ଚାକିରି ଆଶାରେ ମୁଁ ତାକୁ ଗ୍ରହଣ କରି ନ ଥିଲି । ସବ୍‌ଡେପୁଟି ଚାକିରି ନ ହେବାରୁ ମୁଁ କଅଣ କରିବି କିଛି ସ୍ଥିର କରିପାରି ନ ଥିଲି । ତାଳଚେର ରାଜବାଟିରେ ମଧ୍ୟ ଟିକାୟତଙ୍କୁ ପଢ଼ାଇବା କାର୍ଯ୍ୟ ଛାଡ଼ିଦେଇ ଆସିଥିଲି । ବିଫଳ ମନୋରଥ ହୋଇ କଟକରେ ଛଅ ସାତ ଦିନ ବୁଲିଲି । ତା'ପରେ ପରିଜାଙ୍କଠାରୁ ଖଣ୍ଡେ ଚିଠି ନେଇ କଲିକତାରେ ସୁଭାଷ ବୋଷଙ୍କ ଭାଇ ହୃଦରୋଗ ବିଶେଷଜ୍ଞ ସୁନୀଲ ବୋଷଙ୍କୁ ଭେଟିବାକୁ ଗଲି । ସୁନୀଲ ବୋଷ ପରିଜାଙ୍କର ସହପାଠୀ ବନ୍ଧୁ ଥିଲେ । ସେ ମୋତେ ଟିକିନିଖି ଭାବରେ ପରୀକ୍ଷା କରି ମୋର ହୃତପିଣ୍ଡରେ କୌଣସି ରୋଗ ନ ଥିବାର କହିଲେ । ହୃତପିଣ୍ଡର ଏକ୍ସରେ ଫଟୋ ଏବଂ ସୁନୀଲ ବୋଷଙ୍କ ରିପୋର୍ଟ ଧରି କଟକ ଫେରିଲି । ତାହାପରେ ସେ ରିପୋର୍ଟ ସ୍ୱାସ୍ଥ୍ୟବିଭାଗର ଡିରେକ୍ଟର କର୍ଣ୍ଣେଲ ଚୋପ୍ରାଙ୍କ ନିକଟରେ ଦାଖଲ କରି ମେଡ଼ିକାଲ ବୋର୍ଡ଼ ରିପୋର୍ଟର ପୁନର୍ବିଚାର କରିବା ପାଇଁ ଆବେଦନ କଲି । ଡିରେକ୍ଟର ତିନିମାସ ପରେ ଆଉଥରେ ମେଡ଼ିକାଲ ବୋର୍ଡ଼ ଦ୍ୱାରା ପରୀକ୍ଷାପାଇଁ ଆଦେଶ ଦେଲେ ।

ଏଥି ମଧ୍ୟରେ ମୁଁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଗୋଟିଏ ରିସର୍ଚ୍ଚ ସ୍କଲାରସିପ୍ ପାଇଥିଲି । ସେଥିରେ ଯୋଗ ଦେବି କି ନାହିଁ ସ୍ଥିର କରିପାରି ନ ଥିଲି କାରଣ ଚାକିରି କରିବାକୁ ଅଧିକ ଇଚ୍ଛୁକ ଥିଲି । ସେହି ସମୟରେ ଚାକିରି ପାଇଁ କଟକର କଲେକ୍ଟର ଏଲ୍.ପି. ସିହ୍ନାଙ୍କୁ ଥରେ ଭେଟିଥିଲି । ସେ ମୋତେ ଯୋଗାଣ ବିଭାଗରେ ଗୋଟିଏ ସୁପରଭାଇଜର ଅଫ୍ ସପ୍ଲାଇଜ ପଦରେ ନିଯୁକ୍ତି ଦେଇ ଯାଜପୁର ସବ୍‌ଡିଭିଜନରେ ଯୋଗ ଦେବାକୁ ଆଦେଶ ଦେଇଥିଲେ । ସୁପରଭାଇଜର ଅଫ୍ ସପ୍ଲାଇଜ ପଦର ଦରମା ମାସକୁ ଶହେ ପଚିଶ ଟଙ୍କା ଥିଲା । ସବ୍‌ଡେପୁଟି ଚାକିରି ଠାରୁ ତାହା ମାସକୁ ପଚିଶ ଟଙ୍କା ଅଧିକ ଥିଲା । ମାତ୍ର ଚାକିରି ଅସ୍ଥାୟୀ ଥିଲା ଏବଂ ସବ୍‌ଡେପୁଟି ଚାକିରି ଠାରୁ ତାର ମାନ୍ୟତା କମ୍ ଥିଲା । ଯାହାହେଉ ଅନ୍ୟ ପନ୍ଥା ନ ଥିବାରୁ ସେହି ଚାକିରିରେ ଯାଜପୁରଠାରେ ଯୋଗ ଦେଲି । ପାଟନାରେ ରିସର୍ଚ୍ଚ ସ୍କଲାରସିପ୍ ଛାଡ଼ିଦେଲି । ସେହି ଚାକିରିରେ ଆଉ ତିନି ମାସ ପରେ ସବ୍‌ଡେପୁଟି ଚାକିରିପାଇଁ ମେଡ଼ିକାଲ ବୋର୍ଡ଼ ପରୀକ୍ଷାରେ ଯୋଗ ଦେଇଥିଲି । କିନ୍ତୁ ସେମାନେ ସେମାନଙ୍କର ପୂର୍ବରୁ ଦେଇଥିବା ମତ ବଦଳାଇଲେ ନାହିଁ । ସେମାନେ ଭାବିଲେ ମୁଁ ସୁନୀଲ୍ ବୋଷଙ୍କ ଠାରୁ ରିପୋର୍ଟ ଆଣି ତାଙ୍କର ମତର ପ୍ରତିବାଦ କରିଛି । ସେ ଯାହାହେଉ ସବ୍‌ଡେପୁଟି ଚାକିରିର ଆଶା ସେହିଠାରୁ ପରିସମାପ୍ତ ହେଲା ଏବଂ ମୁଁ ଯୋଗାଣ ବିଭାଗ ଚାକିରିରେ ଯାଜପୁରଠାରେ କାର୍ଯ୍ୟ କଲି ।

ଆଜି ପଛକୁ ଚାହିଁ ଭାବୁଛି ଯେ ସେ ବର୍ଷ ମେଡ଼ିକାଲ ବୋର୍ଡରେ ଆଉ ଯେଉଁ ଦୁଇ ତିନି ଜଣ ପରୀକ୍ଷିତ ହୋଇଥିଲେ ସେମାନେ ମୋ ଆଗରୁ ଅନେକ ବର୍ଷ ହେଲା ମରିଗଲେଣି । ସେମାନେ ପରବର୍ତ୍ତୀ ଜୀବନରେ କେହି ଡେପୁଟି ସେକ୍ରେଟାରୀ କିମ୍ବା ଆଡିସନାଲ୍ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ପଦବୀରୁ ଅଧିକ ଉଚ୍ଚ ପଦବୀକୁ ଉଠି ନାହାନ୍ତି । ସେତେବେଳେ ସିଧାସଳଖ ଡେପୁଟି ମାଜିଷ୍ଟ୍ରେଟ୍ ପଦରେ ନିଯୁକ୍ତି ହେଉ ନ ଥିଲା । ଯୁଦ୍ଧକାଳ ହେତୁ ଆଇ.ସି.ଏସ୍. ପରୀକ୍ଷା ମଧ୍ୟ ବନ୍ଦ ଥିଲା । ଅଫିସରମାନେ ସବ୍‌ଡେପୁଟି ପଦରୁ ଉତ୍କୃଷ୍ଟ କାର୍ଯ୍ୟ ଯୋଗୁଁ ପଦୋନ୍ନତି ପାଇ ସରକାରଙ୍କର ବିଭିନ୍ନ ବିଭାଗର ସେକ୍ରେଟାରୀ ପର୍ଯ୍ୟନ୍ତ ଉଚ୍ଚ ପଦବୀକୁ ଉଠିଛନ୍ତି । ମୋ ପୂର୍ବରୁ ଏବଂ ପରେ ସେ ପଦରେ ଚାକିରି ପାଇଥିବା ଅଳ୍ପ କେତେକ ବ୍ୟକ୍ତି ସେ ପଦବୀ ପର୍ଯ୍ୟନ୍ତ ଉଠିଛନ୍ତି । ମୁଁ ସେ ଚାକିରି ପାଇଥିଲେ ବହୁ ବର୍ଷ ପରେ ଏବଂ ବହୁ ଉପରିସ୍ଥ ଅଫିସରଙ୍କ ସୁପାରିସ୍‌ରେ ଅତି ବେଶିହେଲେ ସେ ପଦ ପର୍ଯ୍ୟନ୍ତ ଉଠିପାରିଥାନ୍ତି । ଅନେକ ବିଶ୍ୱବିଦ୍ୟାଳୟ ଅତି ଉଚ୍ଚ ଡିଗ୍ରି ପାଇଥିବା ବ୍ୟକ୍ତି କେବଳ ସାଧାରଣ ଡେପୁଟି ମାଜିଷ୍ଟ୍ରେଟ୍ ପର୍ଯ୍ୟନ୍ତ ଉଠି ଅବସର ନେଇଛନ୍ତି । ସର୍ବୋଚ୍ଚ ପଦବୀ ପାଇବା ଅଧିକାଂଶ ଅଫିସରଙ୍କ ଭାଗ୍ୟରେ ଘଟେ ନାହିଁ । ସେ ଯାହାହେଉ ସେ ଚାକିରିରେ ଯୋଗ ଦେଇଥିଲେ ମୋ ଜୀବନର ଗତିପଥ ଭିନ୍ନ ହୋଇଥାନ୍ତା । ବିଲାତ ଯାଇ ଲଣ୍ଡନ ସ୍କୁଲ୍ ଅଫ୍ ଇକନମିକ୍ସରେ ପଢ଼ିବା ସୁଯୋଗ ମିଳି ନ ଥାନ୍ତା କିମ୍ବା ପୃଥିବୀର ବିଭିନ୍ନ ଦେଶରେ ବିଶ୍ୱବିଦ୍ୟାଳୟମାନ ଦେଖିବା ସମ୍ଭବ ହୋଇ ନ ଥାନ୍ତା କିମ୍ବା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହେବା ସୁଯୋଗ ମିଳି ନ ଥାନ୍ତା । ଏହି ସବୁ ଘଟଣା ବିଚାରକଲେ ମନରେ ଧାରଣା ହୁଏ ଯେ ପ୍ରତ୍ୟେକ ମନୁଷ୍ୟର ଜୀବନର ଗତିପଥ ନିୟତି ସ୍ଥିର କରିଦିଏ । କେଉଁଠାରେ କି କାର୍ଯ୍ୟ କରିବ, କାହାକୁ ଭେଟିବ, କିଏ ଶତ୍ରୁ ବା ମିତ୍ର ହେବ, କେଉଁ ପ୍ରକାର ସୁଖ ବା ଦୁଃଖ ସହ୍ୟ କରିବାକୁ ପଡ଼ିବ ସେ ସବୁ ଆକସ୍ମିକ ଭାବରେ ଆସିଯାଏ । ସେଥିଯୋଗୁଁ ମନୁଷ୍ୟ ନିୟତି ବା କାଳ ବା ଭାଗ୍ୟ ଉପରେ ବିଶ୍ୱାସ କରିବାକୁ ବାଧ୍ୟ ହୁଏ । ସେ 'କର୍ମଣି ବାଧିକାରସ୍ତେ ମା ଫଳେସୁ କଦାଚନ' ବାଣୀର ଯଥାର୍ଥତା ଉପଲବ୍ଧି କରେ ।

ଏହି ପରିସ୍ଥିତିରେ ୧୯୪୩ ମସିହା ଅଗଷ୍ଟ ମାସ ୨୧ ତାରିଖରେ ମୁଁ ଯାଜପୁର ସବ୍‌ଡିଭିଜନରେ ସୁପରଭାଇଜର ଅଫ୍ ସପ୍ଲାଇଜ ପଦରେ ଯୋଗ ଦେଲି । ସେତେବେଳେ ସୋମନାଥ ମହାପାତ୍ର ଯାଜପୁରର ସବ୍‌ଡିଭିଜନାଲ୍ ଅଫିସର ଥିଲେ । ସେ ଚାକିରିରେ ଯୋଗଦେବା ବେଳେ ବିଂଝାରପୁର ଓ ବରୀ ଅଞ୍ଚଳରେ ବଢ଼ି ବଢ଼ି ହୋଇଥିଲା ଏବଂ କଲ୍ୟାଣପୁର ନିକଟରେ ଖରସୁଆଁ ନଈର ବନ୍ଧ ଭାଙ୍ଗି ଅନେକ ଗାଁରେ ଘରଦ୍ୱାର ଭାଙ୍ଗି ଯାଇଥିଲା । ମୁଁ ଚାକିରିରେ ଯୋଗଦେବାର ଦୁଇ ତିନି ଦିନ ପରେ ଏସ୍.ଡି.ଓ. ମୋତେ ସେହି ଅଞ୍ଚଳରେ ଧାନଚାଉଳ ସଂଗ୍ରହ କରି ବନ୍ୟାକ୍ଲିଷ୍ଟ ଲୋକଙ୍କ ମଧ୍ୟରେ ବାଣ୍ଟିବା କାର୍ଯ୍ୟରେ ନିଯୁକ୍ତ କଲେ । ସେତେବେଳେ ପ୍ରାୟ ଦୁଇମାସ କାଳ ବିଂଝାରପୁରର ରେଭିନ୍ୟୁ ରେଷ୍ଟ ସେଡ୍‌ରେ ରହି ବିଂଝାରପୁର ଓ ବରୀ ଅଞ୍ଚଳରେ ଧାନଚାଉଳ ସଂଗ୍ରହ କରି ଗାଁ ଗାଁକୁ ଡଙ୍ଗାରେ ଯାଇ ଧାନଚାଉଳ ବଣ୍ଟାଇଥିଲି ।

୧୯୪୩ ମସିହା ଅଗଷ୍ଟ ମାସ ଠାରୁ ୧୯୪୪ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଯାଜପୁର ଠାରେ ମୁଁ ପ୍ରାୟ ଏଗାରମାସ ଚାକିରି କରିଥିଲି । ସେ ସମୟ ଦ୍ୱିତୀୟ ବିଶ୍ୱଯୁଦ୍ଧର ମଧ୍ୟବର୍ତ୍ତୀ ସମୟ ଥିଲା ଏବଂ ଦେଶରେ ଧାନ, ଚାଉଳ, ଗହମ, ଚିନି, କିରାସିନି ପ୍ରଭୃତି ଖାଦ୍ୟ ଓ ଅତ୍ୟାବଶ୍ୟକ ପଦାର୍ଥର ଘୋର ଅଭାବ ଥିଲା । ଯଥେଷ୍ଟମାତ୍ରାରେ ମିଳୁ ନ ଥିବା ଅତ୍ୟାବଶ୍ୟକ ପଦାର୍ଥମାନଙ୍କରେ ସୁଷମ ବଣ୍ଟନ ଯୋଗାଣ ବିଭାଗର କାମ ଥିଲା । ତଳ ସ୍ତରରେ ଗାଁଗହଳରେ ସେହି କାମ କରିବାର ଆମ୍ଭେମାନେ ହିଁ ସରକାରୀ କର୍ମଚାରୀ ଥିଲୁ । ସେହି କାଳରୁ ଜିନିଷପତ୍ରର ଅଭାବରୁ କଳାବଜାର, କଳାଧନ, ଲାଞ୍ଚ ଅତିମାତ୍ରାରେ ଆରମ୍ଭ ହେଲା । ତା' ପୂର୍ବରୁ କିଳାପୋଡିଆ ଶବ୍ଦଟା ମୁଁ ଶୁଣି ନ ଥିଲି । ଆଜିକାଲି ସେ ଶବ୍ଦଟା ସମସ୍ତଙ୍କୁ ଜଣା । ପରେ ଅଭିଧାନ ଦେଖି ଜାଣିଲି ଯେ କିଳାପୋତା ମାନେ– ଲାଞ୍ଚ ଏବଂ କିଳାପୋଡିଆ ଶବ୍ଦ ଲାଞ୍ଚ ଦେବା ନେବା ସମ୍ବନ୍ଧରେ ବ୍ୟବହୃତ ହେଉଛି । ମୋର କିନ୍ତୁ ସେ ଯୋଗାଣ ବିଭାଗ କାମରେ ମୋଟେ ମନ ଲାଗୁ ନ ଥାଏ ଯଦିଓ ଦିନରାତି ମୁଁ ସେହି କାମରେ ଲାଗିଥାଏ । ମୁଁ ସେ ଚାକିରିକୁ ସର୍ବଦା ଅସ୍ଥାୟୀ କାର୍ଯ୍ୟ ମନେକରି ଶିକ୍ଷା ବିଭାଗରେ ସ୍ଥାୟୀ ଚାକିରି କରିବାକୁ ଇଚ୍ଛୁକ ଥାଏ । ଯାଜପୁରଠାରେ ମୁଁ ଏକା ଥିଲି । ଦିନଯାକ କାମ ପରେ ରାତିରେ ଅନେକ ଘଣ୍ଟା ମୁଁ ଥମାସ୍ ହାର୍ଡ଼ି ଏବଂ ଚାର୍ଲସ୍ ଡିକେନ୍ସଙ୍କ ନଭେଲ ସବୁ ପଢୁଥିଲି । ଏମ୍.ଏ. ପରୀକ୍ଷା ପରେ ଯେଉଁ ବହି ପ୍ରାଇଜ ତାଲିକା ଦେଇଥିଲି ସେଥିରେ ଥମାସ୍ ହାର୍ଡ଼ି ଓ ଚାର୍ଲସ ଡିକେନ୍ସଙ୍କର ସବୁ ଉପନ୍ୟାସ ଥିଲା । ସେହି ଯାଜପୁରରେ ଥିବା ସମୟରେ ୧୯୪୪ ମସିହା ଜୁନ୍ ମାସ ୨୭ ତାରିଖରେ ମୋର ବୋଉର ଦେହାନ୍ତ ହେଲା । ତାର ମୃତ୍ୟୁର ଦିନକ ପୂର୍ବରୁ ଗାଁରୁ ବୋଉ ଦେହ ଅତିଶୟ ବୋଲି ଟେଲିଗ୍ରାମ ପାଇଲି । ପରଦିନ ସକାଳୁ ଗାଁକୁ ଗଲି । ଗାଁରେ ପହଞ୍ଚିଲା ବେଳକୁ ବୋଉର ଶବଦାହ ସରିଥିଲା । ଶୁଣିଲି ସେଦିନ ସକାଳ ଦଶଟାରେ ତାର ମୃତ୍ୟୁ ହୋଇଥିଲା । ମରିବା ପୂର୍ବରୁ ସେ ମୋତେ ଦେଖିବାକୁ ବ୍ୟାକୁଳ ହେଉଥିଲା । ବୋଉ ପୃଥିବୀରେ ମୋର ସବୁଠାରୁ ପ୍ରିୟଜନ ଥିଲା । ମୋ ପାଇଁ ସେ ଜୀବନରେ ବହୁ ତ୍ୟାଗ କରିଥିଲା । ତାର ଉପକାର ପାଇଁ ମୁଁ କିଛି କରିପାରି ନାହିଁ ।

ବୋଉ ମରିବାର ଚଉଦ ଦିନ ପରେ ଗାଁରୁ ଯାଜପୁର ଫେରିଆସିଲି । ତାର ଆଠ ଦଶଦିନ ପରେ ମୋର ଆସିଷ୍ଟାଣ୍ଟ ସିଭିଲ ସପ୍ଲାଇ ଅଫିସର ପଦକୁ ପଦୋନ୍ନତି ହେଲା ଏବଂ ମୋତେ ବ୍ରହ୍ମପୁର ସହରରେ ଅବସ୍ଥାନ କରାଗଲା । ବ୍ରହ୍ମପୁରରେ ସେ ପଦରେ ମୁଁ ମୋଟେ ମାସେ କାର୍ଯ୍ୟ କରିଥିଲି । ଏଥି ମଧ୍ୟରେ ସେହି ୧୯୪୪ ମସିହା ଜୁଲାଇ ମାସରୁ ଓଡ଼ିଶା ସରକାର ସମ୍ବଲପୁର, ବାଲେଶ୍ୱର ଓ ପୁରୀ ସହରରେ ସରକାରୀ ପ୍ରଥମଶ୍ରେଣୀ କଲେଜମାନ ଖୋଲିଥିଲେ ଏବଂ ସେ ସବୁ କଲେଜ ପାଇଁ ବିଭିନ୍ନ କଳା, ବିଜ୍ଞାନ ଓ ବାଣିଜ୍ୟ ବିଷୟରେ ଅଧ୍ୟାପକ ପଦ ପାଇଁ ଦରଖାସ୍ତ ଆହ୍ୱାନ କରିଥିଲେ । ମୁଁ ଅର୍ଥନୀତି ଲେକ୍‌ଚରର ପଦ ପାଇଁ ଦରଖାସ୍ତ କରିଥିଲି ଏବଂ ଜୁଲାଇ ମାସରେ ସେଥିପାଇଁ ପବ୍ଲିକ୍ ସର୍ଭିସ କମିସନରେ ଇଣ୍ଟରଭିଉ ଦେଇଥିଲି । ବ୍ରହ୍ମପୁରଠାରେ ଆସିଷ୍ଟାଣ୍ଟ ସିଭିଲ ସପ୍ଲାଇ

ଅଫିସର ଭାବେ ମାସେ ଚାକିରି କରିବା ପରେ ମୁଁ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗର ଜଣେ ଅର୍ଥନୀତି ଅଧ୍ୟାପକ ଭାବେ ନିଯୁକ୍ତି ପାଇଲି ଏବଂ ଅତି ଶୀଘ୍ର ସମ୍ବଲପୁର କଲେଜରେ ଯୋଗ ଦେବାକୁ ଚିଠି ପାଇଲି । ସୁତରାଂ ଦୁଇ ଚାରି ଦିନ ପରେ ଯୋଗାଣ ବିଭାଗ ଚାକିରିରୁ ଅବ୍ୟାହତି ପାଇ ସମ୍ବଲପୁର କଲେଜରେ ଯୋଗଦେବାକୁ ଯାତ୍ରା କଲି । କଲେଜ ଲେକ୍‌ଚରର ପଦରେ ନିଯୁକ୍ତ ହେବାପରେ ଜୀବନ ସ୍ରୋତର ନିର୍ଦ୍ଦିଷ୍ଟ ଗତିପଥ ନିର୍ଣ୍ଣିତ ହୋଇଗଲା । ସେହି ପଥରେ ଜୀବନର କର୍ମଜୀବନ ଶେଷ ପର୍ଯ୍ୟନ୍ତ ଚାଲିଲା ।

୧୯୪୪ ମସିହା ଅଗଷ୍ଟ ମାସ ୩୧ ତାରିଖ ଦିନ ମୁଁ ସମ୍ବଲପୁର କଲେଜରେ ଯୋଗ ଦେଲି । ସେ କଲେଜ ସେ ବର୍ଷ ଜୁଲାଇ ମାସ ଠାରୁ ଆରମ୍ଭ ହୋଇଥିଲା । ରେଭେନ୍ସା କଲେଜର ପଦାର୍ଥବିଜ୍ଞାନ ପ୍ରଫେସର ରାୟସାହେବ ନାରାୟଣ ମିଶ୍ର ସେ କଲେଜର ପ୍ରିନ୍ସପାଲ ଭାବରେ ଯୋଗଦେଇ କଲେଜ ରୀତିମତ ଚାଲିବାର ବ୍ୟବସ୍ଥା କରୁଥାନ୍ତି । ମୁଁ କଲେଜରେ ଯୋଗ ଦେବା ବେଳକୁ ଅର୍ଥନୀତି ବିଭାଗରେ ଅନ୍ୟ କେହି ଅଧ୍ୟାପକ ଯୋଗ ଦେଇ ନ ଥିଲେ । ସେତେବେଳେ କଲେଜରେ କେବଳ ଆଇ.ଏ. ଏବଂ ଆଇ.କମ୍. ଶ୍ରେଣୀ ଆରମ୍ଭ ହୋଇଥାଏ । ସେ ସବୁ ଶ୍ରେଣୀ ପାଇଁ ତିନି ଜଣ ଅର୍ଥନୀତି ଅଧ୍ୟାପକ ବରାଦ ଥାଏ । ପରେ ଅନ୍ୟ ଦୁଇଜଣ ଯୋଗ ଦେଲେ । ମୁଁ କଲେଜରେ ଯୋଗ ଦେଇ ପରିବାର ସହିତ ବୁଢ଼ା ରାଜାରେ ଅଧ୍ୟାପକମାନେ ରହୁଥିବା ଅସ୍ଥାୟୀ ଘରମାନଙ୍କ ମଧ୍ୟରୁ ଗୋଟିଏ ଦୁଇଟି କୋଠରି ବିଶିଷ୍ଟ ଛପର ଘରେ ରହିଲି ।

# ଗଙ୍ଗାଧର ମେହେର କଲେଜ

୧୯୪୪ ମସିହା ଅଗଷ୍ଟ ମାସ ଶେଷ ତାରିଖ ଠାରୁ ୧୯୫୨ ମସିହା ଅକ୍ଟୋବର ମାସ ପୂଜା ଛୁଟି ଶେଷ ପର୍ଯ୍ୟନ୍ତ ଆଠ ବର୍ଷରୁ ଅଧିକ ସମୟ ମୁଁ ସମ୍ବଲପୁର କଲେଜରେ ଚାକିରି କରିଥିଲି । ସମ୍ବଲପୁର ବ୍ୟତୀତ କଟକ ବାହାର ଅନ୍ୟ କୌଣସି କଲେଜରେ ମୁଁ ଚାକିରି କରି ନାହିଁ । ୧୯୪୪ ମସିହା ଜୁଲାଇ ପହିଲାରୁ ସମ୍ବଲପୁର କଲେଜ, ସମ୍ବଲପୁର ଜିଲ୍ଲା ସ୍କୁଲ ଘରେ ଆରମ୍ଭ ହୋଇଥାଏ । ଜିଲ୍ଲା ସ୍କୁଲ ସେହି ହତା ମଧ୍ୟରେ ଗୋଟାଏ ବିସ୍ତୃତ ଅସ୍ଥାୟୀ ଛପର ଘରେ କାର୍ଯ୍ୟ କରୁଥାଏ । ୧୯୪୧ ମସିହାରୁ ସ୍କୁଲ ସେ ଅସ୍ଥାୟୀ ଘରକୁ ଉଠିଯାଇଥାଏ କାରଣ ଯୁଦ୍ଧ ସମୟରେ ଓଡ଼ିଶା ସେକ୍ରେଟାରିଏଟ୍ ଅଫିସମାନଙ୍କ ପାଇଁ ଜିଲ୍ଲା ସ୍କୁଲ ସ୍ଥାୟୀ ଘର ଛାଡ଼ି ଦିଆଯାଇଥିଲା । ୧୯୪୪ ମସିହାରେ କଲେଜ ଆରମ୍ଭ ହେଲାବେଳେ ସେକ୍ରେଟାରିଏଟ୍ ଅଫିସମାନ କଟକ ଫେରି ଆସିଥାଏ ଏବଂ ସ୍କୁଲ ଘରେ କଲେଜ ଆରମ୍ଭ ହୋଇଥାଏ । ସ୍କୁଲ ଯୁଦ୍ଧ ସମୟରେ ଅସ୍ଥାୟୀ ଘରେ କାର୍ଯ୍ୟ କରୁଥାଏ । ପରେ ସହରରେ ଅନ୍ୟ ସ୍ଥାନରେ ସ୍କୁଲ ପାଇଁ ସ୍ଥାୟୀ ଘର ନିର୍ମାଣ କରାଗଲା । କଲେଜ ସହରରୁ ପାଞ୍ଚମାଇଲ ଦୂର ମହାନଦୀ ଓ ମାଳତୀନଦୀର ସଙ୍ଗମ ସ୍ଥଳରେ ଗୋଟିଏ ପ୍ରଶସ୍ତ କ୍ୟାମ୍ପସରେ କାର୍ଯ୍ୟ କରିବ ବୋଲି ସେତେବେଳେ ଯୋଜନା କରାଯାଇଥିଲା । ୧୯୪୫ ମସିହା ଜୁଲାଇ ମାସରେ ଓଡ଼ିଶାର ରାଜ୍ୟପାଳ ହଥର୍ଣ୍ଣ ଲୁଇସ୍ ସେ ସ୍ଥାନରେ ଶିଳାନ୍ୟାସ କରିଥିଲେ । ମାତ୍ର ସମ୍ବଲପୁର ସହରବାସୀ ସହରଠାରୁ ଦୂରରେ କଲେଜ ସ୍ଥାପନ ବିରୋଧରେ ଆପତ୍ତି କରିବାରୁ ସେ ଯୋଜନା ବନ୍ଦ ହୋଇଗଲା ଏବଂ କଲେଜ ସ୍ଥାୟୀ ଭାବରେ ସେହି ସ୍କୁଲ ଘରେ ରହିଲା । ପ୍ରଥମରେ ସ୍କୁଲର ଛୋଟ ହଷ୍ଟେଲ ମଧ୍ୟ କଲେଜ ହଷ୍ଟେଲ ରୂପେ ବ୍ୟବହୃତ ହେଲା । ପରେ ବିଗତ ପଚାଶ ବର୍ଷ ମଧ୍ୟରେ ସେ ହତା ମଧ୍ୟରେ କଲେଜଘର ଅନେକ ପରିମାଣରେ ବର୍ଦ୍ଧିତ କରାହୋଇଛି ଏବଂ ସେଥି ମଧ୍ୟରେ ଛାତ୍ର ଓ ଛାତ୍ରୀମାନଙ୍କ ପାଇଁ ଗୁଡ଼ିଏ ନୂତନ ହଷ୍ଟେଲ ନିର୍ମିତ ହୋଇଛି । ସ୍କୁଲ ସହରର ଅନ୍ୟ ସ୍ଥାନରେ ନିର୍ମିତ ନୂତନ ଗୃହକୁ ଉଠିଯାଇଛି ଏବଂ ଅସ୍ଥାୟୀ ଘରଟିକୁ ଭାଙ୍ଗି ଦିଆଯାଇଛି ।

ଯୁଦ୍ଧବେଳେ ସେକ୍ରେଟାରିଏଟର କର୍ମଚାରୀମାନଙ୍କ ରହିବା ପାଇଁ କଲେଜ ଠାରୁ ଅଳ୍ପ ଦୂରରେ ବୁଢ଼ାରାଜା ପାହାଡ଼ ତଳେ ଅନେକ ପାଳ ଛପର ଓ ଖପର ଛପର ଘର ନିର୍ମିତ ହୋଇଥିଲା । ସେକ୍ରେଟାରିଏଟ୍ ଉଠିଗଲା ପରେ ସେ ଘରଗୁଡ଼ିକ କଲେଜ ଅଧ୍ୟାପକ, ଅଣଶିକ୍ଷକ କର୍ମଚାରୀ ଏବଂ କେତେକ ଛାତ୍ରଙ୍କ ଛାତ୍ରାବାସ ପାଇଁ ଛାଡ଼ି ଦିଆଯାଇଥିଲା । ସେ ଘରଗୁଡ଼ିକ ମଧ୍ୟରୁ ଅନେକ ଘର ମରାମତି ଅଭାବରୁ ଅର୍ଦ୍ଧଭଗ୍ନ ଅବସ୍ଥାରେ ଥାଏ । ଯେଉଁ କଲେଜ ଅଧ୍ୟାପକମାନେ ସେ ଘରମାନଙ୍କରେ ରହିବାକୁ ଇଚ୍ଛୁକ ଥିଲେ ସେମାନେ ନିଜ ଖର୍ଚ୍ଚରେ ଏବଂ ନିଜ ତଦାରଖରେ ସେଗୁଡ଼ିକୁ ଛପର ଓ ମରାମତି କରୁଥିଲେ । ସବୁ

ଘର ସେକ୍ରେଟାରିଏଟ୍ କର୍ମଚାରୀମାନଙ୍କ ପାଇଁ କେବଳ ଦୁଇଟି କୋଠରି ବିଶିଷ୍ଟ କଞ୍ଚା ଇଟା କାନ୍ଥ ଓ ପାଳ କିମ୍ବା ଖପର ଛପର ଘର ଥିଲା । ଅନେକ ଅଧ୍ୟାପକ ଦୁଇଟି ଘର ମଧ୍ୟରେ ଥିବା କାନ୍ଥକୁ ଭାଙ୍ଗି ଚାରି କୋଠରି ବିଶିଷ୍ଟ ଘରରେ ପରିଣତ କରି କାନ୍ଥ ଓ ଚାଳ ମରାମତି କରି, ଚୂନ ଲଗାଇ, ଘର ଆଗ ଅଗଣାରେ ତଳାଇ ଘେରାଇ ସେ ଘରସବୁ ବାସଯୋଗ୍ୟ କରି ରହିଥିଲେ । ସେକ୍ରେଟାରିଏଟ୍ କର୍ମଚାରୀମାନେ ରହିବାବେଳେ ସରକାର ବିଭିନ୍ନ ବ୍ଲକର ଘରମାନଙ୍କ ମଧ୍ୟରେ ଗୁଡ଼ିଏ ପକ୍କା କୂଅ ଖୋଳିଥିଲେ ଏବଂ ସେଥିରେ ପ୍ରଚୁର ପାଣି ଥାଏ । ଘରମାନଙ୍କରେ ରହିଥିବା ଠିକା ଚାକରାଣୀମାନେ ଆବଶ୍ୟକ ପରିମାଣରେ ପାଣି ଆଣି ଘରମାନଙ୍କରେ ଦେଉଥିଲେ । ସୁତରାଂ ପାଣିର ଅସୁବିଧା ସେଠାରେ ନ ଥିଲା । ଘର ବ୍ଲକମାନଙ୍କ ମଧ୍ୟରେ ମଧ୍ୟ ଯୋଜନାବଦ୍ଧ ଭାବରେ ରାସ୍ତା ତିଆରି ହୋଇଥିଲା । ପାହାଡ଼ ତଳ ଗଡ଼ାଣିଆଁ ସ୍ଥାନ ହେତୁ କେଉଁଠାରେ ପାଣି ଜମୁ ନ ଥାଏ କିମ୍ବା ଘରମାନଙ୍କ ପାଖ ବର୍ଷାଦିନେ କାଦୁଅ ହୋଇ ନ ଥାଏ । ଖୋଲା ଜାଗା, ସୁନ୍ଦର ପ୍ରାକୃତିକ ପରିବେଶ ଯୋଗୁଁ ଅଧିକାଂଶ ଅଧ୍ୟାପକ ସମ୍ବଲପୁର ସହରର ଗଳିକନ୍ଦିମାନଙ୍କରେ ଅପ୍ରଶସ୍ତ ଅନ୍ଧାରିଆ ଘରମାନଙ୍କରେ ଭଡ଼ାରେ ରହିବାକୁ ରାଜି ହେଉ ନ ଥିଲେ । ବୁଢ଼ାରାଜା ଘରଗୁଡ଼ାକର ଭଡ଼ା ନ ଥିବାରୁ ନିଜ ଖର୍ଚ୍ଚରେ ସେଗୁଡ଼ିକ ମରାମତି କରି ସେମାନେ ସେଠାରେ ରହିବାକୁ ଶ୍ରେୟ ମନେ କରୁଥିଲେ । ସେମାନେ ଘରଗୁଡ଼ିକ ମରାମତି କରି ସେଥିରେ ରହିବା ପରେ ସେ ସ୍ଥାନ କଲେଜ ଅଧ୍ୟାପକ କଲେଜର ଅଣଶିକ୍ଷକ କର୍ମଚାରୀ ଓ ଛାତ୍ରମାନଙ୍କ ପାଇଁ ଗୋଟିଏ ଅତି ସୁଖକର କଲୋନୀ ହୋଇଥିଲା ।

ମୁଁ ସମ୍ବଲପୁର ଯିବା ପୂର୍ବରୁ ବ୍ରହ୍ମପୁର ଠାରୁ ମୋ ପାଇଁ ଗୋଟିଏ ରହିବାଘର ସ୍ଥିର କରିବା ପାଇଁ ମୋର ବନ୍ଧୁ ରସାୟନ ବିଜ୍ଞାନ ଅଧ୍ୟାପକ ରାଜକିଶୋର ମିଶ୍ରଙ୍କ ପାଖକୁ ଲେଖିଥିଲି । ସେ ନିଜେ ବୁଢ଼ାରାଜା କଲୋନୀରେ ରହୁଥିଲେ ଏବଂ ମୋ ପାଇଁ ତାଙ୍କ ଘରର ପରବର୍ତ୍ତୀ ବ୍ଲକ୍‌ରେ ଗୋଟିଏ ଦୁଇ କୋଠରି ବିଶିଷ୍ଟ ଚାଳ ଛପର ଘର ସ୍ଥିର କରିଥିଲେ । ମୁଁ ସେ ବର୍ଷ ଅଗଷ୍ଟ ତିରିଶ ତାରିଖରେ ସସ୍ତ୍ରୀକ ସମ୍ବଲପୁର ଠାରେ ପହଞ୍ଚି ସେହି ଘରେ ରହିଲି । ସେତେବେଳକୁ ଅନ୍ୟ ଅଧ୍ୟାପକମାନେ ମାସେ କିମ୍ବା ପନ୍ଦର ଦିନ ଆଗରୁ ଆସି ଘର ବାଛି ମରାମତି କରି ରହିବା କାର୍ଯ୍ୟ କରୁଥାନ୍ତି । ମୋ ପରେ ବି ଅନେକ ଅଧ୍ୟାପକ ଘର ବାଛି ସେଠାରେ ରହିଲେ । ମୁଁ ମୋର 'ନାନୀ' ବହିରେ ବୁଢ଼ା ରାଜା କଲୋନୀର ପରିବେଶ ଏବଂ ସେଥିରେ ଅଧ୍ୟାପକ ଓ ଅନ୍ୟ କଲେଜ କର୍ମଚାରୀମାନଙ୍କର ସୁଖମୟ ଜୀବନ ଯାପନ ପ୍ରଣାଳୀର ଗୋଟିଏ ବିଶଦ ବିବରଣୀ ଦେଇଛି । ଏଠାରେ ତାହାର ପୁନରାବୃତ୍ତି କରିବା ଆବଶ୍ୟକ ମନେ କରୁ ନାହିଁ ।

ବୁଢ଼ାରାଜାରେ ପହଞ୍ଚି ପରଦିନ ଅଗଷ୍ଟ ୩୧ ତାରିଖ ଦିନ କଲେଜରେ ଯୋଗ ଦେଲି । ରେଭେନ୍ସା କଲେଜର ପଦାର୍ଥବିଜ୍ଞାନ ପ୍ରଫେସର ରାୟସାହେବ ନାରାୟଣ ମିଶ୍ର ସେତେବେଳେ ସେ କଲେଜକୁ ପ୍ରିନ୍ସପାଲ ହୋଇ ଯାଇଥାନ୍ତି । କଲେଜରେ ସେତେବେଳେ ପର୍ଯ୍ୟନ୍ତ ଶୃଙ୍ଖଳିତ ରୁଟିନ ତିଆରି ହୋଇ ପାଠ ପଢ଼ାପଢ଼ି ଆରମ୍ଭ ହୋଇ ନ ଥାଏ । କଲେଜ ଆଇ.ଏ., ଆଇ.ଏସସି. ଏବଂ ଆଇ.କମ୍. ପାଠର ବ୍ୟବସ୍ଥା ଥାଇ ଗୋଟିଏ

ଦ୍ୱିତୀୟ ଶ୍ରେଣୀ କଲେଜ ରୂପେ ଆରମ୍ଭ ହୋଇଥାଏ । ଅନେକ ବିଭାଗର ଅଧ୍ୟାପକମାନେ ସେତେବେଳଯାଏ ଯୋଗ ଦେଇ ନ ଥାନ୍ତି । ଆଇ.ଏସ୍‌ସି.ର ବିଭିନ୍ନ ବିଷୟ ପାଇଁ ଲାବୋରେଟରୀ ଫିଟିଂ ହୋଇ ନ ଥାଏ । ଯେଉଁ କେତେଜଣ ଅଧ୍ୟାପକ ଯୋଗ ଦେଇଥିଲେ ସେମାନେ ଶ୍ରେଣୀମାନଙ୍କରେ ନିୟମିତ ଭାବରେ ପାଠ ପଢ଼ା ହେବାର ପ୍ରାରମ୍ଭିକ ବ୍ୟବସ୍ଥା କରୁଥାନ୍ତି । ବାସ୍ତବ କ୍ଷେତ୍ରରେ ସେ ବର୍ଷ ପୂଜାଛୁଟି ପର୍ଯ୍ୟନ୍ତ ନିୟମିତ ପଢ଼ାପଢ଼ି ହୋଇ ପାରି ନ ଥିଲା । ବିଭିନ୍ନ କ୍ଲାସର ପିଲାମାନଙ୍କର ନାମ ଲେଖା ହୋଇ ଯାଇଥାଏ ମାତ୍ର କଲେଜ ପ୍ରଥମ କରି ଆରମ୍ଭ ହୋଇଥିବାରୁ ଏବଂ ଛାତ୍ର ଓ ଶିକ୍ଷକମାନଙ୍କର ରହିବା ଓ ଖାଇବା ବ୍ୟବସ୍ଥା, ଶ୍ରେଣୀମାନଙ୍କର ଫର୍ନିଚର, ବିଜ୍ଞାନବିଭାଗମାନଙ୍କର ଲାବୋରେଟରୀ, କଲେଜର ଲାଇବ୍ରେରୀ ପ୍ରଭୃତି କିଛି ହୋଇ ପାରି ନ ଥିବାରୁ ନିୟମିତ ପଢ଼ାପଢ଼ି ଆରମ୍ଭ ହୋଇ ନ ଥାଏ ଏବଂ ସେ ସବୁର ବ୍ୟବସ୍ଥା ପାଇଁ ଉଦ୍ୟମ କରା ହେଉଥାଏ । ଅଧ୍ୟାପକମାନେ ମଧ୍ୟ ପ୍ରାୟ ସମସ୍ତେ ଏମ୍.ଏ. ବା ଏମ୍.ଏସ୍‌ସି. ପାସ୍ କରି କଲେଜରେ ଅଧ୍ୟାପକ ହିସାବରେ ଯୋଗ ଦେଇଥାନ୍ତି । ସେମାନେ ପଢ଼ିଥିବା କଲେଜମାନଙ୍କର ଅଭିଜ୍ଞତାରୁ ନୂତନ ଭାବରେ ସେଠାରେ ପଢ଼ାଇବାକୁ ବ୍ୟବସ୍ଥା କରୁଥାନ୍ତି । ସେଠାରେ କଲେଜର ପୂର୍ବରୁ କୌଣସି ଗତାନୁଗତିକ ରୀତି ନ ଥିଲା ।

ମୁଁ ଅର୍ଥନୀତି ବିଭାଗର ପ୍ରଥମ ଅଧ୍ୟାପକ ରୂପେ ଯୋଗ ଦେଇ ପ୍ରିନ୍ସିପାଲ୍‌ଙ୍କୁ ଦେଖା କଲି । ସେ ମୋତେ ଆଗରୁ ରେଭେନ୍ସା କଲେଜରେ ପଢ଼ିଲାବେଳୁ ଚିହ୍ନିଥିଲେ ଏବଂ ମୋତେ କହିଲେ ତୁମେ କଲେଜର ଯେ କୌଣସି ଖାଲିଥିବା ରୁମ୍‌ରେ ଏପରିକି କଲେଜ ପଡ଼ିଆରେ କୌଣସି ଗଛମୂଳେ ପିଲାମାନଙ୍କର କ୍ଲାସ ନେଇ ପଢ଼ାପଢ଼ି ଆରମ୍ଭ କରିଦିଅ । ଏହି ପରିସ୍ଥିତିରେ ସମ୍ବଲପୁର କଲେଜ ଆରମ୍ଭରେ ମୁଁ ଯୋଗ ଦେଲି । ଗୋଟିଏ ଦିଗରେ ଘର ମରାମତି କରି ଏବଂ ଘରର ଆସବାବ୍ କିଣି ବୁଢ଼ାରାଜା କଲୋନୀର ଛପର ଘରେ ରହିବାକୁ ପଡ଼ିବ ଏବଂ କଲେଜର ରୁଟିନ ତିଆରି କରି ସକାଳ ଓଳି କମର୍ସ କ୍ଲାସରେ ଏବଂ ଦିନ ଦଶଟା ପରେ ଆର୍ଟସ୍ କ୍ଲାସରେ ପଢ଼ାଇବାକୁ ପଡ଼ିବ । ପ୍ରଫେସର ନାରାୟଣ ମିଶ୍ର କଲେଜକୁ ଗତରେ ପକାଇବାକୁ ଏବଂ ନିୟମିତ ଭାବରେ ପଢ଼ାପଢ଼ି ଚାଲୁ କରିବାପାଇଁ ଆପ୍ରାଣ ଉଦ୍ୟମ କରୁଥାନ୍ତି । ମୋର ମନେହୁଏ ଅକ୍ଟୋବର ମାସରେ ପୂଜାଛୁଟି ଆରମ୍ଭ ହେବାବେଳକୁ ଲାବୋରେଟରୀ ଏବଂ ଲାଇବ୍ରେରୀ ବ୍ୟତୀତ କଲେଜରେ ରୀତିମତ ପଢ଼ାପଢ଼ି ଆରମ୍ଭ ହୋଇଯାଇଥାଏ । ଲାଇବ୍ରେରୀ ପାଇଁ ବିଭିନ୍ନ ବିଭାଗର ବହିପତ୍ର କିଣା ହୋଇ ଆସୁଥାଏ ଏବଂ କଲିକତାର ଡୁଗାଲ କମ୍ପାନୀ ବିଭିନ୍ନ ବିଜ୍ଞାନବିଭାଗର ଲାବୋରେଟରୀ ଫିଟିଂ ଆରମ୍ଭ କରିଥାନ୍ତି ଏବଂ ବିଭିନ୍ନ ବିଜ୍ଞାନ ବିଭାଗର ଯନ୍ତ୍ରପାତି ସବୁ କିଣା ହୋଇ ଆସୁଥାଏ । ସେ ସବୁ ବିଷୟରେ ନାରାୟଣବାବୁଙ୍କର ରେଭେନ୍ସା କଲେଜରୁ ବହୁବର୍ଷର ଅଭିଜ୍ଞତା ଥିଲା । ତାହାର ଉପଯୋଗ କରି କଲେଜଟିକୁ ଗଢ଼ିବାକୁ ସେ ଆରମ୍ଭ କରିଥିଲେ ।

ମାତ୍ର ପୂଜାଛୁଟି ପରେ ସେ ଚାକିରିରୁ ଅବସର ଗ୍ରହଣ କଲେ । ତାଙ୍କର କାର୍ଯ୍ୟକାଳ ଅନ୍ତତଃପକ୍ଷେ ବର୍ଷ ଶେଷଯାଏ ବୃଦ୍ଧି ହେବାକୁ ସେ ଆଶା କରିଥିଲେ । ମାତ୍ର ସରକାର ତାଙ୍କ କାର୍ଯ୍ୟକାଳ ବୃଦ୍ଧି ନ କରି ରେଭେନ୍ସା କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପକ ଡକ୍ଟର ଗୋଲୋକ ବିହାରୀ ବାନାର୍ଜୀଙ୍କୁ କଲେଜର ଅଧ୍ୟକ୍ଷ କରି ପଠାଇଲେ । କଲେଜରେ ଲାବୋରେଟରୀ ସବୁ ଫିଟିଂ ହେଉଥିବାରୁ ବିଜ୍ଞାନ ବିଷୟରେ ଜଣେ ଅଧ୍ୟାପକ କଲେଜର ପ୍ରିନ୍ସପାଲ ହେବା ଦରକାର ଥିଲା । ନାରାୟଣବାବୁ ଜୁଲାଇ ପହିଲା ଠାରୁ ଅକ୍ଟୋବର ୨୯ ତାରିଖ ପର୍ଯ୍ୟନ୍ତ କେବଳ ଚାରିମାସ ସେ କଲେଜର ଅଧ୍ୟକ୍ଷ ଥିଲେ ଏବଂ କଲେଜକୁ ସୁଚାରୁରୂପେ ଆରମ୍ଭ କରିଥିଲେ । ସବୁ ଯୁବକ ଅଧ୍ୟାପକଙ୍କର ସେ ପିତୃତୁଲ୍ୟ ବ୍ୟକ୍ତି ଥିଲେ । ତାଙ୍କର ଅମାୟିକ ବ୍ୟବହାର ଏବଂ ସମସ୍ତଙ୍କ ପ୍ରତି ସ୍ନେହ ହେତୁ ନୂତନ ଭାବରେ ଯୋଗ ଦେଇଥିବା ସବୁ ଅଧ୍ୟାପକ ତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ ।

୧୯୪୪ ମସିହା ପୂଜାଛୁଟି ପରେ ଅକ୍ଟୋବର ୨୯ ତାରିଖରେ ଡକ୍ଟର ଗୋଲୋକ ବିହାରୀ ବାନାର୍ଜୀ କଲେଜର ଅଧ୍ୟକ୍ଷ ରୂପେ ଯୋଗଦେଲେ । ସେତେବେଳକୁ କଳା ଓ ବାଣିଜ୍ୟ ବିଭାଗମାନଙ୍କରେ ରୁଟିନ ମୁତାବକ ପଢ଼ାପଢ଼ି ଆରମ୍ଭ ହୋଇଥାଏ । କଳା, ବାଣିଜ୍ୟ ଓ ବିଜ୍ଞାନ ବିଭାଗମାନଙ୍କର ଅଧିକାଂଶ ଅଧ୍ୟାପକ ଯୋଗ ଦେଇଥାନ୍ତି । ବିଜ୍ଞାନ ବିଭାଗମାନଙ୍କରେ ଲାବୋରେଟରୀ ଫିଟିଂ କାର୍ଯ୍ୟ ଚାଲିଥାଏ । ବୁଢ଼ାରାଜାର ଅଧ୍ୟାପକମାନେ ଘର ମାନ ମରାମତ କରି ସାଧାରଣ ଭାବରେ ରହି ଯାଇଥିଲେ । କଲେଜରେ ପଢ଼ାପଢ଼ି ଏବଂ ବୁଢ଼ାରାଜାରେ ରହିବା ଗତରେ ପଡ଼ି ଯାଇଥିଲା ।

ଡକ୍ଟର ବାନାର୍ଜୀ ଜଣେ ଗମ୍ଭୀର ଓ ନିଷ୍ଠାପର ଲୋକ ଥିଲେ । ସେ ଅଧ୍ୟାପକମାନଙ୍କ ସହିତ ବେଶି ମିଳାମିଶା କରୁ ନ ଥିଲେ ମାତ୍ର ନିଷ୍ଠାପର ଭାବରେ କଲେଜ ପରିଚାଳନା କରୁଥିଲେ । ସେ ଆସିବାର ଅଳ୍ପ କେତେ ମାସ ଭିତରେ ବିଜ୍ଞାନ ବିଭାଗମାନଙ୍କର ଲାବୋରେଟରୀ ଫିଟିଂ ସବୁ ହୋଇଗଲା ଏବଂ ଗ୍ୟାସ ଓ ପାଣିର ବ୍ୟବସ୍ଥା ହେଲା । ଲାଇବ୍ରେରୀ ବହି କଲେଜ ଘରର ଦୁଇଗୋଟି ରୁମ୍‌ରେ ରହିଲା, ମାତ୍ର ରିଡ଼ିଂ ରୁମ୍ ପାଇଁ ସ୍ଥାନ ନ ଥିଲା ।

୧୯୪୪ ମସିହା ଜୁଲାଇ ମାସରେ କଲେଜ ଆରମ୍ଭ ହେବାଠାରୁ ୧୯୪୫ ମସିହା ଫେବୃୟାରୀ ମାସ ପର୍ଯ୍ୟନ୍ତ ପ୍ରଫେସର ପ୍ରହ୍ଲାଦ ପ୍ରଧାନ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ଫେବୃଆରୀରେ ସେ ଶାନ୍ତିନିକେତନ ଯାଇ ସେଠାରୁ ଚୀନ୍ ଦେଶ ଯିବାକୁ ଗୋଟିଏ ଫେଲୋସିପ୍ ପାଇ ସେଠାକୁ ଗଲେ । ସେ ଗଲାପରେ ଡକ୍ଟର ବାନାର୍ଜୀ ମୋତେ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ କଲେ । ହଷ୍ଟେଲ ସ୍କୁଲ ହଷ୍ଟେଲର ସ୍ଥାୟୀ ଗୃହରେ ଚାଲିଥାଏ । ସେଠାରେ ପ୍ରାୟ ଷାଠିଏଜଣ ପିଲା ତିନିଗୋଟି ଡରମିଟାରୀରେ ରହୁଥିଲେ । ସେମାନଙ୍କର ଖାଇବା ପାଇଁ ସ୍ଥାୟୀ ରୋଷେଇଶାଳା ଓ ଖାଇବାଘର ଥିଲା । ସୁପରିଣ୍ଟେଣ୍ଡେଣ୍ଟଙ୍କ ରହିବା ପାଇଁ ହଷ୍ଟେଲକୁ ଲାଗି ଗୋଟିଏ କ୍ୱାର୍ଟର ଥିଲା । ସେଥିରେ ତିନିଗୋଟି ବଡ଼ ରହିବା କୋଠରି ଏବଂ ଆଉ ତିନିଗୋଟି ଷ୍ଟୋର, ରୋଷେଇଘର ପ୍ରଭୃତି

କୋଠରି ଥିଲା । ଘରେ ପକ୍କା ଅଗଣା, କୂଅ, ପାଇଖାନା ପ୍ରଭୃତି ଥିଲା । ସେହି ହଷ୍ଟେଲର ମୁଁ ସାଢ଼େ ଚାରିବର୍ଷ ସୁପରିଣ୍ଟେଣ୍ଡେଣ୍ଟ ଥିଲି ଏବଂ ସେହି ସୁପରିଣ୍ଟେଣ୍ଡେଣ୍ଟଙ୍କ ରହିବା ଘରେ ରହିଥିଲି । କଲେଜ ହତା ମଧ୍ୟରେ ପ୍ରିନ୍ସପାଲ ପୂର୍ବତନ ସ୍କୁଲ ହେଡ଼ମାଷ୍ଟରଙ୍କ ଘରେ ରହୁଥିଲେ । ମୁଁ ମଧ୍ୟ କଲେଜ କମ୍ପାଉଣ୍ଡ ମଧ୍ୟରେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ କ୍ୱାର୍ଟର୍ସରେ ରହୁଥିବାରୁ ଡକ୍ଟର ବାନାର୍ଜୀଙ୍କ ପରିବାର ସହିତ ଆମର ଖୁବ୍ ସହୃଦୟତା ହୋଇଥିଲା । ଡକ୍ଟର ବାନାର୍ଜୀଙ୍କ ସ୍ତ୍ରୀ ଖୁବ୍ ମେଳାପୀ ଲୋକ ଥିଲେ ଏବଂ ବହୁବାର ଆମ ଘରକୁ ଆସୁଥିଲେ ।

ଡକ୍ଟର ବାନାର୍ଜୀ ସେ କଲେଜରେ ୧୯୪୪ ମସିହା ଅକ୍ଟୋବର ମାସ ୨୯ ତାରିଖରୁ ୧୯୪୭ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ପ୍ରାୟ ଦୁଇବର୍ଷ ନଅ ମାସ ଅଧ୍ୟକ୍ଷ ଥିଲେ । ସେ ସମୟରେ କଲେଜରେ ନିୟମିତ ଭାବରେ ପଢ଼ାପଢ଼ି ହେଉଥିଲା ଏବଂ କଲେଜରେ କୌଣସି ଗୋଳମାଳ ନ ଥିଲା । ଛାତ୍ର ଓ ଅଧ୍ୟାପକମାନେ ସମସ୍ତେ ଶାନ୍ତିରେ ଚଳୁଥିଲେ । ୧୯୪୬ ମସିହାରୁ କଲେଜରେ ବି.ଏ., ବି.ଏସ୍‌ସି. ଏବଂ ବି.କମ୍. ଶ୍ରେଣୀମାନ ଖୋଲିଲା ଏବଂ କଲେଜ ଗୋଟିଏ ପ୍ରଥମ ଶ୍ରେଣୀ କଲେଜ ହେଲା । ସେହି ବର୍ଷରୁ ମଧ୍ୟ କଲେଜର ନାମ ଗଙ୍ଗାଧର ମେହେର କଲେଜ ହେଲା । ସେହି ବର୍ଷଗୁଡ଼ିକରେ ମୁଁ ସେ କଲେଜରେ ସୁଖରେ ଥିଲି ଏବଂ ଅନ୍ୟ କୌଣସି କଲେଜକୁ ବଦଳି ହୋଇ ଯିବାକୁ ଇଚ୍ଛା କରୁ ନ ଥିଲି । ସେହି ସମୟରେ ୧୯୪୬ ମସିହା ଡିସେମ୍ବର ମାସରେ ମୁଁ କରାଚିରେ ଭାରତୀୟ ଅର୍ଥନୀତି କନ୍‌ଫରେନ୍ସରେ ଯୋଗ ଦେବାକୁ ଯାଇଥିଲି । ସେତେବେଳେ ଦେଶ ବିଭାଜନ ପୂର୍ବରୁ କରାଚି ସହରର ଅବସ୍ଥା ଦେଖିବାର ସୁଯୋଗ ପାଇଥିଲି ।

୧୯୪୭ ମସିହା ଜୁଲାଇ ପହିଲାରୁ ଡକ୍ଟର ବାନାର୍ଜୀ ପୁରୀ କଲେଜକୁ ଅଧ୍ୟକ୍ଷ ଭାବରେ ବଦଳି ହୋଇଗଲେ । ତାଙ୍କ ସ୍ଥାନରେ ରେଭେନ୍ସା କଲେଜର ଇତିହାସ ଅଧ୍ୟାପକ ଘନଶ୍ୟାମ ଦାସ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ରୂପେ ଯୋଗ ଦେଲେ । ଘନଶ୍ୟାମବାବୁ ସମ୍ବଲପୁର ସହରର ବାସିନ୍ଦା ଥିଲେ ଏବଂ ସମ୍ବଲପୁର କଲେଜର ପ୍ରିନ୍ସପାଲ ହେବାକୁ ସେ ଅତ୍ୟନ୍ତ ଆଗ୍ରହୀ ଥିଲେ । ଆମ୍ଭେମାନେ ସମସ୍ତେ ଘନଶ୍ୟାମବାବୁଙ୍କୁ ରେଭେନ୍ସା କଲେଜରେ ଜାଣିଥିଲୁ । ମୁଁ ରେଭେନ୍ସା କଲେଜରେ ଆଇ.ଏ. ଓ ବି.ଏ. ପଢ଼ିଲାବେଳେ ଘନଶ୍ୟାମବାବୁ ଆମ ପୂର୍ବ ଛାତ୍ରାବାସରେ ଦୁଇବର୍ଷ ଏବଂ ତା'ପରେ ପଶ୍ଚିମ ଛାତ୍ରାବାସରେ ଦୁଇବର୍ଷ ସୁପରିଣ୍ଟେଣ୍ଡେଣ୍ଟ ଥିଲେ ଏବଂ ବି.ଏ. କ୍ଲାସ୍‌ରେ ମୁଁ ମଧ୍ୟ ଇତିହାସରେ ତାଙ୍କର ଛାତ୍ର ଥିଲି ।

ଘନଶ୍ୟାମବାବୁ ଜଣେ କଳ୍ପନାବିଳାସୀ ବ୍ୟକ୍ତି ଥିଲେ ଏବଂ କଲେଜର ଉନ୍ନତି କରିବା ପାଇଁ ଏବଂ କଲେଜର ସୁନାମ ପାଇଁ ବିଭିନ୍ନ କଳ୍ପନା କରିଥିଲେ । ମାତ୍ର ଅନେକ ସମୟରେ ତାଙ୍କର କଳ୍ପନା ଅବାସ୍ତବ ଏବଂ ଚିନ୍ତା 'ଅବ୍ୟବସ୍ଥିତ ଥିଲା । ସେଥିଯୋଗୁଁ ଅନେକ ସମୟରେ କଲେଜର ଶାନ୍ତିପୂର୍ଣ୍ଣ ବାତାବରଣରେ ବ୍ୟାଘାତ ହେଉଥିଲା ଏବଂ ଆମେ ଅଧ୍ୟାପକମାନେ ଅସୁବିଧାରେ ପଡୁଥିଲୁ । ସେ ଚାହୁଁଥିଲେ କଲେଜରେ ବିଭିନ୍ନ ପ୍ରକାର

ସଭାସମିତି, ଖେଳକସରତ ଏବଂ ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ମଧ୍ୟରେ ସବୁବେଳେ ବିଭିନ୍ନ ପ୍ରକାର କାର୍ଯ୍ୟ ଚାଲୁ ଏବଂ ସେମାନେ ସବୁବେଳେ କାର୍ଯ୍ୟବ୍ୟସ୍ତ ରହନ୍ତୁ । ଅବଶ୍ୟ ସେଗୁଡ଼ିକ ପଢ଼ାପଢ଼ି କିମ୍ବା ଗବେଷଣା ସମ୍ବନ୍ଧୀୟ ନ ଥିଲା । ସେ ଜୁଲାଇ ପହିଲାରେ କଲେଜରେ ଯୋଗ ଦେଲେ । ସେହି ମାସ ପନ୍ଦର ଷୋହଳ ତାରିଖ ସମୟରେ ଅଧ୍ୟାପକ ଓ ଛାତ୍ରଙ୍କ ମଧ୍ୟରେ ଗୋଟିଏ ଫୁଟବଲ୍ ମ୍ୟାଚ କରାଇଲେ । ମ୍ୟାଚ ଆରମ୍ଭ ପୂର୍ବରୁ ସେ ଖାକି ପ୍ୟାଣ୍ଟ, ସାର୍ଟ ପିନ୍ଧି କଲେଜ ମୁଖ୍ୟ ଫାଟକ ପାଖରୁ ଫୁଟବଲ୍ ପଡ଼ିଆକୁ ଦଉଡ଼ି ଦଉଡ଼ି ଆସିଲେ । ମୁଁ ଛାତ୍ର ଅବସ୍ଥାରେ ଫୁଟବଲ୍ ଖେଳୁ ନ ଥିଲି । ତଥାପି ଅଧ୍ୟାପକମାନଙ୍କ ତରଫରୁ ଖେଳିବାକୁ ଫୁଟବଲ୍ ପଡ଼ିଆରେ ପ୍ରସ୍ତୁତ ହୋଇ ଠିଆ ହୋଇଥିଲି । ପ୍ରିନ୍ସିପାଲ ପଡ଼ିଆକୁ ଆସିବାରୁ ଖେଳ ଆରମ୍ଭ ହେଲା । ସେ ସେଣ୍ଟର ଫରଓ୍ୱାର୍ଡ଼ ସ୍ଥାନରେ ରହି ପ୍ରଥମ ବଲଟି ଜୋରରେ ମାରିଲା ବେଳକୁ ତଳେ ପଡ଼ିଗଲେ ଏବଂ ତାଙ୍କର ଡାହାଣବାହୁ ହାଡ଼ ଭାଙ୍ଗିଗଲା । ଖେଳ ଭାଙ୍ଗିଗଲା ଏବଂ ଆମେ ତାଙ୍କୁ ଡାକ୍ତରଖାନାକୁ ନେଲୁ । ଡାକ୍ତରଖାନାରେ ସ୍ଥିର ହେଲା ଯେ ସେ ପାଟନା ଯିବେ । ସେଠାରେ ତାଙ୍କ ବାହୁର ହାଡ଼ ଠିକ୍ ଭାବେ ଖଞ୍ଜା ହୋଇ ପ୍ଲାଷ୍ଟର ହେବ । ତାପର ଦିନ ସେ କଲେଜ ଲାଇବ୍ରେରିଆନଙ୍କୁ ସଙ୍ଗରେ ନେଇ ପାଟନା ଗଲେ । ସେଠାରେ ପ୍ରାୟ କୋଡ଼ିଏ ଦିନ ରହିଲେ । କଲେଜରେ ବରିଷ୍ଠ ଅଧ୍ୟାପକ ଏ.ପି. ଓବ୍ରାଏନ୍ ଚାର୍ଜରେ ରହିଲେ ।

ପ୍ରିନ୍ସିପାଲ ଫେରିବାର ସାତ ଆଠ ଦିନ ପରେ ଅଗଷ୍ଟ ପନ୍ଦର ତାରିଖ ଦିନ ଭାରତ ସ୍ୱାଧୀନ ହେଲା । ସେଦିନ ଭୋର ସମୟରୁ କଲେଜର ଛାତ୍ର ଛାତ୍ରୀ ଓ ଅଧ୍ୟାପକମାନଙ୍କର ପ୍ରଭାତ ଫେରି ଓ ଶୋଭାଯାତ୍ରା ପ୍ରିନ୍ସିପାଲଙ୍କ ନେତୃତ୍ୱରେ ବାହାରି ସମ୍ବଲପୁରର ବଡ଼ବଜାର ଓ ସାନବଜାର ରାସ୍ତାରେ ବିଭିନ୍ନ ଧ୍ୱନି ଦେଇ ବୁଲି କଲେଜ ଫେରିଲା । ମୁଁ ଡକ୍ଟର ବାନାର୍ଜୀଙ୍କ ସମୟରୁ କଲେଜ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ରହିଥିଲି । ହଷ୍ଟେଲ ପିଲାଙ୍କୁ ନେଇ ବିଭିନ୍ନ ସଭା ଓ ଶୋଭାଯାତ୍ରାରେ ଯୋଗଦେବା ମୋର ଦାୟିତ୍ୱ ଥିଲା । ବୁଢ଼ାରାଜାରେ ଯେଉଁ ପିଲାମାନେ ଥିଲେ ସେମାନଙ୍କର ସୁପରିଣ୍ଟେଣ୍ଡେଣ୍ଟ ରସାୟନ ଅଧ୍ୟାପକ ଦାଶରଥି ମିଶ୍ର ଥିଲେ ।

ତାହାପରେ ଶ୍ରାବଣ ପୂର୍ଣ୍ଣିମା ଦିନ କବି ଗଙ୍ଗାଧର ମେହେରଙ୍କ ଜୟନ୍ତୀ ପାଳନ କରାଗଲା । ସେଦିନ ମଧ୍ୟ ସକାଳୁ କଲେଜରୁ ଗୋଟିଏ ପ୍ରଭାତ ଫେରି ଶୋଭାଯାତ୍ରା ବାହାରି ସମ୍ବଲପୁର ସହର ପରିକ୍ରମା କରିଥିଲା । ସେ ଶୋଭାଯାତ୍ରାରେ ପିଲାମାନେ କବିଙ୍କ ତପସ୍ୱିନୀ କାବ୍ୟରୁ "ମଙ୍ଗଳେ ଅଇଲା ଉଷା ବିକଚ ରାଜୀବ ଦୃଶା, କଳକଣ୍ଠ କଣ୍ଠେ କହିଲା, ଦରଶନ ଦିଅ ସତୀ ରାତି ପାହିଲା" ବୋଲୁଥିଲେ । ଶୋଭାଯାତ୍ରା ପରେ ଦିନ ଏଗାରଟା ବେଳକୁ ପ୍ରିନ୍ସିପାଲ ଦଳେ ପିଲା ଏବଂ କେତେକ ଅଧ୍ୟାପକଙ୍କୁ ନେଇ ମହାନଦୀ ପାରି ହୋଇ କବିଙ୍କ ଜନ୍ମସ୍ଥାନ ବରପାଲି ଯାଇଥିଲେ । ମୁଁ ସେମାନଙ୍କ ସଙ୍ଗରେ ଯାଇ ନ ଥିଲି । ଯାଇଥିବା ଅଧ୍ୟାପକମାନେ କହୁଥିଲେ ଯେ ସେମାନେ ବାଟରେ ବରଗଡ଼ଠାରେ ସମସ୍ତେ ମିଠାଇ ଖାଇଥିଲେ ।

ଭାରତ ସ୍ୱାଧୀନ ହେବା ପରେ କୈଳାସନାଥ କାଟ୍‌ଜୁ ଓଡ଼ିଶାର ରାଜ୍ୟପାଳ ଥିଲେ, ସେ ନଭେମ୍ବର ମାସରେ ସମ୍ବଲପୁର ଗସ୍ତରେ ଆସିଥିଲେ, ପ୍ରିନ୍ସପାଲ ଡେପୁଟି କମିସନରଙ୍କୁ କହି କଲେଜରେ ରାଜ୍ୟପାଳଙ୍କ ନିମିତ୍ତ ଗୋଟିଏ ଚାହା ଭୋଜି ଯୋଗାଡ଼ କଲେ । ମୁଁ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଥିବାରୁ ଚାହା ଭୋଜିର ଯୋଗାଡ଼ କରିବାକୁ ମୋତେ ଦାୟିତ୍ୱ ଦିଆହୋଇଥିଲା । ରାଜ୍ୟପାଳ ଆସି ଚାହା ଭୋଜି ଆରମ୍ଭ ହେଲାବେଳେ ଆମେ ଦେଖିଲୁ ଯେ ଆମକୁ ବରାଦ ଦିଆ ଯାଇଥିବା ଠାରୁ ବହୁ ଅଧିକ ଲୋକ ଚାହା ଭୋଜିକୁ ଆସିଛନ୍ତି । ଆମେ ବଡ଼ ଅଡୁଆରେ ପଡ଼ିଲୁ । ଅଳ୍ପ ସମୟ ମଧ୍ୟରେ ଏତେ ଅଧିକ ଲୋକଙ୍କୁ ଚାହା ଜଳଖିଆ ଦେବା ସମ୍ଭବ ନ ଥିଲା । ତାହାପରେ ରାଜ୍ୟପାଳଙ୍କ ଚାହା ଭୋଜି ରୀତିମତ ଶୃଙ୍ଖଳିତ ଭାବରେ ହେବା ଉଚିତ ଥିଲା । ବେଶି ଲୋକ ଆସିବାରୁ ଟିକିଏ ଗୋଳମାଳିଆ ପରିସ୍ଥିତି ହେଲା । ଯାହାହେଉ ଆମେ କୌଣସିମତେ ଚାହା ଜଳଖିଆ ଯୋଗାଡ଼ କରି ପରିସ୍ଥିତି ସମ୍ଭାଳିନେଲୁ । ପରେ ବେଶୀ ଲୋକ ଆସିବାର କାରଣ ବୁଝିଲୁ ଯେ ପ୍ରିନ୍ସପାଲ୍ ନିଜେ ସମ୍ବଲପୁର ବଜାରର ବହୁଲୋକଙ୍କୁ ଚାହାଭୋଜିକୁ ଆସିବାକୁ ନିମନ୍ତ୍ରଣ କରିଥିଲେ । ଅଥଚ ଏଆଡ଼େ ଆମକୁ ସେମାନଙ୍କ ତାଲିକା ଦେଇ ନ ଥିଲେ ।

ସେହି ଶିକ୍ଷାବର୍ଷରେ ୧୯୪୮ ମସିହା ଜାନୁଆରୀ ତିରିଶ ତାରିଖରେ ଆତତାୟୀ ଗୁଳିରେ ଗାନ୍ଧିଜୀଙ୍କର ମହାପ୍ରୟାଣ ହେଲା । ସେଥିରେ ସ୍ୱତଃପ୍ରବୃତ୍ତ ହୋଇ ସବୁ ଅଧ୍ୟାପକ ଓ ଛାତ୍ର କଲେଜର ଶୋକସଭାରେ ଯୋଗ ଦେଇଥିଲେ ।

ସେହି ବର୍ଷ ଅପ୍ରେଲ ମାସରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ହୀରାକୁଦ ବନ୍ଧର ଶୁଭ ଦେବାକୁ ଆସିଲେ । ସମ୍ବଲପୁର ସହରରେ ମଧ୍ୟ ତାଙ୍କର ଭାଷଣ ପାଇଁ ଗୋଟିଏ ସାଧାରଣ ସଭା ହେବା ସ୍ଥିର ହେଲା । ସେତେବେଳେ ସମ୍ବଲପୁର ଡେପୁଟି କମିସନର ସେ ସଭା ସହରର ମହାନଦୀ କୂଳରେ କରିବାକୁ ଚାହୁଁଥିଲେ । ମାତ୍ର ପ୍ରିନ୍ସପାଲ ତାଙ୍କ ସହିତ ଯୁକ୍ତି କରି ସମ୍ବଲପୁର କଲେଜ ହତାରେ ସେ ସଭା କରିବାକୁ କହିଲେ । ଶେଷରେ କଲେଜ ପଡ଼ିଆରେ ସଭା ହେବାର ସ୍ଥିର ହେଲା । କଲେଜ ଉପର ମହାଲାର ପଡ଼ିଆ ପାଖ ବାରନ୍ଦା ପାରାପେଟ ଭାଙ୍ଗି ସେଠାରେ ବାରନ୍ଦା ଉଚ୍ଚର ଗୋଟିଏ ମଞ୍ଚ ତିଆରି ହେଲା । ସେହି ମଞ୍ଚ ଉପରୁ ନେହେରୁ ଭାଷଣ ଦେଲେ । ସହରର ଲୋକେ ପଡ଼ିଆ ଭିତରେ ଭର୍ତ୍ତି ହୋଇ ତାଙ୍କ ଭାଷଣ ଶୁଣିଥିଲେ । ପୁଲିସ ପ୍ରଧାନମନ୍ତ୍ରୀଙ୍କ ଯିବାଆସିବା ବାଟର ସୁରକ୍ଷା କରିଥିଲେ ଏବଂ କଲେଜରେ ଶାନ୍ତି ରକ୍ଷା କରିବାର ଦାୟିତ୍ୱ ନେଇଥିଲେ । କଲେଜ ତରଫରୁ ପୁଲିସ କର୍ତ୍ତୃପକ୍ଷଙ୍କ ସହିତ ସହଯୋଗ କରିବା ଦାୟିତ୍ୱ ପ୍ରିନ୍ସପାଲ ମୋତେ ଦେଇଥିଲେ । ମୁଁ କେତେକ ଅଧ୍ୟାପକଙ୍କ ସହିତ ପୁଲିସ କର୍ତ୍ତୃପକ୍ଷଙ୍କୁ ସାହାଯ୍ୟ କରିବାପାଇଁ ସେଠାରେ ଉପସ୍ଥିତ ଥିଲି । ଆମେ ଦେଖିଲୁ ସେ ସଭା କଲେଜ ପଡ଼ିଆରେ ଗୋଟାଏ ବିରାଟ ମେଳା ହୋଇଥିଲା । ସେଥିରେ ଶାନ୍ତିଶୃଙ୍ଖଳାରେ ସାହାଯ୍ୟ କରିବା ଆମ ପକ୍ଷରେ ମୋଟେ ସମ୍ଭବ ନ ଥିଲା । ସଭାମଞ୍ଚ ଖୁବ୍ ଉଚ୍ଚ ହୋଇଥିବାରୁ ଏବଂ ଲୋକମାନେ ପଡ଼ିଆରେ ମଞ୍ଚଠାରୁ ଦୂରରେ ଥିବାରୁ ପଣ୍ଡିତ ନେହେରୁ ନିଜେ ମଧ୍ୟ ତାର ସମାଲୋଚନା

କରିଥିଲେ । ସେହି ଅପ୍ରେଲ ମାସରେ କଲେଜର ପ୍ରଥମ ଓ ତୃତୀୟ ବାର୍ଷିକ ଛାତ୍ରଛାତ୍ରୀଙ୍କ ବାର୍ଷିକ ପରୀକ୍ଷା ହେବାର ଥାଏ । ପ୍ରଧାନମନ୍ତ୍ରୀଙ୍କର କଲେଜରେ ସଭା ହେତୁ ଛାତ୍ର ଛାତ୍ରୀଙ୍କ ପଢ଼ାରେ ବ୍ୟାଘାତ ଯୁକ୍ତି ଦେଖାଇ ପ୍ରିନ୍ସିପାଲ ସେମାନଙ୍କ ପରୀକ୍ଷା ଗ୍ରୀଷ୍ମ ଛୁଟି ପରେ ଜୁଲାଇ ମାସକୁ ଘୁଞ୍ଚାଇ ଦେଲେ । ଏ କଥାରେ ଅଧିକାଂଶ ଅଧ୍ୟାପକ ଅସନ୍ତୁଷ୍ଟ ହୋଇଥିଲେ । ତାହାର ଫଳରେ ମଧ୍ୟ ତାର ପରବର୍ଷ ୧୯୪୯ ମସିହାର ବାର୍ଷିକ ପରୀକ୍ଷା ଗ୍ରୀଷ୍ମଛୁଟି ପରକୁ ଘୁଞ୍ଚାଇବା ପାଇଁ ପରଶୁରାମ ବାବୁ ପ୍ରିନ୍ସିପାଲ ଥିବାବେଳେ ପିଲାମାନେ ଧର୍ମଘଟ କରିଥିଲେ । ସେ ଧର୍ମଘଟ ସମ୍ବଲପୁର କଲେଜର ପ୍ରଥମ ଧର୍ମଘଟ । ତାହା ମଧ୍ୟ ଦିନେ ଦୁଇଦିନ ହୋଇଥିଲା । ପରୀକ୍ଷା ଘୁଞ୍ଚିଯିବାରୁ ତାହା ବନ୍ଦ ହୋଇ ଯାଇଥିଲା । ଏ ସବୁ ବିଷୟରେ ଥରେ ପଥ ହୁଡ଼ିଲେ ତାର ପ୍ରଭାବ ଅନେକ ଦିନ ଯାଏ ରହିଥାଏ ।

ସେ ସମୟରେ ହରେକୃଷ୍ଣ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ଏବଂ ନବକୃଷ୍ଣ ଚୌଧୁରୀ ରାଜସ୍ୱ ମନ୍ତ୍ରୀ ହୋଇଥାନ୍ତି । ସେହି ଅପ୍ରେଲ ମାସର ଶେଷ ଆଡ଼କୁ ନବ ଚୌଧୁରୀ ସମ୍ବଲପୁର ଗସ୍ତରେ ଆସିଥିଲେ । ପ୍ରିନ୍ସିପାଲ ତାଙ୍କ ପାଇଁ ସମ୍ବଲପୁର କଲେଜରେ ଗୋଟିଏ ସଭା, ସାଂସ୍କୃତିକ ଉତ୍ସବ ଏବଂ ନୈଶ୍ୟ ଭୋଜି ଯୋଗାଡ଼ କଲେ । ସେ ଭୋଜିସଭାକୁ ସମ୍ବଲପୁର ସହରର ବହୁ ବ୍ୟକ୍ତି ନିମନ୍ତ୍ରିତ ହୋଇଥିଲେ । ମାତ୍ର ଆଶ୍ଚର୍ଯ୍ୟର କଥା ଯେ କଲେଜର କୌଣସି ଅଧ୍ୟାପକ ଭୋଜି ସଭାପାଇଁ ନିମନ୍ତ୍ରିତ ହୋଇ ନ ଥିଲେ । ମୁଁ କଲେଜ ହତା ମଧ୍ୟରେ ରହୁଥିବାରୁ ଶେଷ ମୁହୂର୍ତ୍ତରେ ମୋ ପାଖକୁ ଗୋଟିଏ ନିମନ୍ତ୍ରଣପତ୍ର ଗଲା । କଲେଜର ସବୁ ଅଧ୍ୟାପକ ମନ୍ତ୍ରୀଙ୍କ ସଭା ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପରେ ଘରକୁ ଗଲେ । ମୁଁ ସେ ଭୋଜିସଭାକୁ ଯାଇଥିଲି । ମାତ୍ର ଅନ୍ୟ ଅଧ୍ୟାପକମାନେ କେହି ନିମନ୍ତ୍ରିତ ହୋଇ ସେଠାକୁ ଯାଇ ନ ଥିବାରୁ ମୋତେ ଭାରି ଖରାପ ଲାଗୁଥିଲା । ଏଥିରେ କଲେଜର ଅଧ୍ୟାପକମାନେ ଅପମାନିତ ବୋଧ କଲେ ଏବଂ ପ୍ରତିବାଦରେ ତାର ପରଦିନ ଦର୍ଶନ ଅଧ୍ୟାପକ ସତ୍ୟବାଦୀ ମିଶ୍ରଙ୍କ ନେତୃତ୍ୱରେ ସବୁ ଅଧ୍ୟାପକ ମଧ୍ୟ ବୁଢ଼ାରାଜାରେ ମନ୍ତ୍ରୀଙ୍କ ପାଇଁ ଗୋଟିଏ ଭୋଜି କଲେ । ସେଥିକୁ ପ୍ରିନ୍ସିପାଲଙ୍କୁ ଡାକିଲେ ନାହିଁ । ମୁଁ ସେଥିରେ ଯୋଗ ଦେଇଥିଲି । କିନ୍ତୁ ମୁଁ ଦୁଃଖିତ ହୋଇଥିଲି ଯେ କଲେଜର ପ୍ରିନ୍ସିପାଲ ଏବଂ ଅଧ୍ୟାପକମାନଙ୍କ ମଧ୍ୟରେ ଗୋଟିଏ ଗୋଳମାଳ ସୃଷ୍ଟି ହେଉଛି । ପ୍ରିନ୍ସିପାଲ ଦୁଃଖିତ ହୋଇ ତା ପରଦିନ ମୋତେ ତାଙ୍କ ଘରକୁ ଡକାଇଲେ । ମୁଁ ତାଙ୍କ ଛାତ୍ର ଥିବାରୁ ମୋତେ ବିଶ୍ୱାସକୁ ନେଇ ଅଧ୍ୟାପକମାନଙ୍କର ଅସନ୍ତୋଷର କାରଣ ପଚାରିଲେ । ମୁଁ ତାଙ୍କୁ ସହଜ ଭାବରେ ସବୁ କଥା ବୁଝାଇଦେଲି । ପରେ ସେ ଅଧ୍ୟାପକମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ କେତେକ ଅଧ୍ୟାପକଙ୍କୁ ବ୍ୟକ୍ତିଗତ ଭାବରେ ତାଙ୍କ ଘରକୁ ଖାଇବାକୁ ଡାକିଥିଲେ ।

ସେ ବର୍ଷର ଆଉ ଗୋଟିଏ କଥା ମୋର ମନେଅଛି । ମଇ ମାସ ପ୍ରଥମ ସପ୍ତାହରେ ଯେଉଁଦିନ କଲେଜ ଗ୍ରୀଷ୍ମଛୁଟି ପାଇଁ ବନ୍ଦ ହେଲା ସେଦିନ କଲେଜର ସବୁ ଅଧ୍ୟାପକ ଏବଂ ଅଣଶିକ୍ଷକ କର୍ମଚାରୀଙ୍କ ପାଇଁ ଗୋଟିଏ ଭୋଜିର ବରାଦ ହେଲା । କଲେଜ ଗୃହ ସମ୍ମୁଖରେ ଥିବା ଟେନିସ୍ ପଡ଼ିଆରେ ଶ୍ରେଣୀ ଗୃହର ଟେବୁଲ ଚଉକି ଅର୍ଦ୍ଧ ବୃତ୍ତାକାରରେ

ଖାଇବା ଲୋକଙ୍କ ବସିବାପାଇଁ ସଜାଇ ଦିଆଗଲା । ମଝିରେ ଗୋଟିଏ ଶତରଞ୍ଜି ପକାଇ ଗୀତ ବାଦ୍ୟର ବରାଦ ହେଲା । ହଷ୍ଟେଲରେ ଖାଇବା ପଦାର୍ଥ ରନ୍ଧା ହୋଇ କଲେଜ ବାରନ୍ଦାକୁ ଆଣି ଅତିଥିମାନଙ୍କୁ ଟେବୁଲରେ ପରଷିଦେବାର ବରାଦ କରାଗଲା । ରନ୍ଧାରନ୍ଧି ଏବଂ ପରଷିବା ଦାୟିତ୍ୱ ମୋତେ ଦିଆଗଲା । ଆମେ ଡାଲି ତରକାରି ପ୍ରଭୃତି କରି କଲେଜ ବାରନ୍ଦାକୁ ଆଣିଲୁ । ଭାତପାଇଁ ହଣ୍ଡାମାନଙ୍କରେ ପାଣି ଗରମ ହେଉଥାଏ । ଚାଉଳ ପଡ଼ି ନ ଥାଏ । ଗରମ ଭାତ ପରଷିବାକୁ ଏହି ବରାଦ ହୋଇଥିଲା । ଗୀତ ବନ୍ଦ ହେଲାକ୍ଷଣି ହଠାତ୍ ପ୍ରିନ୍ସିପାଲ ଆମକୁ କିଛି ନ ପଚାରି ଅତିଥିମାନଙ୍କୁ ଖାଇବା ପାଇଁ ଚେୟାରମାନଙ୍କରେ ବସାଇଦେଲେ ଏବଂ ପତର ଓ ଲେମ୍ବୁ ଲୁଣ ପରଷି ଦେଲେ । ସେତେବେଳକୁ ହାଣ୍ଡିରେ ଚାଉଳ ପଡ଼ି ନ ଥାଏ । ଆମେ ବ୍ୟସ୍ତ ହେଲୁ । ଖାଇବା ଲୋକ କେତେ ସମୟ ପତର ପକାଇ ବସିଥିବେ । ଆମେ ତରତର କରି ଚାଉଳିଆ ଭାତ ଆଣି ପରଷିଲୁ । ଅତିଥିମାନେ ଚାଉଳିଆ ଭାତ ଖାଇ ସନ୍ତୁଷ୍ଟ ହେଲେ ନାହିଁ । ରାନ୍ଧିବା ଲୋକ ମଧ୍ୟ ଅପ୍ରସ୍ତୁତ ହେଲେ । ଆମକୁ ଖବର ଦେଇ ଦଶ ପନ୍ଦର ମିନିଟ୍ ପରେ ଖାଇବାକୁ ବସାଇଥିଲେ ଏପରି ଅବସ୍ଥା ହୋଇ ନ ଥାନ୍ତା ।

ସେ ଶିକ୍ଷାବର୍ଷରେ ମୁଁ ପ୍ରିନ୍ସିପାଲଙ୍କୁ ସନ୍ତୁଷ୍ଟ କରିବାକୁ ବହୁ ପରିଶ୍ରମ କରିଥିଲି । ମୋତେ ସେ ଯେଉଁ ଦାୟିତ୍ୱ ଦେଉଥିଲେ ତାହା ଆଗ୍ରହରେ ତୁଲାଉଥିଲି । ମୁଁ ଷ୍ଟାଫ୍ କ୍ଲବ୍‌ର ସେକ୍ରେଟାରୀ ଏବଂ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ଥିବାରୁ ସବୁ ସଭାସମିତି, ଭୋଜିଭାତ ଆୟୋଜନ କରିବା ଦାୟିତ୍ୱ ମୋତେ ଦିଆହେଉଥିଲା । ଅନେକ ଦିନ ମୁଁ ଅଶାନ୍ତିରେ ସମୟ କାଟୁଥିଲି । ସେହି ବର୍ଷ ମଧ୍ୟ ମୋର ଗୋଟିଏ ବ୍ୟକ୍ତିଗତ ବଡ଼ ଦୁଃଖ ହେଲା । ୧୯୪୮ ମସିହା ଫେବୃଆରୀ ମାସରେ ଶିବରାତ୍ରି ଦିନ ନନାଙ୍କର ଦେହାନ୍ତ ହେଲା । ତାଙ୍କର ଶୁଦ୍ଧିକ୍ରିୟା ପାଇଁ ପ୍ରାୟ ତେର ଚଉଦ ଦିନ ଛୁଟି ନେଇ ଗାଆଁକୁ ଯାଇଥିଲି । ଆଗରୁ ଥରେ ଯାଇ ନନାଙ୍କୁ ରୋଗଶଯ୍ୟାରେ ଦେଖିଥିଲି । ସ୍ତ୍ରୀ ଓ ପିଲାଙ୍କୁ ତାଙ୍କ ସେବା ପାଇଁ ଗାଁରେ ରଖିଥିଲି ।

ସେ ବର୍ଷ କଲେଜ ପରିଚାଳନାରେ ବିଭିନ୍ନ ଅବ୍ୟବସ୍ଥା ଦେଖି ସମ୍ବଲପୁର ସହରର କେତେକ ପ୍ରମୁଖ ବ୍ୟକ୍ତି ଅସନ୍ତୋଷ ପ୍ରକାଶ କରୁଥିଲେ । ସେମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ବ୍ରଜମୋହନ ପଣ୍ଡା ଓ ଶ୍ରୀଯୁକ୍ତ ଭରତ ଚନ୍ଦ୍ର ନାୟକ ତତ୍କାଳୀନ ଡି.ପି.ଆଇ. ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କୁ ଭେଟି ଆସନ୍ତା ବର୍ଷରୁ ପ୍ରିନ୍ସିପାଲଙ୍କୁ ବଦଳାଇ ଦେବାକୁ ଅନୁରୋଧ କରୁଥିଲେ । ପ୍ରିନ୍ସିପାଲଙ୍କର ମଧ୍ୟ ସେମାନଙ୍କ ସହିତ ବିବାଦ ଲାଗିଥିଲା । ଆମେ ଅଧ୍ୟାପକମାନେ ଏ କଥା ଜାଣିଥିଲୁ । କିନ୍ତୁ ଆମେ ସେମାନଙ୍କର ସହଯୋଗୀ ନ ଥିଲୁ । ନବ ଚୌଧୁରୀଙ୍କ ସମ୍ମାନାର୍ଥେ ଅଧ୍ୟାପକମାନେ ଯେଉଁ ଭୋଜି କରି ପ୍ରିନ୍ସିପାଲଙ୍କୁ ନିମନ୍ତ୍ରଣ କରି ନ ଥିଲେ ସେଥିରୁ ମନ୍ତ୍ରୀ ପ୍ରିନ୍ସିପାଲ ଓ ଅଧ୍ୟାପକମାନଙ୍କ ମଧ୍ୟରେ ମତଭେଦ କଥା ଜାଣିଥିଲେ । ସେ ଭୋଜି ସଭାରେ ମଧ୍ୟ କେତେକ ଅଧ୍ୟାପକ କଲେଜ ପରିଚାଳନାରେ ଅବ୍ୟବସ୍ଥା ଏବଂ ପ୍ରିନ୍ସିପାଲଙ୍କ ବହୁ ଦୋଷ ଓ ଦୁର୍ବଳତା ବିଷୟ ମନ୍ତ୍ରୀଙ୍କୁ କହିଥିଲେ ।

ପରବର୍ତ୍ତୀ ଶିକ୍ଷା ବର୍ଷ ଜୁଲାଇ ଠାରୁ ଆରମ୍ଭ ହେଲା । ସ୍ଥଗିତ ଥିବା ପିଲାମାନଙ୍କର ବାର୍ଷିକ ପରୀକ୍ଷା ହେଲା । ସେଥିଯୋଗୁଁ ସେ ପିଲାଙ୍କର ପଢ଼ାପଢ଼ି ଆରମ୍ଭ କରିବା ଡେରି ହେଲା । ନୂଆ ପିଲାଙ୍କର ଯଥାବିଧି ନାମ ଲେଖାହେଲା । ସମସ୍ତଙ୍କର ପଢ଼ାପଢ଼ି ଆରମ୍ଭ କରିବା ପାଇଁ ମାସେ ଖଣ୍ଡେ ଡେରି ହୋଇଗଲା । ଅକ୍ଟୋବର ମାସରେ ପୂଜାଛୁଟି ମଧ୍ୟରେ ଘନଶ୍ୟାମବାବୁଙ୍କର ସମ୍ବଲପୁର କଲେଜରୁ ବାଲେଶ୍ୱର କଲେଜର ଅଧ୍ୟକ୍ଷ ହୋଇଯିବା ପାଇଁ ବଦଳି ଆଦେଶ ଡି.ପି.ଆଇ. ଅଫିସରୁ ଆସିଲା । ସେ ଆଦେଶ ପାଇ ତାଙ୍କର ସନ୍ଦେହ ହେଲା ଯେ ଅଧ୍ୟାପକମାନେ ବ୍ରଜ ମୋହନ ପଣ୍ଡା ଓ ଭରତ ନାୟକ ପ୍ରଭୃତିଙ୍କ ଦ୍ୱାରା ଡି.ପି.ଆଇ.ଙ୍କୁ କହି ତାଙ୍କର ସମ୍ବଲପୁରରୁ ବଦଳି କରାଇଛନ୍ତି । ସେଥିପାଇଁ ସେ ଆମ୍ଭମାନଙ୍କ ଉପରେ ବିଶେଷ ରାଗିଲେ । ବଦଳି ଆଦେଶ ପାଇବାର ସାତଦିନ ମଧ୍ୟରେ ମୋତେ ପ୍ରଧାନ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ପଦରୁ ଅବ୍ୟାହତି ଦେଇ କମର୍ସ ଅଧ୍ୟାପକ ହରିଶ୍ଚନ୍ଦ୍ର ଦାସଙ୍କୁ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ କଲେ ଏବଂ ତୁରନ୍ତ ସୁପରିଣ୍ଟେଣ୍ଡେଣ୍ଟ କ୍ୱାର୍ଟର୍ସ ଛାଡ଼ିବାକୁ ମୋତେ ଆଦେଶ ଦେଲେ । ଅଧ୍ୟାପକ ଦାଶରଥି ମିଶ୍ରଙ୍କ ସ୍ଥାନରେ ମଧ୍ୟ ଶ୍ରୀଯୁକ୍ତ ଗୋଲୋକ ବିହାରୀ ଧଳଙ୍କୁ ନିଯୁକ୍ତ କଲେ । ହରିଶ୍ ବାବୁ ପ୍ରିନ୍ସିପାଲଙ୍କ ତାଡ଼ନାରେ ସଙ୍ଗେ ସଙ୍ଗେ ଆସି ମୋଠାରୁ ହଷ୍ଟେଲ ଚାର୍ଜ ନେବାକୁ କହିଲେ । ମୁଁ ବଡ଼ ଅସୁବିଧାରେ ପଡ଼ିଲି । ମାତ୍ର ଚାର୍ଜ ନ ଦେଇ ପୂଜାଛୁଟି ପରେ ନୂଆ ପ୍ରିନ୍ସିପାଲ୍ ଡକ୍ଟର ପରଶୁରାମ ମିଶ୍ର ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲି । ହରିଶ୍‌ବାବୁ ମୋର ବନ୍ଧୁ ଥିଲେ । ମାତ୍ର ବାଧ ହୋଇ ଛୁଟି ଭିତରେ ଚାର୍ଜ ନେବାକୁ ଦୁଇ ତିନିଥର ଆସିଥିଲେ । ମୁଁ ସବୁବେଳେ ତାଙ୍କୁ ନୂଆ ପ୍ରିନ୍ସିପାଲ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହୁଥାଏ ।

ଛୁଟି ପରେ ନଭେମ୍ବର ଆଠ ତାରିଖରେ ପରଶୁରାମ ବାବୁ କଲେଜ ଅଧ୍ୟକ୍ଷ ଭାବରେ ଚାର୍ଜ ନେଲେ । ସେହିଦିନ ଚାର୍ଜ ଦେବା ପୂର୍ବରୁ ଘନଶ୍ୟାମବାବୁ କଲେଜ ଗଭର୍ଣ୍ଣିଂ ବଡ଼ି ମିଟିଂ ଡକାଇ ତାଙ୍କର ହଷ୍ଟେଲମାନଙ୍କର ନୂତନ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ କରିଥିବା ଆଦେଶକୁ ଅନୁମୋଦିତ କରାଇନେଲେ । ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହେଲୁ ମାତ୍ର ଆଉ କରିବାର କିଛି ଉପାୟ ନ ଥାଏ । ଅଧ୍ୟକ୍ଷ ପଦରୁ ଅବ୍ୟାହତି ନେଇ ଘନଶ୍ୟାମବାବୁ ସାତ ଆଠ ଦିନ ପରେ ବାଲେଶ୍ୱର ଗଲେ । ତାଙ୍କ ପରିବାର ପ୍ରିନ୍ସିପାଲଙ୍କ ରହିବା ଘରେ ରହିଥାନ୍ତି । ମୁଁ ବିଦାୟୀ ଅଧ୍ୟକ୍ଷଙ୍କ ଅଧାବର୍ଷରେ ସୁପରିଣ୍ଟେଣ୍ଡେଣ୍ଟ ବଦଳି କରିବା ଆଦେଶକୁ କାର୍ଯ୍ୟକାରୀ କରିବା ବିଷୟ ପରଶୁରାମବାବୁଙ୍କୁ ପଚାରିଲି । ସେ ଗଭର୍ଣ୍ଣିଂ ବଡ଼ି ଦ୍ୱାରା ଅନୁମୋଦିତ ପୂର୍ବତନ ଅଧ୍ୟକ୍ଷଙ୍କ ଆଦେଶକୁ ବଦଳାଇବାକୁ ଭୟ କଲେ ଏବଂ ମୋତେ ଆଦେଶ ମାନିନେବାକୁ କହିଲେ । ମୁଁ କିନ୍ତୁ ସେ ବିଷୟରେ ଡି.ପି.ଆଇ.ଙ୍କୁ ଭେଟିବାକୁ ତାଙ୍କର ଅନୁମତି ମାଗିଲି । ତାଙ୍କର ଅନୁମତି ପାଇ ମୁଁ ଡି.ପି.ଆଇ.ଙ୍କୁ ଭେଟିଲି । ସେତେବେଳକୁ ଶ୍ୟାମଚନ୍ଦ୍ର ତ୍ରିପାଠୀ ଅବସର ନେଇ ସାରିଥାନ୍ତି । ତାଙ୍କ ସ୍ଥାନରେ ଶ୍ରୀ ଏସ୍.ରାୟ ଡି.ପି.ଆଇ. ହୋଇଥାନ୍ତି । ସେ ମୋ ଠାରୁ ସବୁ ବିବରଣୀ ଶୁଣି କହିଲେ ଯେ ସେ ଘନଶ୍ୟାମବାବୁଙ୍କ ଠାରୁ ଖଣ୍ଡିଏ ଚିଠି ପାଇଥିଲେ ଯେ ହଷ୍ଟେଲ

ସୁପରିଣ୍ଟେଣ୍ଡେଣ୍ଟ କ୍ୱାର୍ଟର୍ସ ଖାଲି ଅଛି । ପ୍ରିନ୍ସିପାଲଙ୍କ ରହିବା ଘର ଛାଡ଼ି କେତେମାସ ତାଙ୍କ ପରିବାରକୁ ସେଠାରେ ରଖିବାକୁ ଅନୁମତି ଦିଆଯାଉ । ଏସ୍.ରାୟ ମୋତେ କହିଲେ ଯେ ଏକଥା ପଢ଼ି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି ଯେ ବର୍ଷକ ମଧ୍ୟରେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଘର ଖାଲି କିପରି ଅଛି । ବର୍ତ୍ତମାନ ସବୁ କଥା ମୁଁ ବୁଝିପାରିଲି । ଏହା କହି ବିଦାୟୀ ପ୍ରିନ୍ସିପାଲ୍‌ଙ୍କର ସେ ବିଷୟରେ ସବୁ ଆଦେଶ ବାତିଲ୍ କରିଦେଲେ ଏବଂ ମୋତେ କହିଲେ ଯେ ତୁମେ ପରଶୁରାମବାବୁଙ୍କୁ କହି କଲେଜ ଗଭର୍ଣ୍ଣିଂ ବଡ଼ି ଦ୍ୱାରା ଅନୁମୋଦିତ କରାଇନେବ । ମୁଁ ଫେରିଆସି ପରଶୁରାମବାବୁଙ୍କୁ ସବୁ କଥା କହିଲି । ଡି.ପି.ଆଇ.ଙ୍କ ଆଦେଶ ଅନୁସାରେ ନୂତନ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତି ଆଦେଶ ବାତିଲ ହେଲା ଏବଂ ଆମ୍ଭେମାନେ ବର୍ଷ ଶେଷଯାଏ ପୂର୍ବ ପରି ରହିଲୁ । ପରବର୍ତ୍ତୀ ବର୍ଷ ଆରମ୍ଭରେ ମୁଁ ସୁପରିଣ୍ଟେଣ୍ଡେଣ୍ଟ ପଦ ଓ କ୍ୱାର୍ଟର୍ସ ଛାଡ଼ି ପୁଣି ବୁଢ଼ାରାଜାର ଗୋଟିଏ ଘରେ ରହିଲି । ମୋ ଜାଗାରେ ପ୍ରଫେସର ଶ୍ରୀମତ୍ ସାହୁ ସୁପରିଣ୍ଟେଣ୍ଡେଣ୍ଟ ହେଲେ ଏବଂ ବୁଢ଼ାରାଜାରେ ସେ ରହୁଥିବା ଘରେ ମୁଁ ରହିଲି । ଏ ଅଶ୍ୱସ୍ତିକର ଘଟଣାରେ ମୋର ମନ ତିକ୍ତ ହୋଇଥିଲା । ତଥାପି ମୁଁ ସମ୍ବଲପୁର ଠାରୁ ବଦଳି ହେବାକୁ ଇଚ୍ଛା କରୁ ନ ଥିଲି । ସେଠାରେ ସାଙ୍ଗସାଥିଙ୍କ ମେଳରେ ରହିବାକୁ ମୁଁ ଭଲ ପାଉଥିଲି । ସମ୍ବଲପୁର ସହରରେ ମଧ୍ୟ ମୋର ଅନେକ ଲୋକଙ୍କ ସହିତ ବନ୍ଧୁତା ହୋଇଥିଲା । ତାହାପରେ ମୁଁ ଆହୁରି ତିନି ବର୍ଷ ସେ କଲେଜରେ ଚାକିରି କରିଥିଲି ଏବଂ ତିନିବର୍ଷ ଯାକ ବୁଢ଼ାରାଜାରେ ରହିଥିଲି । ଘନଶ୍ୟାମବାବୁ ବାଲେଶ୍ୱରରେ ବର୍ଷେ ରହିବା ପରେ ସେଠାରେ ଅଶାନ୍ତିକର ପରିସ୍ଥିତି ହେତୁ ଶେଷରେ ରେଭେନ୍ସା କଲେଜକୁ ଇତିହାସ ଅଧ୍ୟାପକ ରୂପେ ଫେରିଆସିଥିଲେ । ମୁଁ ବିଲାତରୁ ଫେରି ରେଭେନ୍ସା କଲେଜରେ ବର୍ଷେ ଖଣ୍ଡେ ତାଙ୍କ ସହିତ ଚାକରି କରିଥିଲି । ତାଙ୍କ ସହିତ କୌଣସି ବିବାଦ ନ କରି ଗୁରୁ ଶିଷ୍ୟର ସମ୍ବନ୍ଧ ରଖିଥିଲି ।

ପରଶୁରାମବାବୁ ଗଙ୍ଗାଧର ମେହେର କଲେଜରେ ମୋଟେ ଗୋଟିଏ ବର୍ଷ ଅଧ୍ୟକ୍ଷ ହୋଇଥିଲେ । ୧୯୪୯ ମସିହା ଅକ୍ଟୋବର ୨୪ ତାରିଖରେ ସରକାରୀ ଚାକିରିରୁ ଅବସର ଗ୍ରହଣ କଲେ । ସେ ଅଧ୍ୟକ୍ଷ ଥିବା ଏହି ବର୍ଷଟି ଘଟଣା ବିହୀନ ଥିଲା । ୧୯୪୯ ମସିହା ଅପ୍ରେଲ ମାସରେ ବାର୍ଷିକ ପରୀକ୍ଷା ଘୁଞ୍ଚାଇବା ପାଇଁ ପିଲାମାନେ ଧର୍ମଘଟ କରିଥିଲେ । ମାତ୍ର ସେ ଘଟଣା ତା ପୂର୍ବ ବର୍ଷ ଘନଶ୍ୟାମବାବୁ ପରୀକ୍ଷା ଘୁଞ୍ଚାଇବା ହେତୁ ଘଟିଥିଲା । ପରୀକ୍ଷା ଘୁଞ୍ଚାଇବା ପରେ ଧର୍ମଘଟ ଶେଷ ହୋଇଥିଲା । ୧୯୪୯ ମସିହା ଅକ୍ଟୋବର ୨୪ ତାରିଖରେ ପରଶୁରାମ ମିଶ୍ର ଅବସର ଗ୍ରହଣ କରିବା ପରେ ଡକ୍ଟର ମାୟାଧର ମାନସିଂହ ସେହି ତାରିଖରେ ସମ୍ବଲପୁର କଲେଜର ଅଧ୍ୟକ୍ଷ ଭାବେ ଯୋଗ ଦେଲେ ।

ଡକ୍ଟର ମାନସିଂହ ଜଣେ ଉଚ୍ଚକୋଟିର କବି, ଭାବୁକ ଓ ଆଦର୍ଶବାଦୀ ବ୍ୟକ୍ତି ଥିଲେ । ସେ କଲେଜ ପିଲାମାନଙ୍କୁ ଭାରତର ଶୃଙ୍ଖଳିତ, ଉଚ୍ଚଶିକ୍ଷିତ ଆଦର୍ଶ ନାଗରିକ ରୂପେ ଗଢ଼ିବାକୁ ଚେଷ୍ଟା କରୁଥିଲେ ଏବଂ କଲେଜର ସର୍ବବିଧ ଉନ୍ନତି କରିବାପାଇଁ ଯତ୍ନ

କରୁଥିଲେ । ପିଲାମାନଙ୍କର ଦୋଷ ଦୁର୍ବଳତା ପାଇଁ ସେ ସେମାନଙ୍କୁ ଦଣ୍ଡ ନ ଦେଇ ତାଙ୍କର ଆଦର୍ଶ ଓ ସସ୍ନେହ ବ୍ୟବହାର ଦ୍ୱାରା ସେମାନଙ୍କର ଚରିତ୍ର ସଂଶୋଧନ କରିବାକୁ ଚେଷ୍ଟା କରୁଥିଲେ । ତାଙ୍କୁ ସବୁ ପିଲା ଓ ଅଧ୍ୟାପକ ଅତି ଭଲ ପାଉଥିଲେ ଏବଂ ସେ ସମସ୍ତଙ୍କୁ ସ୍ନେହ କରୁଥିଲେ ।

ତାଙ୍କ ସମୟରେ କଲେଜରେ ଗୋଟିଏ ସମବାୟ ଷ୍ଟୋର ହୋଇଥିଲା ଏବଂ ଅଧ୍ୟାପକ ଓ ପିଲାମାନେ ସେଥିରୁ ଶସ୍ତାରେ ଆବଶ୍ୟକ ପଦାର୍ଥ କିଣିବାର ବ୍ୟବସ୍ଥା ହୋଇଥିଲା । କଲେଜରେ ଗୋଟିଏ ଗୋଶାଳା ହୋଇ କଲେଜ କର୍ମଚାରୀମାନେ ଶସ୍ତାରେ ଶୁଦ୍ଧ କ୍ଷୀର ପାଇପାରୁଥିଲେ । କଲେଜ ବଗିଚାରେ ଉତ୍ପାଦିତ ପନିପରିବା ମଧ୍ୟ ଅଧ୍ୟାପକ ଓ ଅନ୍ୟ କଲେଜ କର୍ମଚାରୀମାନଙ୍କ ଘରେ ଯୋଗାଇ ଦିଆଯାଉଥିଲା । କଲେଜର ପିଲା ଓ କର୍ମଚାରୀମାନଙ୍କୁ ଚାହା ଜଳଖିଆ ବିକ୍ରି କରିବାକୁ ଗୋଟିଏ କାଣ୍ଟିନ୍ ହୋଇଥିଲା । ତାଙ୍କରି ସମୟରେ ପ୍ରିନ୍ସିପାଲଙ୍କ ଘର ଆଗରେ ପିଲାମାନଙ୍କ ପାଇଁ ଗୋଟିଏ ବଡ଼ ଅସ୍ଥାୟୀ ହଷ୍ଟେଲ ହୋଇଥିଲା । ସେଠାରେ ଗୋଟିଏ କମନ ମେସ୍ ହୋଇ ପିଲା ଓ ଅଧ୍ୟାପକମାନେ ଅଳ୍ପ ମୂଲ୍ୟରେ ଉତ୍କୃଷ୍ଟ ଖାଦ୍ୟ ଭୋଜନ କରିବାକୁ ପାଉଥିଲେ । ମୁଁ ସେତେବେଳେ ବୁଢ଼ାରାଜାରେ ଥିଲି । ଡକ୍ଟର ମାନସିଂହ ସେ ନୂଆ ହଷ୍ଟେଲରେ ମୋତେ ସୁପରିଣ୍ଟେଣ୍ଡେଣ୍ଟ ହେବାକୁ କହୁଥିଲେ । ମାତ୍ର ମୋର ସେ ବିଷୟରେ ପୂର୍ବ ତିକ୍ତ ଅନୁଭୂତି ହେତୁ ମୁଁ ଆଉ ସୁପରିଣ୍ଟେଣ୍ଡେଣ୍ଟ ହେବାକୁ ରାଜି ହେଲି ନାହିଁ । ଡକ୍ଟର ମାନସିଂହ ଅଧ୍ୟାପକ ଓ ପିଲାମାନଙ୍କ ସହିତ ସର୍ବଦା ମିଳାମିଶା କରୁଥିଲେ । ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାରେ କଲେଜର ସବୁ ପିଲା, ଅଧ୍ୟାପକ ଓ ସେମାନଙ୍କର ପରିବାର ଗୋଟିଏ ରମଣୀୟ ସ୍ଥାନରେ ବଣଭୋଜି କରୁଥିଲେ । ପ୍ରିନ୍ସିପାଲ୍ ସମସ୍ତଙ୍କର ଶୁଭାକାଂକ୍ଷୀ ଆଦର୍ଶ ବନ୍ଧୁ ଓ ଗୁରୁ ଥିଲେ । କଲେଜର ସାଂସ୍କୃତିକ କାର୍ଯ୍ୟକ୍ରମର ଉନ୍ନତି ନିମିତ୍ତ ସେ କଲେଜ ମାଗାଜିନ୍‌ର ଉନ୍ନତି କରିଥିଲେ । କଲେଜରେ ପ୍ରତିବର୍ଷ ଆକର୍ଷଣୀୟ ନାଟକ ଅଭିନୀତ ହେଉଥିଲା ଏବଂ କଲେଜରେ ବହୁ ସଭାସମିତି ଏବଂ ବାହାରୁ ଆସୁଥିବା ବିଶିଷ୍ଟ ଲୋକଙ୍କର ବକ୍ତୃତା ହେଉଥିଲା । ମାନସିଂହଙ୍କ ସମୟରେ ମଧ୍ୟ ବୁଢ଼ାରାଜାଠାରେ ଅସ୍ଥାୟୀ ଘର ସବୁ ଭାଙ୍ଗି ଟ୍ରଷ୍ଟ ଫଣ୍ଡ ତରଫରୁ ଅଧ୍ୟାପକମାନଙ୍କ ପାଇଁ ସ୍ଥାୟୀ ବାସଗୃହ କରିବା ଏବଂ ଛାତ୍ରମାନଙ୍କ ପାଇଁ ଗୋଟିଏ ସ୍ଥାୟୀ ବଡ଼ ଛାତ୍ରାବାସ କରିବାର ଯୋଜନା ହୋଇଥିଲା । ମାତ୍ର ୧୯୫୨ ମସିହା ଅକ୍ଟୋବର ମାସରେ ମୁଁ ସେ କଲେଜରୁ ଆସିବା ପର୍ଯ୍ୟନ୍ତ ନୂଆ ଘର ସବୁ ତିଆରି ଆରମ୍ଭ ହୋଇ ନ ଥିଲା । ମାନସିଂହ କଲେଜ ପାଇଁ ଅଧିକା ଜମି କିଣିବା, କଲେଜ ପାଇଁ ଅଧିକ ଶ୍ରେଣୀଗୃହ, ଛାତ୍ରାବାସ ଏବଂ ଅଧ୍ୟାପକମାନଙ୍କ ପାଇଁ ସ୍ଥାୟୀ ଘର କରିବା ଏବଂ କଲେଜ ପଢ଼ାପଢ଼ି ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଉନ୍ନତି କରିବା ଏବଂ ପିଲା ଓ ଅଧ୍ୟାପକମାନଙ୍କ ମଧ୍ୟରେ ଶୃଙ୍ଖଳା ଓ ସହୃଦୟତା ସ୍ଥାପନ କରିବା ପ୍ରଭୃତି କଲେଜର ସର୍ବାଙ୍ଗୀଣ ଉନ୍ନତି କରିବା ପାଇଁ ସର୍ବଦା ଚେଷ୍ଟା କରୁଥିଲେ । ସେ ମୋତେ ଅତି ଭଲ ପାଉଥିଲେ ଏବଂ ତାଙ୍କ ପରିବାର ସହ ଆମର ଘନିଷ୍ଠ ବନ୍ଧୁତା ଥିଲା । ସେ ଗଙ୍ଗାଧର

ମେହେର କଲେଜର ୧୯୪୯ ମସିହା ଅକ୍ଟୋବର ୨୪ ତାରିଖରୁ ୧୯୫୬ ମସିହା ସେପ୍ଟେମ୍ବର ତିନି ତାରିଖ ପର୍ଯ୍ୟନ୍ତ ସାତ ବର୍ଷ ଅଧ୍ୟକ୍ଷ ଥିଲେ । ମୁଁ ତାଙ୍କ ଅଧୀନରେ ୧୯୪୯ ମସିହା ଅକ୍ଟୋବର ମାସରୁ ୧୯୫୨ ମସିହା ଅକ୍ଟୋବର ମାସ ପର୍ଯ୍ୟନ୍ତ ତିନି ବର୍ଷ ଚାକିରି କରିଥିଲି । ସେ ତିନିବର୍ଷ ବୁଢ଼ାରାଜାରେ ଗୋଟିଏ ଦୁଇ ରୁମ୍ ବିଶିଷ୍ଟ ଛପର ଘରେ ରହିଥିଲି । ସେ ସମୟ ମଧ୍ୟରେ ମୋର ରହିବାରେ କିମ୍ବା କଲେଜ କାମରେ କୌଣସି ଅସୁବିଧା ହୋଇ ନ ଥିଲା । ବୁଢ଼ାରାଜାରେ ଅଧ୍ୟାପକମାନଙ୍କର ଗୋଷ୍ଠୀଗତ ଜୀବନ ଅତ୍ୟନ୍ତ ସୁଖକର ଥିଲା । କଲେଜ ଅଧ୍ୟାପନା ସହିତ ବୁଢ଼ାରାଜା ପାହାଡ଼ ତଳେ ଭଲି ଖେଳ ଏବଂ ବୁଢ଼ାରାଜାଠାରୁ ଅଳ୍ପ ଦୂର ରମଣୀୟ ସ୍ଥାନମାନଙ୍କରେ ବହୁବାର ବଣଭୋଜି ଜୀବନକୁ ସରସ ଓ ସୁଖମୟ କରିଥିଲା । ସମ୍ବଲପୁର କଲେଜରେ ମୁଁ ୧୯୪୪ ମସିହାଠାରୁ ୧୯୫୨ ମସିହା ପର୍ଯ୍ୟନ୍ତ ଆଠ ବର୍ଷ ଚାକରି କରିଥିଲି । ସେହି ସମୟ ମଧ୍ୟରୁ ସାଢ଼େ ଚାରିବର୍ଷ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଘରେ ଏବଂ ସାଢ଼େ ତିନି ବର୍ଷ ବୁଢ଼ାରାଜାରେ ରହିଥିଲି । ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଘରେ ରହିବା ସମୟରେ ମଧ୍ୟ ମୁଁ ବୁଢ଼ାରାଜାର ଗୋଷ୍ଠୀଗତ ଜୀବନରେ ସବୁବେଳେ ଭାଗ ନେଉଥିଲି । ପ୍ରାୟ ପ୍ରତିଦିନ ମୁଁ ସେଠାକୁ ସନ୍ଧ୍ୟାବେଳେ ବୁଲି ଯାଉଥିଲି । କଲେଜ ଓ ହଷ୍ଟେଲ ଠାରୁ ବୁଢ଼ାରାଜା ଅତି ପାଖରେ ଥିଲା । ବୁଢ଼ାରାଜାରେ ରହିବା ସମୟରେ ଯେଉଁ ଅଧ୍ୟାପକମାନଙ୍କ ସଙ୍ଗରେ ରହିଥିଲି ସେମାନଙ୍କ ପରିବାର ସହିତ ମୋ ପରିବାରର ଘନିଷ୍ଠ ବନ୍ଧୁତା ହୋଇଥିଲା ଏବଂ ସେ ଘନିଷ୍ଠ ବନ୍ଧୁତା ପଚାଶ ବର୍ଷ ପରେ ଆଜିଯାଏ ସୁଦ୍ଧା ଅକ୍ଷୁଣ୍ଣ ରହିଛି । ସେ ବନ୍ଧୁମାନେ ପରବର୍ତ୍ତୀ କାଳରେ ସରକାରୀ କଲେଜମାନଙ୍କର ପ୍ରିନ୍ସିପାଲ, ବିଶ୍ୱବିଦ୍ୟାଳୟମାନଙ୍କର ପ୍ରଫେସର ଏବଂ କେତେକ ବିଶ୍ୱବିଦ୍ୟାଳୟମାନଙ୍କର କୁଳପତି ହୋଇ କାର୍ଯ୍ୟରୁ ଅବସର ଗ୍ରହଣ କରିଛନ୍ତି । ସେଥିମଧ୍ୟରୁ ଅନେକେ ଇହଧାମରୁ ବିଦାୟ ନେଲେଣି । ସ୍ୱର୍ଗତ ଅଧ୍ୟାପକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଅଧ୍ୟାପକ ଦାଶରଥି ମିଶ୍ର, ଓଡ଼ିଆ ଅଧ୍ୟାପକ ସର୍ବେଶ୍ୱର ଦାଶ, ଅଧ୍ୟାପକ ଶୁକଦେବ ମିଶ୍ର, ଫଣିନ୍ଦ୍ର ନାଥ ଚାଟାର୍ଜୀ ଏବଂ ଅଧ୍ୟାପକ ରାଜକିଶୋର ମିଶ୍ର ପ୍ରଭୃତିଙ୍କ ସ୍ମୃତି ଆଜିଯାଏ ମୋ ମନରେ ଜାଗ୍ରତ ଅଛି । ଇଂରାଜୀ ଅଧ୍ୟାପକ ସର୍ବେଶ୍ୱର ଦାସ, ଅଧ୍ୟାପକ ପରେଶ ଚନ୍ଦ୍ର ରାୟ, ଶ୍ୟାମସୁନ୍ଦର ନାଥ, ବଟକୃଷ୍ଣ ମହାନ୍ତି, ସୂର୍ଯ୍ୟକାନ୍ତ ଦାସ, ନାରାୟଣ ମହାପାତ୍ର ପ୍ରଭୃତି ଆଜିଯାଏ ସୁଦ୍ଧା ମୋର ଘନିଷ୍ଠ ବନ୍ଧୁ ଅଛନ୍ତି ।

ବୁଢ଼ାରାଜାରେ ଅଧ୍ୟାପକମାନଙ୍କର ପରିବାରମାନଙ୍କ ମଧ୍ୟରେ ମଧ୍ୟ ଘନିଷ୍ଠ ବନ୍ଧୁତା ଥିଲା । କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ସ୍ତ୍ରୀ ମୋ ସ୍ତ୍ରୀଙ୍କର ସଙ୍ଗାତ ଥିଲେ ଏବଂ ଓଡ଼ିଆ ଅଧ୍ୟାପକ ସର୍ବେଶ୍ୱର ଦାଶଙ୍କ ସ୍ତ୍ରୀ ମୋ ସ୍ତ୍ରୀଙ୍କର ମକର ଥିଲେ । ଅନ୍ୟ ଅଧ୍ୟାପକମାନଙ୍କ ସ୍ତ୍ରୀମାନେ ମୋ ସ୍ତ୍ରୀଙ୍କର ସାନଭଉଣୀ ଥିଲେ । ପରିବାରର ପିଲାମାନେ ମଧ୍ୟ ଭାଇ ଭଉଣୀ ପରି ଚଳୁଥିଲେ ଏବଂ ଖେଳାବୁଲା କରୁଥିଲେ । ମୋ ଜୀବନରେ ମାତ୍ର ଚାରିଗୋଟି ସ୍ଥାନରେ ମୁଁ ଦୀର୍ଘକାଳ ରହିଥିଲି । ପିଲାଦିନେ ପ୍ରାୟ ବାରବର୍ଷ ବୟସ ପର୍ଯ୍ୟନ୍ତ ଆମ ଗାଁରେ ଥିଲି ।

ତା'ପରେ ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରେ ପଢ଼ିଲାବେଳେ ଦୁଇବର୍ଷ କିମ୍ବା ଚାରିବର୍ଷ ରହିଥିଲି । ଚାକିରି କରିବା ସମୟରେ ମୁଁ ସମ୍ବଲପୁର ଠାରେ ବୁଢ଼ାରାଜା ଏବଂ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଘର ମିଶି ଆଠ ବର୍ଷ ରହିଥିଲି । ତା'ପରେ ରେଭେନ୍ସା କଲେଜ ହତାରେ ସାତବର୍ଷ, ବାଣୀବିହାରରେ ଅଠରବର୍ଷ ଏବଂ ଶେଷ ଜୀବନରେ ଭୁବନେଶ୍ୱରର ସହିଦନଗରରେ ମୋ ଘରେ ଆଠ ବର୍ଷ ରହିଛି । ପିଲାଦିନକୁ ଛାଡ଼ିଦେଲେ କୌଣସି ସ୍ଥାନରେ ବୁଢ଼ାରାଜା ଠାରୁ ଅଧିକ ଅନାବିଳ ବନ୍ଧୁତା ଓ ସ୍ନେହ ମମତା ମଧ୍ୟରେ ରହି ନାହିଁ । ଶେଷଂ ଜୀବନ ପର୍ଯ୍ୟନ୍ତ ବୁଢ଼ାରାଜାର ସ୍ମୃତି ମୋ ମନରେ ଅଭୁଲା ହୋଇ ରହିଛି । ସେ ଖେଳ, ଗପସପ, ଥଟ୍ଟାମଜା ଓ ବଣଭୋଜି ଭୁଲିବାର ନୁହେଁ ।

୧୯୫୨ ମସିହା ବେଳକୁ ସମ୍ବଲପୁର କଲେଜରେ ଉପରୋକ୍ତ ରୀତିରେ ମୁଁ ଆଠବର୍ଷ ରହିଲିଣି । ସେଥିମଧ୍ୟରେ କଟକର ମୋର ଅନେକ ବନ୍ଧୁ ଚେଷ୍ଟାକରି କଟକ ରେଭେନ୍ସା କଲେଜକୁ ବଦଳି ହୋଇ ଆସିବାକୁ ମୋତେ ପରାମର୍ଶ ଦେଉଥିଲେ । ମାତ୍ର ମୁଁ ସମ୍ବଲପୁରର ସାଙ୍ଗସାଥିଙ୍କୁ ଛାଡ଼ି ଆସିବାକୁ ରାଜି ନ ଥିଲି । ସେଠାରୁ ଅନ୍ୟ କୌଣସି କଲେଜକୁ ଯିବାର ପ୍ରଶ୍ନ ନ ଥିଲା । ବଦଳି ହେଲେ କେବଳ ରେଭେନ୍ସା କଲେଜକୁ ଆସିବାକୁ ଇଚ୍ଛା ଥିଲା । ୧୯୫୨ ମସିହା ଗ୍ରୀଷ୍ମଛୁଟିରେ ମୁଁ ସେଥିପାଇଁ ଚେଷ୍ଟା କଲି । ମୋର ବନ୍ଧୁ ନୀଳମଣି ରାଉତରାୟ ସେତେବେଳେ ମହତାବ ମନ୍ତ୍ରିମଣ୍ଡଳରେ ଡେପୁଟି ମିନିଷ୍ଟର ଥିଲେ । ଶ୍ରୀଯୁକ୍ତ ମହେଶ ପ୍ରଧାନ ଡି.ପି.ଆଇ. ଥିଲେ । ମୁଁ ସେମାନଙ୍କୁ ଭେଟି ମୋତେ ରେଭେନ୍ସା କଲେଜକୁ ବଦଳି କରିବାକୁ ଅନୁରୋଧ କରିଥିଲି । ନୀଳମଣିବାବୁ ସେ ବିଷୟରେ ମହେଶବାବୁଙ୍କୁ କହିଥିଲେ ଏବଂ ମହେଶବାବୁ ପରବର୍ତ୍ତୀ ଶିକ୍ଷା ବର୍ଷରେ ମୋତେ ରେଭେନ୍ସା କଲେଜକୁ ବଦଳି କରିବାକୁ ରାଜି ହୋଇଥିଲେ । ମୋର ବଦଳି ନିମିତ୍ତ ବଳିଷ୍ଠ ଯୁକ୍ତି ଥିଲା ଯେ ମୁଁ ଗୋଟିଏ କଲେଜରେ ଆଠବର୍ଷ ରହିଥିଲି ଏବଂ ମୋର କାର୍ଯ୍ୟ ସେ ସ୍ଥାନରେ ସନ୍ତୋଷଜନକ ଥିଲା । ମାତ୍ର ପରବର୍ତ୍ତୀ ଶିକ୍ଷାବର୍ଷ ଆରମ୍ଭରେ ମହେଶବାବୁ ମୋତେ ବଦଳି କରି ନ ଥିଲେ । ପୂଜା ଛୁଟି ପୂର୍ବରୁ ମହେଶବାବୁ ଅବସର ଗ୍ରହଣ କରିଥିଲେ । ତାଙ୍କ ସ୍ଥାନରେ ପ୍ରଫେସର ବଳଭଦ୍ର ପ୍ରସାଦ ଡି.ପି.ଆଇ. ହୋଇଥିଲେ । ସେ ମୋ ବଦଳି ପାଇଁ ଦରଖାସ୍ତ ତ୍ୱରାନ୍ୱିତ କଲେ ଏବଂ ମୁଁ ୧୯୫୨ ମସିହା ପୂଜା ଛୁଟି ପରେ ରେଭେନ୍ସା କଲେଜକୁ ବଦଳି ହେଲି । ଦୀର୍ଘ ଆଠ ବର୍ଷ ପରେ ମୁଁ ସମ୍ବଲପୁର କଲେଜର ଛାତ୍ରଛାତ୍ରୀ ଓ ଅଧ୍ୟାପକମାନଙ୍କଠାରୁ ବିଦାୟ ନେଲି । ବିଦାୟ ସଭା ମାନଙ୍କରେ ଅଧ୍ୟକ୍ଷ ମାୟାଧର ମାନସିଂହ ସଭାପତି ହୋଇଥିଲେ ଏବଂ ସ୍ୱଭାବତଃ ସେମାନେ ମୋର ପ୍ରଶଂସା କରିଥିଲେ । ମୋର ମନେଅଛି ଯେ ସେ ସମୟରେ ସେ କଲେଜର ଛାତ୍ର ଓ ଅଧ୍ୟାପକମାନଙ୍କ ପ୍ରତି ମୋ ମନରେ କୌଣସି ତିକ୍ତଭାବ ନ ଥିଲା । ମୁଁ ଗଙ୍ଗାଧର ମେହେରଙ୍କର 'ବିଶ୍ୱ ଦେଖ ମଧୁମୟ' କବିତା ଗୁଣୁ ଗୁଣୁ ହୋଇ ବୋଲୁଥିଲି ।

ତାହାପରେ ମୁଁ ସମ୍ବଲପୁର କଲେଜକୁ ଦୁଇ ତିନିଥର ଯାଇଛି । ୧୯୫୭ ମସିହାରେ ମୋର ବନ୍ଧୁ ବ୍ରଜବନ୍ଧୁ ମିଶ୍ର ସେ କଲେଜର ପ୍ରିନ୍ସିପାଲ ଥିବାବେଳେ ମୁଁ ସେ କଲେଜରେ

ଦୁଇଗୋଟି ଏକ୍ସଟେନ୍‌ସନ ବକ୍ତୃତା ଦେଇଥିଲି । ଆମ ସମୟରେ କଲେଜ ଛୋଟ ଥିଲା ଏବଂ ପିଲାସଂଖ୍ୟା ପାଞ୍ଚ ସାତଶହରୁ ବେଶି ନ ଥିଲା । ବର୍ତ୍ତମାନ ସେ କଲେଜ ଗୋଟିଏ ସ୍ୱୟଂଶାସିତ ବୃହତ୍ କଲେଜ ହୋଇଛି । ପିଲାସଂଖ୍ୟା ପାଞ୍ଚ ଛଅହଜାର ହୋଇଛି । କଲେଜରେ ବିଜ୍ଞାନ, କଳା, ବାଣିଜ୍ୟର ବହୁ ବିଷୟରେ ସ୍ନାତକୋତ୍ତର ଡିଗ୍ରୀମାନଙ୍କ ପାଇଁ ପଢ଼ା ହେଉଛି । କଲେଜରେ ବହୁ ଶ୍ରେଣୀଗୃହ, ଛାତ୍ରାବାସ ଏବଂ ଅଧ୍ୟାପକମାନଙ୍କର ବାସଗୃହ ନିର୍ମିତ ହୋଇଛି । ବୁଢ଼ାରାଜାର ସେ ପୁରୁଣା ଅସ୍ଥାୟୀ ଘର ସବୁ ଭଙ୍ଗା ହୋଇ ଟ୍ରଷ୍ଟ ଫଣ୍ଡ ତରଫରୁ ଅଧ୍ୟାପକମାନଙ୍କ ପାଇଁ ନୂତନ ପକ୍କା ବାସଗୃହ ହୋଇଛି ଏବଂ ସେଥିରେ ଆବଶ୍ୟକ ବିଜୁଳି ଓ ପାଣି ଯୋଗାଣ ହୋଇଛି । ସମ୍ବଲପୁର ସହରର ମଧ୍ୟ ରୂପ ବଦଳି ଯାଇଛି । ୧୯୪୮ ମସିହାରେ ଆମେ ସେ କଲେଜରେ ଥିବାବେଳେ ପଣ୍ଡିତ ନେହେରୁ ହୀରାକୁଦ ବନ୍ଧ ପାଇଁ ଶୁଭଦାନ ଦେଇଥିଲେ । ସେତେବେଳେ ଚାନ୍ଦୁଲାଲ ତ୍ରିବେଦୀ ଓଡ଼ିଶାର ଗଭର୍ଣ୍ଣର ଥିଲେ । ସେଦିନ ସେ ସର୍କିଟ ହାଉସରେ ଅବସ୍ଥାନ କରୁଥିବାବେଳେ ହୀରାକୁଦ ବନ୍ଧ ଯୋଗୁଁ ପାଣିରେ ବୁଡ଼ି ଯାଉଥିବା ଅଞ୍ଚଳମାନଙ୍କରୁ ପ୍ରାୟ ପନ୍ଦର କୋଡ଼ିଏ ହଜାର ଲୋକ ସମ୍ବଲପୁର ସହର ପରିକ୍ରମା କରି ବନ୍ଧ ନିର୍ମାଣର ପ୍ରତିବାଦ କରିଥିଲେ । ଆମେ ଥିବାବେଳେ ଆମ ବନ୍ଧୁ ଇଞ୍ଜିନିଅରମାନେ ବନ୍ଧ ନିର୍ମାଣ କାର୍ଯ୍ୟରେ ରତ ଥିଲେ । ବନ୍ଧ ନିର୍ମାଣ ପ୍ରାୟ ଚାଳିଶ ବର୍ଷ ହେଲା ଶେଷ ହେଲାଣି । ସମ୍ବଲପୁର ଜିଲ୍ଲାର ଉର୍ବର ବରଗଡ଼ ଅଞ୍ଚଳ ଜଳସେଚନର ସୁବିଧା ପାଇ ଧାନ,ଆଖୁଠାରୁ ଆରମ୍ଭ କରି ବହୁପ୍ରକାର ପନିପରିବା ଉତ୍ପାଦନ କରୁଛି । ସମ୍ବଲପୁର ଓ ବୁର୍ଲା ମଧ୍ୟରେ ମହାନଦୀରେ ପୋଲ ହୋଇଛି । ବୁର୍ଲାରେ ମେଡ଼ିକାଲ ଓ ଇଞ୍ଜିନିଅରିଂ ଏବଂ କୃଷି ପ୍ରଭୃତି ବିଷୟରେ ବଡ଼ ବଡ଼ କଲେଜ ହୋଇଛି । ସମ୍ବଲପୁର ଠାରେ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଛି । ସମ୍ବଲପୁର ଠାରୁ ଟିଟିଲାଗଡ଼ ଦେଇ ବିଜୟନଗର ପର୍ଯ୍ୟନ୍ତ ରେଲ ଲାଇନ୍ ହୋଇଛି । ସମ୍ବଲପୁର ସହରରେ ବହୁ ହୋଟେଲ, ଅନୁଷ୍ଠାନ ଏବଂ ବ୍ୟକ୍ତିବିଶେଷଙ୍କର ବହୁ କୋଠାବାଡ଼ି ହୋଇଛି । ଆମ ସମୟଠାରୁ ସହର ଖୁବ୍ ବଡ଼ ହୋଇଯାଇଛି । ମାତ୍ର ପଇଁଚାଳିଶ ବର୍ଷ ପୂର୍ବେ ମୁଁ ସେ କଲେଜରୁ ବିଦାୟ ନେଇ ଆସିଲା ପରେ ଆଉ ସେ କଲେଜକୁ ଚାକିରି କରିବାକୁ ଯାଇ ନାହିଁ ।

# ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ

୧୯୫୨ ମସିହାର ଅକ୍ଟୋବର ମାସରେ ପୂଜା ଛୁଟି ପରେ ଗଙ୍ଗାଧର ମେହେର କଲେଜରୁ ବିଦାୟ ନେଇଆସି ରେଭେନ୍ସା କଲେଜରେ ଯୋଗ ଦେଲି । କଟକରେ ରହିବା ପାଇଁ ମୋର ବନ୍ଧୁ ବ୍ରଜବନ୍ଧୁ ମିଶ୍ର ନୂଆବଜାରରେ ଗିରିଧାରୀ ସାହୁଙ୍କ ଭଡ଼ାଘରମାନଙ୍କରୁ ଆମ ପାଇଁ ଗୋଟିଏ ଘର ସ୍ଥିର କରି ଦେଇଥିଲେ । ଗିରିଧାରୀ ସାହୁ ଭଡ଼ାଦେବା ଉଦ୍ଦେଶ୍ୟରେ ନୂଆବଜାରରେ ଧାଡ଼ି ଧାଡ଼ି କରି ଦୁଇ ଏବଂ ତିନି କୋଠରି ବିଶିଷ୍ଟ ଅନେକ ଘର ତିଆରି କରିଥିଲେ । ସେ ଘର ସବୁ ଆଜିଯାଏ ଅଛି । ସେ ଘରଗୁଡ଼ିକର ଆଗରେ କିମ୍ବା ପଛରେ କିଛି ଜାଗା ନ ଥାଏ । ମୁହାଁମୁହିଁ ଭାବରେ ଦୁଇଧାଡ଼ି ଘର ମଧ୍ୟରେ ବ୍ୟବଧାନ ପ୍ରାୟ ଦଶ ଫୁଟ ଥାଏ । ରେଭେନ୍ସା କଲେଜ ପାଖ ହୋଇଥିବାରୁ ସେଥିରେ କେତେକ ଅଧ୍ୟାପକ ରହୁଥିଲେ । ରେଭେନ୍ସା କଲେଜରେ ଚାକିରି କରିବା ମୋର ତାହା ଥିଲା ପ୍ରଥମ । ଡକ୍ଟର ଗୋଲୋକ ବିହାରୀ ବାନାର୍ଜୀ ସେତେବେଳେ ରେଭେନ୍ସା କଲେଜର ପ୍ରିନ୍ସିପାଲ ଥିଲେ । ସେ ସମ୍ବଲପୁର କଲେଜରୁ ମୋତେ ଜାଣିଥିଲେ ଏବଂ ମୋତେ ଭଲ ପାଉଥିଲେ ।

ମାତ୍ର ସେ କଲେଜରେ ଯୋଗ ଦେବାର କେବଳ ମାସକ ପରେ ମୁଁ ଭାରତ ସରକାରଙ୍କ ଠାରୁ ଲଣ୍ଡନରେ ପଢ଼ିବାପାଇଁ ଗୋଟିଏ ସ୍କଲାରସିପ୍ ମିଳିବାର ଚିଠି ପାଇଲି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଇଂଲାଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା ଏବଂ ଅଷ୍ଟ୍ରେଲିଆ ପ୍ରଭୃତି ଦେଶରେ ପଢ଼ିବା ପାଇଁ ଭାରତ ସରକାର ଏବଂ ବିଭିନ୍ନ ବିଦେଶୀ ସରକାରମାନେ ଅନେକ ପ୍ରକାର ଯୋଜନାରେ ଭାରତୀୟ ଲୋକମାନଙ୍କୁ ବହୁ ସ୍କଲାରସିପ୍ ଦେଉଥାନ୍ତି । ୧୯୪୬ ମସିହାଠାରୁ ମୁଁ ବିଭିନ୍ନ ସ୍କଲାରସିପ୍‌ମାନଙ୍କ ପାଇଁ ଦରଖାସ୍ତ କରିଥିଲି । ମାତ୍ର ସେତେବେଳଯାଏ କୌଣସି ସ୍କଲାରସିପ୍ ପାଇପାରି ନ ଥିଲି । ରେଭେନ୍ସା କଲେଜରେ ଯୋଗ ଦେବା ପରେ ପ୍ରାୟ ମାସକ ପରେ ଚିଠି ପାଇଲି ଯେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ପଢ଼ିବାପାଇଁ ଭାରତ ସରକାର ମୋତେ ମଡ଼ିଫାଏଡ୍ ଓଭରସିଜ୍ ସ୍କଲାରସିପ୍ ଯୋଜନାରେ ଗୋଟିଏ ସ୍କଲାରସିପ୍ ଦେବାକୁ ସ୍ଥିର କରିଛନ୍ତି । ସେ ସ୍କଲାରସିପ୍ ପାଇ ୧୯୫୩ ମସିହା ଜାନୁଆରୀ ମାସ ପନ୍ଦର ତାରିଖ ପୂର୍ବରୁ ସେଠାରେ ଯୋଗ ଦେବାକୁ ମୋତେ ନିର୍ଦ୍ଦେଶ ଦିଆଯାଇଥିଲା । ପରେ ପରେ ଦିଲ୍ଲୀର ଗୋଟିଏ ଟ୍ରାଭେଲ ଏଜେନ୍ସି ଠାରୁ ଲଣ୍ଡନ ଯିବାପାଇଁ ଜାହାଜ ଓ ରେଳ ଟିକେଟ ମଧ୍ୟ ଆସିଲା ।

ତାହା ପୂର୍ବରୁ ଭାରତ ସରକାର ବିଦେଶରେ ଶିକ୍ଷାପାଇଁ ପ୍ରାର୍ଥୀମାନଙ୍କୁ ସ୍କଲାରସିପ୍‌ର ପୂର୍ଣ୍ଣ ପରିମାଣ ଦେଉଥିଲେ । ମାତ୍ର ପରେ ଭାରତ ସରକାର ନିୟମ ବଦଳାଇ ଦେଇ

ସ୍କଲାରସିପ୍ ସଂଖ୍ୟା ବଢ଼ାଇଦେଲେ ଏବଂ ନିୟମ କଲେ ଯେ ସେପରି ସ୍କଲାରସିପ୍‌ର ଅଧେ ଅଂଶ ଭାରତ ସରକାର ବହନ କରିବେ ଏବଂ ଅନ୍ୟ ଅଧା ଅଂଶ ପ୍ରାର୍ଥୀମାନଙ୍କର ଦରଖାସ୍ତ ପଠାଇଥିବା ଅନୁଷ୍ଠାନମାନ ବହନ କରିବେ । ମୋର ଦରଖାସ୍ତ ଉତ୍କଳ ବିଶ୍ୱବିଦ୍ୟାଳୟ ପଠାଇଥିଲେ ଏବଂ ନିୟମ ଅନୁସାରେ ବିଶ୍ୱବିଦ୍ୟାଳୟ ସ୍କଲାରସିପ୍‌ର ଅର୍ଦ୍ଧାଂଶ ଦେବାର କଥା । ସେତେବେଳେ ଡକ୍ଟର ପରଶୁରାମ ମିଶ୍ର ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ମୋର ସ୍କଲାରସିପ୍ ପାଇବା ଚିଠି ବିଶ୍ୱବିଦ୍ୟାଳୟ ପାଇ ମୋତେ ଜଣାଇଦେଲେ ଯେ ବିଶ୍ୱବିଦ୍ୟାଳୟର ସମ୍ବଳ ଅଭାବରୁ ସ୍କଲାରସିପ୍‌ର ଅର୍ଦ୍ଧାଂଶ ବିଶ୍ୱବିଦ୍ୟାଳୟ ଦେଇପାରିବ ନାହିଁ । ପ୍ରାର୍ଥୀ ଇଚ୍ଛା କଲେ ନିଜ ହାତରୁ କିମ୍ବା ରାଜ୍ୟ ସରକାରଙ୍କ ଠାରୁ ଧାର ନେଇ ସ୍କଲାରସିପର ଅର୍ଦ୍ଧାଂଶ ଭାରତ ସରକାରଙ୍କ ପାଖରେ ଜମା କରି ସ୍କଲାରସିପ୍ ସୁବିଧା ଉପଭୋଗ କରିପାରନ୍ତି । ଏ କଥା ଜାଣି ମୁଁ ବିଶେଷ ବ୍ୟସ୍ତ ହେଲି । ସେତେବେଳେ ଦୁଇ ବର୍ଷ ପାଇଁ ସ୍କଲାରସିପ୍‌ର ପରିମାଣ ବାରହଜାର ଟଙ୍କା ଥିଲା । ସେଥିପାଇଁ ଯିବା ପୂର୍ବରୁ ମୋତେ ଛଅହଜାର ଟଙ୍କା ଭାରତ ସରକାରଙ୍କ ଠାରେ ଜମା ଦେବାକୁ ହେବ । ଜମା ନ କରିପାରିଲେ ସ୍କଲାରସିପ୍ ମିଳିବ, ନାହିଁ । ସେତେବେଳେ ମୋର ମାସିକ ଦରମା ଦୁଇଶହରୁ କମ୍ ଥିଲା । ଦରମା ମାସକର ଖର୍ଚ୍ଚକୁ ଅଣ୍ଟେ ନାହିଁ । ମୋର ସଞ୍ଚୟ କିଛି ନ ଥିଲା । ଅନ୍ୟ ଦିଗରେ ଟଙ୍କା ଜମା ନ ଦେଲେ ଜୀବନରେ ସେ ସ୍କଲାରସିପ୍‌ର ସୁଯୋଗ ହରାଇବାକୁ ପଡ଼ିବ । ସେଥିଯୋଗୁଁ ସେହି ଅଳ୍ପ ସମୟରେ ରାଜ୍ୟ ସରକାରଙ୍କ ସମ୍ପର୍କୀୟ ଅଫିସ ଏବଂ ବିଶ୍ୱବିଦ୍ୟାଳୟକୁ ଧାର ଦେବା ପାଇଁ ଦରଖାସ୍ତ କରି ଦଉଡ଼ଧାପଡ଼ କଲି । ଶେଷରେ ବହୁ କଷ୍ଟରେ ବିଶ୍ୱବିଦ୍ୟାଳୟଠାରୁ ବାରଶହ ଟଙ୍କା, ରାଜ୍ୟ ସରକାରଙ୍କ ଠାରୁ ଚାରିହଜାର ଟଙ୍କା ଧାର ସହିତ ମୋ ହାତରୁ ଆଠଶହ ଟଙ୍କା ମିଶାଇ ଛଅ ହଜାର ଟଙ୍କା ଭାରତ ସରକାରଙ୍କ ଠାରେ ଜମା କଲି ଏବଂ ଡିସେମ୍ବର ମାସ ତେର ତାରିଖରେ କଟକରୁ ଲଣ୍ଡନ ଅଭିମୁଖେ ଯାତ୍ରା କଲି । କଟକରୁ ମୋର ବମ୍ବେ ଯାତ୍ରା, ଇଂଲଣ୍ଡରେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ନାମ ଲେଖା, ସେ ସ୍କୁଲରେ ଅଧ୍ୟୟନ ଓ ଅଧ୍ୟାପନାର ସୁବିଧା, ଲାଇବ୍ରେରୀ, ଅଧ୍ୟାପନା ପ୍ରଣାଳୀ, ଲଣ୍ଡନ ସହରରେ ଲାଣ୍ଡଲେଡି ପ୍ରଥା, ଇଂଲଣ୍ଡର ଲୋକମାନଙ୍କର ଆର୍ଥନୀତିକ, ସାମାଜିକ ଓ ରାଜନୈତିକ ଜୀବନ ପ୍ରଭୃତି ବିଷୟ ମୋର ପୂର୍ବରୁ ପ୍ରକାଶିତ 'ବିକଶିତ ପାଶ୍ଚାତ୍ୟ ଜଗତ' ପୁସ୍ତକରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ଏଠାରେ ସେଗୁଡ଼ିକର ପୁନରାବୃତ୍ତି କରିବା ଆବଶ୍ୟକ ମନେ କରୁ ନାହିଁ । କେବଳ ସେଠାରେ ମୋର ପଢ଼ା ଏବଂ ଅଧ୍ୟାପକମାନଙ୍କ ବିଷୟ ସଂକ୍ଷେପରେ ବର୍ଣ୍ଣନା କରୁଛି ।

୧୯୫୨ ମସିହା ଡିସେମ୍ବର ମାସରେ ବାର ତେର ତାରିଖରେ କଟକରୁ ବାହାରି ଖଡ଼ଗପୁର ଠାରୁ ବମ୍ବେ ମେଲରେ ବମ୍ବେ ଗଲି । ସେଠାରେ ଆମ ଗାଁ ପାଖ ଲୋକ ଜଗନ୍ନାଥ ମହାନ୍ତି ଚଲାଉଥିବା ସିପ୍ ହୋଟେଲରେ ଦିନେ ଖଣ୍ଡେ ରହି ସତର ତାରିଖରେ ପୋଲାଣ୍ଡ ଦେଶର ବାଟୋରୀ ନାମକ ଜାହାଜରେ ଇଂଲଣ୍ଡର ସାଉଦମ୍ପଟନ ବନ୍ଦର

ଅଭିମୁଖେ ଯାତ୍ରା କଲି । ଜାହାଜ ବାଟରେ କରାଚୀ, ଆଡ଼େନ୍, ସୁଏଜ୍, ପୋର୍ଟସୟଦ, ଜିବ୍ରାଲ୍‌ଟର ପ୍ରଭୃତି ବନ୍ଦରମାନଙ୍କରେ ରହି ଏକୋଇଶ ଦିନ ପରେ ସାଉଦମ୍ପ୍‌ଟନରେ ପହଞ୍ଚିଲି । ସେଠାରୁ ରେଲରେ ଯାଇ ଲଣ୍ଡନର ଭିକ୍ଟୋରିଆ ଷ୍ଟେସନରେ ୧୯୫୩ ମସିହା ଜାନୁଆରୀ ସାତ ତାରିଖରେ ପହଞ୍ଚିଲି ।

ଲଣ୍ଡନସ୍ଥିତ ଭାରତୀୟ ଦୂତାବାସ ପକ୍ଷରୁ ଭାରତୀୟ ଛାତ୍ରମାନଙ୍କପାଇଁ ଲଣ୍ଡନ ବିଶ୍ୱବିଦ୍ୟାଳୟ ନିକଟସ୍ଥ ଗିଲଫୋର୍ଡ଼ ଷ୍ଟ୍ରିଟରେ ଗୋଟିଏ ଛୋଟ ଛାତ୍ରାବାସ ପରିଚାଳିତ ହେଉଥାଏ । ସେଠାରେ ମାତ୍ର ଅଳ୍ପସଂଖ୍ୟକ ଛାତ୍ରଙ୍କ ନିମିତ୍ତ ସ୍ଥାନ ଥାଏ । ଲଣ୍ଡନ ସହରରେ କଲେଜ ଛାତ୍ରମାନେ ସାଧାରଣତଃ ଘରୋଇ ଲାଣ୍ଡଲେଡିମାନଙ୍କ ଘରେ ରହି ପାଠ ପଢ଼ନ୍ତି । ଭାରତରୁ ଆସୁଥିବା ନୂତନ ଛାତ୍ରମାନେ ଅସ୍ଥାୟୀ ଭାବରେ ସେହି ଗିଲ୍‌ଫୋର୍ଡ଼ ଷ୍ଟ୍ରିଟ୍ ଛାତ୍ରାବାସରେ ଚାରି ଛଅ ଦିନ ରହି ନିଜ ଉଦ୍ୟମରେ ଲାଣ୍ଡଲେଡି ଖୋଜି ସେଠାରେ ରହନ୍ତି । ମୁଁ ଗିଲ୍‌ଫୋର୍ଡ଼ ଷ୍ଟ୍ରିଟ୍ ହଷ୍ଟେଲରେ ମାତ୍ର ଛଅ ସାତ ଦିନ ଥିଲି । ଲଣ୍ଡନରେ ପହଞ୍ଚିବାର ଦ୍ୱିତୀୟ ଦିନ ଲଣ୍ଡନ ସ୍କୁଲ୍ ଅଫ୍ ଇକନମିକ୍ସରେ ନାମ ଲେଖାଇଥିଲି । ରହିବାପାଇଁ ଲାଣ୍ଡଲେଡି ଘର ବହୁତ ଖୋଜି ପ୍ରଥମେ ଆର୍ଚ୍ଚୱେ ଅଞ୍ଚଳରେ ଜଣେ ଇଂରେଜ ପରିବାରରେ ଦୁଇ ସପ୍ତାହ ଏବଂ ହାମ୍ପଷ୍ଟେଡ଼୍ ହିଥ୍ ପାଖରେ ଜଣେ ଭାରତୀୟ ଲାଣ୍ଡଲର୍ଡ଼ଙ୍କ ମେସ୍‌ରେ ପ୍ରାୟ ଦୁଇମାସ ରହିବା ପରେ ସେହି ହାମ୍ପଷ୍ଟେଡ଼୍ ଅଞ୍ଚଳରେ ଚକ୍ ଫାର୍ମ ଭୂଇଁତଳ ରେଳଷ୍ଟେସନ ପାଖରେ ଚାଲକର୍ଟ ଗାର୍ଡ଼ନ ଠାରେ ମିସେସ୍ ଲାଫୋରକେଡ୍ ନାମରେ ଜଣେ ଲାଣ୍ଡଲେଡିଙ୍କ ଘରେ ଦୁଇବର୍ଷରୁ କେତେ ମାସ ରହି ଲଣ୍ଡନ ସ୍କୁଲ ଅଫ ଇକନମିକ୍ସରେ ଗବେଷଣା କରିଥିଲି । ମିସେସ୍ ଲାଫରକେଡ୍‌ଙ୍କ ଘରେ ରହିବା ପ୍ରଣାଳୀ ଏବଂ ସେଥିରେ ସୁବିଧା ଓ ଅସୁବିଧା ଉପରୋକ୍ତ ବହିରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି ।

୧୮୮୫ ମସିହାରେ ବ୍ରିଟିଶ୍ ଦମ୍ପତି ସିଡ୍‌ନି ଏବଂ ବିୟାଟ୍ରିସ୍ ୱେବ୍‌ଙ୍କ ଦ୍ୱାରା ସ୍ଥାପିତ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ ଅର୍ଥନୀତି ଏବଂ ସମାଜବିଜ୍ଞାନ ବିଷୟରେ ଶିକ୍ଷାଦାନ ଏବଂ ଗବେଷଣା କରିବା ବିଷୟରେ ପୃଥିବୀରେ ବିଶେଷ ଖ୍ୟାତି ଅର୍ଜନ କରିଛି । ଏହାର ଆନ୍ତର୍ଜାତିକ ଖ୍ୟାତି ହେତୁ ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ଅଷ୍ଟ୍ରେଲିଆ, ଭାରତ, ପାକିସ୍ଥାନ ଓ ଦକ୍ଷିଣପୂର୍ବ ଏସିଆର ବହୁଦେଶ ଏବଂ ଆଫ୍ରିକା ଓ ମଧ୍ୟ ପ୍ରାଚ୍ୟ ଦେଶମାନଙ୍କରୁ ଛାତ୍ରମାନେ ଏଥିରେ ସ୍ନାତକ ଏବଂ ସ୍ନାତକୋତ୍ତର ଶିକ୍ଷା ଓ ଗବେଷଣା ପାଇଁ ପ୍ରତିବର୍ଷ ନାମ ଲେଖାନ୍ତି ଏବଂ ସମୟକ୍ରମେ ଏଥିରେ ହାରଲ୍ଡ ଲାସ୍କି, ଉଇଲିଅମ୍ ବେଭରିଜ୍, ଭନ୍ ହାଏକ ଏବଂ ହ୍ୟୁ ଡଲଟନ ପ୍ରଭୃତି ବିଶ୍ୱବିଖ୍ୟାତ ଅଧ୍ୟାପକମାନେ ଅଧ୍ୟାପନା କରିଛନ୍ତି । ଅଧ୍ୟାପକମାନଙ୍କ ଖ୍ୟାତି ଯୋଗୁଁ ବହୁଦେଶରୁ ଛାତ୍ରମାନେ ଆସି ସେଠାରେ ଅଧ୍ୟୟନ ଏବଂ ଗବେଷଣା ପାଇଁ ନାମ ଲେଖାନ୍ତି । ସ୍କୁଲର ଲାଇବ୍ରେରୀ ଖୁବ୍ ବଡ଼ ଏବଂ ଅର୍ଥନୀତି ବିଷୟମାନଙ୍କରେ ଗବେଷଣା କରିବାକୁ ବହୁତ ସୁବିଧା ଅଛି । ସେଠାରେ ନାମ ଲେଖାଇବା ସୁବିଧା ସହଜରେ ମିଳେ ନାହିଁ । ମୋ ସମୟରେ ସେଥିରେ

ପୃଥିବୀର ବିଭିନ୍ନ ଦେଶରୁ ପ୍ରାୟ ତିନିହଜାର ପିଲା ଥିଲେ ଏବଂ ସ୍କୁଲ ଲାଇବ୍ରେରୀରେ ଅର୍ଥନୀତି ଓ ସମାଜବିଜ୍ଞାନ ପ୍ରଭୃତି ବିଷୟରେ ପ୍ରାୟ ଚାଳିଶ ଲକ୍ଷ ବହି ଥିଲା । ବର୍ତ୍ତମାନ ସେ ସ୍କୁଲରେ ଚାରିହଜାର ସ୍ନାତକ ଏବଂ ଦୁଇହଜାର ସ୍ନାତକୋତ୍ତର ଛାତ୍ରଙ୍କ ସମେତ ମୋଟ ଛଅହଜାରରୁ ଅଧିକ ଛାତ୍ର ଅଧ୍ୟୟନ କରୁଛନ୍ତି । ସ୍କୁଲ ଲାଇବ୍ରେରୀରେ ବହି ସଂଖ୍ୟା ବହୁ ପରିମାଣରେ ବଢ଼ିଯାଇଛି । ସ୍କୁଲର ବର୍ତ୍ତମାନର ବାର୍ଷିକ ଖର୍ଚ୍ଚ ବଜେଟ ୩୭୫ କୋଟି ଟଙ୍କା ଏବଂ ସେଥିରେ ବାରଶହରୁ ଅଧିକ ଅଧ୍ୟାପକ ଏବଂ ଅଣଶିକ୍ଷକ କର୍ମଚାରୀ ଅଛନ୍ତି । ବର୍ତ୍ତମାନ ସେ ସ୍କୁଲ, ସ୍କୁଲ ବାହାରେ ମାଲୟେସିଆ, ମସ୍କୋ, ଭାରତବର୍ଷ ପ୍ରଭୃତିରେ ବିଭିନ୍ନ ବିଷୟରେ ସେମିନାର ଏବଂ ପାଠ୍ୟ କୋର୍ସ ପ୍ରଦାନ କରୁଛି । ଏହି ବିଶ୍ୱବିଖ୍ୟାତ ଅନୁଷ୍ଠାନରେ ନାମ ଲେଖାଇବା ସୁବିଧା ସହଜରେ ମିଳେ ନାହିଁ । ବିଦେଶୀ ଛାତ୍ରମାନଙ୍କର ପୂର୍ବ ଡିଗ୍ରୀ ଏବଂ ପ୍ରକାଶିତ ଗବେଷଣାପତ୍ର ବିଚାର କରି ସେଠାରେ ପୋଷ୍ଟଗ୍ରାଜୁଏଟ୍ ଡିଗ୍ରୀ ପାଇଁ ନାମ ଲେଖାଇବା ସୁବିଧା ଦିଆଯାଇଥାଏ । ଆମ ଓଡ଼ିଶାରୁ ପ୍ରଥମେ ଡକ୍ଟର ସଦାଶିବ ମିଶ୍ର ସେଠାରେ ପଢ଼ିବା ସୁବିଧା ଲାଭ କରି ପିଏଚ.ଡି. ଡିଗ୍ରୀ ପାଇଥିଲେ । ତାଙ୍କ ପରେ ମୁଁ ସେଠାରେ ପିଏଚ.ଡି. ଡିଗ୍ରୀ ପାଇଁ ପଢ଼ିବାକୁ ସୁବିଧା ପାଇଥିଲି । ଓଡ଼ିଶାର ପୂର୍ବସୂରୀ ପରିଜା ଓ ତ୍ରିପାଠୀ ପୂର୍ବେ କାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପଢୁଥିଲେ । ଇଂଲଣ୍ଡରେ ଚାରିଗୋଟି ବିଶ୍ୱବିଦ୍ୟାଳୟ ଅକ୍ସଫୋର୍ଡ଼, କାମ୍ବ୍ରିଜ, ଲଣ୍ଡନ ଓ ଏଡ଼ିନ୍‌ବରା ପୃଥିବୀରେ ବିଖ୍ୟାତ ।

ଭାରତ ସରକାର ବିଦେଶରେ ଶିକ୍ଷାପାଇଁ ବିଭିନ୍ନ ପ୍ରାର୍ଥୀମାନଙ୍କୁ ସ୍କଲାରସିପ୍ ପ୍ରଦାନ କରିବା ପୂର୍ବରୁ ଇଂଲଣ୍ଡ, ଆମେରିକା ଓ କାନାଡ଼ା ପ୍ରଭୃତି ଦେଶମାନଙ୍କର ଖ୍ୟାତନାମା ବିଶ୍ୱବିଦ୍ୟାଳୟମାନଙ୍କରେ ସେମାନଙ୍କର ନାମ ଲେଖାଇବା ସୁବିଧା ପାଇଁ ଲେଖାଲେଖି କରନ୍ତି । ପ୍ରାର୍ଥୀଙ୍କ ଯୋଗ୍ୟତା ଅନୁସାରେ ସେ ବିଶ୍ୱବିଦ୍ୟାଳୟମାନଙ୍କରେ ନାମ ଲେଖାଇବା ସୁବିଧା ମିଳିଲେ ସ୍କଲାରସିପ୍ ପ୍ରଦାନ କରନ୍ତି । ସୁତରାଂ ମୋତେ ସ୍କଲାରସିପ୍ ଦେବା ପୂର୍ବରୁ ଭାରତ ସରକାର ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ପୋଷ୍ଟଗ୍ରାଜୁଏଟ୍ କ୍ଲାସରେ ନାମ ଲେଖାଇବା ସୁବିଧା କରିଥିଲେ ।

ମୁଁ ଦେଖିଲି ଯେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ ମୋତେ ସିଧାସଳଖ ପିଏଚ.ଡି. କୋର୍ସରେ ନାମ ଲେଖାଇବା ସୁବିଧା ନ ଦେଇ ଏମ୍.ଏସ୍‌ସି. କୋର୍ସରେ ନାମ ଲେଖାଇବାକୁ ଅନୁମତି ଦେଇଥିଲେ । ଅର୍ଥନୀତିରେ ଏମ୍.ଏସ୍‌ସି. ଡିଗ୍ରୀ ପାଇଁ ଛାତ୍ରମାନେ ଦୁଇପ୍ରକାର କୋର୍ସରେ ପଢ଼ନ୍ତି । ଛାତ୍ରମାନେ ଇଚ୍ଛାକଲେ କୌଣସି ଥିସିସ୍ ନ ଦେଇ ଦୁଇବର୍ଷ ପଢ଼ି ଚାରିଗୋଟି ପତ୍ରରେ ପରୀକ୍ଷା ଦେଇ ପାସ୍ କରିପାରନ୍ତି କିମ୍ବା ଗୋଟିଏ ଥିସିସ୍ ଦେଇ ଦୁଇଗୋଟି ପତ୍ରରେ ପରୀକ୍ଷା ଦେଇପାରନ୍ତି । ଏହି ଦ୍ୱିତୀୟ ପ୍ରକାର ପିଲାମାନଙ୍କର ଥିସିସ କାମ ଯଦି ଭଲ ହୁଏ, ତେବେ ପ୍ରଫେସରଙ୍କ ସୁପାରିସରେ ନାମ ଲେଖାଇବା ଦିନଠାରୁ ଛାତ୍ର ପିଏଚ୍.ଡି. କୋର୍ସକୁ ଉନ୍ନୀତ ହୋଇପାରେ । ପିଏଚ୍.ଡି. କୋର୍ସ ପାଇଁ କେବଳ ଥିସିସ୍ ଦେବାକୁ ହେବ ଏବଂ ସେହି ଥିସିସର ପରୀକ୍ଷା ଏବଂ ତା

ଉପରେ ମୌଖିକ ପରୀକ୍ଷାରେ ପାସ୍‌କଲେ ଛାତ୍ର ପିଏଚ୍.ଡି. ଡିଗ୍ରୀ ପାଇବାକୁ ଯୋଗ୍ୟ ବିବେଚିତ ହୁଏ । ମୁଁ ଲଣ୍ଡନରେ ପିଏଚ୍.ଡି. ଡିଗ୍ରୀ ପାଇଁ ପଢ଼ିବାକୁ ଯାଇଥିଲି । ମୋତେ ପ୍ରଥମେ ଏମ୍.ଏସ୍‌ସି. ଡିଗ୍ରୀ କ୍ଲାସରେ ନାମ ଲେଖାଇବାକୁ ସୁବିଧା ମିଳିଥିବାରୁ ସେ ଡିଗ୍ରୀ ପାଇଁ ମୁଁ ଥିସିସ୍ ସହିତ ଦୁଇଗୋଟି ପତ୍ରରେ ପରୀକ୍ଷା ଦେବାକୁ ଇଚ୍ଛା ପ୍ରକାଶ କରିଥିଲି । ମୋର ଆଶା ଥିଲା ଯେ ଥିସିସ୍‌ରେ ପ୍ରଗତି ଦେଖାଇ ପ୍ରଫେସରଙ୍କ ସୁପାରିସରେ ନାମ ଲେଖାଇବା ଦିନଠାରୁ ପିଏଚ୍.ଡି. ଡିଗ୍ରୀ ପାଇଁ ନାମ ଲେଖାଇବା ସୁବିଧା ପାଇବି । ସେଥିଯୋଗୁଁ ମୁଁ ପିଏଚ୍.ଡି. ଡିଗ୍ରୀ ପାଇଁ ମୂଳରୁ ଥିସିସ୍ ବିଷୟ ବାଛିଲି ଏବଂ ସେ ବିଷୟରେ ପଢ଼ାପଢ଼ି କଲି ।

ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ ଗୋଟିଏ ବିଶ୍ୱବିଦ୍ୟାଳୟ ନୁହେଁ । ଏହା ଲଣ୍ଡନ ବିଶ୍ୱବିଦ୍ୟାଳୟ ଅଧୀନରେ ଅର୍ଥନୀତିରେ ସ୍ନାତକ ଓ ସ୍ନାତକୋତ୍ତର ଶିକ୍ଷା ଏବଂ ଗବେଷଣା ପାଇଁ ଗୋଟିଏ ଉଚ୍ଚକୋଟୀର କଲେଜ । ଏହାର ଅଧ୍ୟାପକମାନେ ସମସ୍ତେ ଲଣ୍ଡନ ବିଶ୍ୱବିଦ୍ୟାଳୟ ଦ୍ୱାରା ଅନୁମୋଦିତ ଏବଂ ଏହାର ଛାତ୍ରମାନେ ସମସ୍ତେ ଲଣ୍ଡନ ବିଶ୍ୱବିଦ୍ୟାଳୟର ଡିଗ୍ରୀମାନଙ୍କ ପାଇଁ ପଢ଼ନ୍ତି ଏବଂ ପରୀକ୍ଷା ଦେଇ ସେହି ବିଶ୍ୱବିଦ୍ୟାଳୟର ଡିଗ୍ରୀ ଲାଭ କରନ୍ତି । ଲଣ୍ଡନ ବିଶ୍ୱବିଦ୍ୟାଳୟର ଅର୍ଥନୀତି ବିଷୟରେ ସବୁ ପଢ଼ା ଓ ଗବେଷଣା ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ହୁଏ ।

ଡକ୍ଟର କେ.ଆର୍.ରେବର୍ଣ୍ଣ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ମୋର ଗବେଷଣାର ପରାମର୍ଶଦାତା ଓ ପରିଦର୍ଶକ ଥିଲେ । ସେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ୍.ଏ. ପାସ୍ କରି ଆମେରିକାର କର୍ଣ୍ଣେଲ୍ ବିଶ୍ୱବିଦ୍ୟାଳୟରୁ କୃଷି ଅର୍ଥନୀତିରେ ପିଏଚ୍.ଡି. ଡିଗ୍ରୀ ପାଇଥିଲେ । ତାଙ୍କର ପ୍ରକାଶିତ ଗବେଷଣାପତ୍ରମାନଙ୍କ ପାଇଁ ମଧ୍ୟ ସେ ବିଷୟରେ ଖ୍ୟାତି ଅର୍ଜନ କରିଥିଲେ । ସେ କୃଷି ଅର୍ଥନୀତି ବିଷୟରେ ମୋର ଗବେଷଣାର ତତ୍ତ୍ୱାବଧାନ କରିବାକୁ ରାଜି ହୋଇଥିଲେ ଏବଂ ମୋତେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ତାଙ୍କରି ତତ୍ତ୍ୱାବଧାନରେ ଗବେଷଣା କରିବାକୁ ନିର୍ଦ୍ଦେଶ ଦିଆଯାଇଥିଲା ।

ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ଶିକ୍ଷାବର୍ଷକୁ ମାଇକେଲ, ଲେଣ୍ଟ ଓ ଗ୍ରୀଷ୍ମ ଏହି ତିନିଗୋଟି ଟର୍ମରେ ବିଭକ୍ତ କରାଯାଇଥାଏ । ପ୍ରଥମରେ ମାଇକେଲ ଟର୍ମଟି ଅକ୍ଟୋବର ଆରମ୍ଭରୁ ଖ୍ରୀଷ୍ଟମାସ ଛୁଟି ପର୍ଯ୍ୟନ୍ତ, ଦ୍ୱିତୀୟ ଲେଣ୍ଟଟର୍ମ ଜାନୁଆରୀ ଠାରୁ ମାର୍ଚ୍ଚମାସ ଶେଷ ପର୍ଯ୍ୟନ୍ତ ଏବଂ ତୃତୀୟ ଗ୍ରୀଷ୍ମ ଟର୍ମ ଅପ୍ରେଲ ମାସଠାରୁ ଜୁନ୍ ମାସ ଶେଷ ପର୍ଯ୍ୟନ୍ତ । ଜୁଲାଇ, ଅଗଷ୍ଟ ଏବଂ ସେପ୍ଟେମ୍ବର ମାସ ସ୍କୁଲର ଲମ୍ବା ଗ୍ରୀଷ୍ମ ଛୁଟି । ମାତ୍ର ଗ୍ରୀଷ୍ମଛୁଟିରେ ଲାଇବ୍ରେରୀ ସୋମବାରଠାରୁ ଶୁକ୍ରବାର ପର୍ଯ୍ୟନ୍ତ ସବୁ ସପ୍ତାହରେ ଖୋଲା ଥାଏ ଏବଂ ଗବେଷଣା ଛାତ୍ର ଏବଂ ଅଧିକ ପଢ଼ିବାକୁ ଇଚ୍ଛା କରୁଥିବା ସ୍ନାତକ ଛାତ୍ର ସେ ସବୁ ଦିନରେ ଲାଇବ୍ରେରୀରେ ଇଚ୍ଛା ଅନୁସାରେ ପଢ଼ିପାରନ୍ତି । ଟର୍ମ ସମୟରେ ବିଭିନ୍ନ ଅଧ୍ୟାପକ ବିଭିନ୍ନ କୋର୍ସରେ ଲେକ୍‌ଚର ଦେଉଥାଆନ୍ତି । ସେଗୁଡ଼ିକ ବାର୍ଷିକ କାଲେଣ୍ଡରରେ ଆଗରୁ ନିର୍ଦ୍ଦିଷ୍ଟ ଭାବରେ ଛାପା ହୋଇଥାଏ । ସେଗୁଡ଼ିକ ଉଭୟ ସ୍ନାତକ ଏବଂ ସ୍ନାତକୋତ୍ତର ଛାତ୍ରମାନଙ୍କ

ପାଇଁ ଉଦ୍ଦିଷ୍ଟ । ସେଗୁଡ଼ିକର ରୋଲ୍ କଲ୍ ହୁଏ ନାହିଁ ବା ସ୍ନାତକ କିମ୍ବା ସ୍ନାତକୋତ୍ତର ଛାତ୍ର ସେଗୁଡ଼ିକରେ ଯୋଗ ଦେବାକୁ ବାଧ୍ୟ ନୁହନ୍ତି । ମାତ୍ର ଛାତ୍ରମାନେ ସେମାନଙ୍କର ଆବଶ୍ୟକତା ଦୃଷ୍ଟିରୁ ବହୁ ସଂଖ୍ୟାରେ ସେଥିରେ ଯୋଗ ଦିଅନ୍ତି । ସ୍କୁଲରେ ଘଣ୍ଟା ବାଜେ ନାହିଁ । ସବୁ ଘରେ କାନ୍ଥରେ ଇଲେକ୍‌ଟ୍ରିକ୍ ଘଣ୍ଟା ଥାଏ । ଏକ ଘଣ୍ଟା ପରେ ଲେକ୍‌ଚର ଶେଷ ହୁଏ । ପ୍ରତି ସ୍ନାତକ ଛାତ୍ରପାଇଁ ଟ୍ୟୁଟର ଅଛନ୍ତି ଏବଂ ସେମାନେ ଟ୍ୟୁଟୋରିଆଲ୍ କ୍ଲାସରେ ଯୋଗ ଦିଅନ୍ତି । ସ୍ନାତକୋତ୍ତର ଛାତ୍ରମାନେ ଟ୍ୟୁଟୋରିଆଲ୍ କ୍ଲାସରେ ଯୋଗ ଦିଅନ୍ତି ନାହିଁ । ସେମାନେ ବରିଷ୍ଠ ଅଧ୍ୟାପକମାନେ ପରିଚାଳିତ କରୁଥିବା ବିଭିନ୍ନ ସେମିନାରରେ ଯୋଗ ଦିଅନ୍ତି । ପ୍ରତି ସ୍ନାତକୋତ୍ତର ବା ପୋଷ୍ଟଗ୍ରାଜୁଏଟ୍ ଛାତ୍ର ଜଣେ ଅଧ୍ୟାପକଙ୍କ ତତ୍ତ୍ୱାବଧାନରେ ଗବେଷଣା କରନ୍ତି । ଛାତ୍ର କେଉଁ କେଉଁ ଲେକଚର କୋର୍ସରେ ଯୋଗ ଦେବ ତାହା ତାଙ୍କର ତତ୍ତ୍ୱାବଧାରକ ଅଧ୍ୟାପକ ପରାମର୍ଶ ଓ ନିର୍ଦ୍ଦେଶ ଦିଅନ୍ତି । ମେଧାବୀ ଛାତ୍ରମାନେ ବଛାବଛି ହୋଇ ସ୍କୁଲରେ ନାମ ଲେଖାଇଥିବାରୁ ଛାତ୍ରମାନେ ବର୍ଷଯାକ ବିଭିନ୍ନ ଲେକ୍‌ଚର କୋର୍ସ, ସେମିନାର ପ୍ରଭୃତିରେ ନିୟମିତ ଭାବରେ ଯୋଗ ଦିଅନ୍ତି ଏବଂ ପ୍ରତିଦିନ ବହୁ ସମୟ ଲାଇବ୍ରେରୀରେ ପଢ଼ନ୍ତି । ପଢ଼ାପଢ଼ି କାମ ବର୍ଷଯାକ ଅତି ଶୃଙ୍ଖଳିତ ଭାବରେ ଚାଲେ । ଦିନ ଦିନିକିଆ ଛୁଟି ନ ଥାଏ ଏବଂ ସ୍କୁଲର ପାଠ୍ୟକ୍ରମରେ କୌଣସି ପ୍ରକାର ବାଧା ବା ଗୋଳମାଳ ନ ଥାଏ ।

ମୁଁ ଦେଖିଲି ଲଣ୍ଡନ ବିଶ୍ୱବିଦ୍ୟାଳୟର ବି.ଏ. ଏବଂ ବି.ଏସ୍‌ସି. ଡିଗ୍ରୀ ଅତି ଉଚ୍ଚମାନର । ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ବି.ଏ. ଡିଗ୍ରୀ ଓ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଟ୍ରାଇପସ୍ ଡିଗ୍ରୀ ପାଇଥିବା ଛାତ୍ରମାନଙ୍କ ପରି ଲଣ୍ଡନ ବିଶ୍ୱବିଦ୍ୟାଳୟର ବି.ଏ. ବା ବି.ଏସ୍‌ସି. ଡିଗ୍ରୀ ପାଇଥିବା ଛାତ୍ରମାନଙ୍କର ଜ୍ଞାନ ଅତି ଗଭୀର । ପରୀକ୍ଷା ଅତି କଠିନ ଏବଂ ଛାତ୍ରମାନେ ନେଇଥିବା ବିଷୟମାନଙ୍କ ଉପରେ ବହୁ ବହି ପଢ଼ିବାକୁ ବାଧ୍ୟ ହୋଇଥାନ୍ତି । ସ୍ୱାଧୀନତା ପୂର୍ବରୁ ବ୍ରିଟିଶ ରାଜତ୍ୱ ସମୟରେ ଆମ ଦେଶରେ ବିଶ୍ୱବିଦ୍ୟାଳୟ ସଂଖ୍ୟା କୋଡ଼ିଏ ପଚିଶରୁ ବେଶୀ ନ ଥିଲା । ସେଥିରୁ ବି.ଏ., ଏମ୍.ଏ. ଡିଗ୍ରୀ ପାଇଥିବା ଛାତ୍ରମାନଙ୍କର ଶିକ୍ଷାର ମାନ ଉଚ୍ଚ ଥିଲା । ଆଜିକାଲି ଆମ ଦେଶରେ ବିଶ୍ୱବିଦ୍ୟାଳୟ ଏବଂ ସ୍କୁଲ କଲେଜ ସଂଖ୍ୟା ଅତିମାତ୍ରାରେ ବଢ଼ିଯାଇଛି । ସେଥିରେ ଶିକ୍ଷକ ଓ ଅଧ୍ୟାପକମାନଙ୍କ ଜ୍ଞାନ ଉଚ୍ଚକୋଟୀର ନୁହେଁ ବା ସେଥିରେ ଅଧ୍ୟୟନ ଓ ଅଧ୍ୟାପନା ପାଇଁ କୌଣସି ସୁବିଧା ନାହିଁ । ସେଥିଯୋଗୁଁ ବର୍ତ୍ତମାନ ଆମଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟ ଡିଗ୍ରୀ ଲାଭ କରିଥିବା ଛାତ୍ରମାନଙ୍କର ଜ୍ଞାନର ମାନ ଅତି ନିମ୍ନ ସ୍ତରକୁ ଖସିଆସିଛି ।

ବ୍ରିଟିଶ ରାଜତ୍ୱ ସମୟରେ ଆମ ଦେଶର ବିଶ୍ୱବିଦ୍ୟାଳୟମାନଙ୍କଠାରୁ ବି.ଏ., ବି.ଏସସି. ଓ ଏମ୍.ଏ., ଏମ୍.ଏସସି. ଡିଗ୍ରୀ ଲାଭ କରିଥିବା ଛାତ୍ରମାନଙ୍କର ଜ୍ଞାନର ମାନ ଉଚ୍ଚ ଥିଲା । ତଥାପି ପ୍ରତିବର୍ଷ ପ୍ରାଦେଶିକ ସରକାରମାନେ ବିଶ୍ୱବିଦ୍ୟାଳୟମାନଙ୍କର ସର୍ବୋଚ୍ଚ ଡିଗ୍ରୀ ଏମ୍.ଏ. ଓ ଏମ୍.ଏସ୍‌ସି. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ଦ୍ୱିତୀୟ ହୋଇ ପାସ୍ କରିଥିବା ଛାତ୍ରମାନଙ୍କୁ ଷ୍ଟେଟ୍ ସ୍କଲାର୍‌ସିପ୍ ଦେଇ ଇଂଲଣ୍ଡର ବିଭିନ୍ନ

ବିଶ୍ୱବିଦ୍ୟାଳୟମାନଙ୍କରେ ଶିକ୍ଷା ଲାଭ କରିବାକୁ ପଠାଉଥିଲେ । ସେ ଛାତ୍ରମାନେ ସମସ୍ତେ ଯାଇ ଇଂଲଣ୍ଡର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ ବି.ଏ., ବି.ଏସସି. ଶ୍ରେଣୀରେ ନାମ ଲେଖାଉଥିଲେ । ଆମ ଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରୁ ଏମ୍.ଏ. ପାସ୍ କରିଥିବା ସର୍ବଶ୍ରେଷ୍ଠ ଛାତ୍ର ସେଠାରେ ବି.ଏ., ବି.ଏସ୍‌ସି. ଶ୍ରେଣୀରେ ଯୋଗ ଦେଉଥିଲେ । ଏହି କାର୍ଯ୍ୟକ୍ରମରେ ଆମ ଓଡ଼ିଶାର ପରିଜା ଓ ତ୍ରିପାଠୀ ସାହେବ ଓ କ୍ୟାମ୍ବ୍ରିଜର ଟ୍ରାଇପସ୍ ଡିଗ୍ରୀ ଶ୍ରେଣୀରେ ଯୋଗ ଦେଇଥିଲେ । ଅଧ୍ୟାପକ ଘନଶ୍ୟାମ ଦାସ ଏବଂ ଭୈରବ ନାଥ ରୋହାତଗୀ ମଧ୍ୟ ଲଣ୍ଡନରୁ ଯଥାକ୍ରମେ ବି.ଏ., ବି.ଏସ୍‌ସି. ଡିଗ୍ରୀ ପାଇଥିଲେ ।

ମୁଁ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ପ୍ରଥମେ ଏମ୍.ଏସ୍‌ସି. କ୍ଲାସରେ ନାମ ଲେଖାଇ ଡକ୍ଟର ଜେ.ଆର୍. ରେବର୍ଣ୍ଣଙ୍କ ତତ୍ତ୍ୱାବଧାନରେ ଗବେଷଣା ଆରମ୍ଭ କଲି । ନିୟମ ଅନୁସାରେ ଥିସିସ୍ କାମରେ ସନ୍ତୋଷଜନକ ପ୍ରଗତି ହେଲେ ଅଧ୍ୟାପକଙ୍କ ସୁପାରିସ ଅନୁସାରେ ପିଏଚ୍.ଡି. ଡିଗ୍ରୀ ପାଇଁ କାର୍ଯ୍ୟ କରିବାକୁ ସୁବିଧା ମିଳିପାରେ ବୋଲି ଆଶା ରଖି ପଢ଼ାପଢ଼ି କଲି । ଡକ୍ଟର ରେବର୍ଣ୍ଣ ମୋତେ ପ୍ରଥମେ ସ୍କୁଲରେ ଚାଲୁଥିବା କେତେକ ଲେକ୍‌ଚର କୋର୍ସରେ ଯୋଗ ଦେବାକୁ ପରାମର୍ଶ ଦେଲେ । ତାଙ୍କ ପରାମର୍ଶରେ ଗୋଟିଏ ଥିସିସ ବିଷୟ ସ୍ଥିର କଲି ଯାହାକି ପରେ ପିଏଚ୍.ଡି. ଥିସିସର ବିଷୟ ହୋଇପାରେ । ଡକ୍ଟର ରେବର୍ଣ୍ଣଙ୍କର କୃଷି ଅର୍ଥନୀତିରେ ବିଶେଷ ଜ୍ଞାନ ଥିଲା ଏବଂ ସେ ପୃଥିବୀର ବିଭିନ୍ନ ଦେଶର କୃଷି ବିଷୟରେ ବହୁତ କଥା ଜାଣିଥିଲେ । ସେ ମୋତେ ଭାରତ ସମେତ ଦକ୍ଷିଣ ଓ ଦକ୍ଷିଣପୂର୍ବ ଏସିଆ ଦେଶମାନଙ୍କରେ ଜନସଂଖ୍ୟା ବିସ୍ଫୋରଣ ପରିପ୍ରେକ୍ଷୀରେ ଖାଦ୍ୟ ଶସ୍ୟ ଉତ୍ପାଦନ, ସେଗୁଡ଼ିକର ଦରଦାମ୍ ଏବଂ ଉତ୍ପାଦନ ଓ ଦରଦାମ୍ ମଧ୍ୟରେ ସମ୍ବନ୍ଧ ଉତ୍ପାଦନ ବୃଦ୍ଧି ପାଇଁ ନୀତି ନିର୍ଦ୍ଧାରଣ ପ୍ରଭୃତି ବିଶ୍ଳେଷଣ କରିବାକୁ ପରାମର୍ଶ ଦେଲେ । ମୁଁ ସେ ସବୁ ବିଷୟରେ ଅଧ୍ୟୟନ କରି ଦେଖିଲି ଯେ ଦକ୍ଷିଣଏସିଆର ବଙ୍ଗଳାଦେଶ ସହ ଭାରତବର୍ଷର ଦକ୍ଷିଣ ଓ ପୂର୍ବଭାଗଠାରୁ ଆରମ୍ଭ କରି ଦକ୍ଷିଣପୂର୍ବ ଏସିଆର ବ୍ରହ୍ମଦେଶ, ଭିଏତ୍‌ନାମ, ମାଳୟ, ଇଣ୍ଡୋନେସିଆ ଦେଶ ଏବଂ ପୂର୍ବଏସିଆର ଚୀନ୍ ଏବଂ ଜାପାନ ଦେଶମାନଙ୍କରେ ଧାନ ହିଁ ସର୍ବପ୍ରଧାନ ଖାଦ୍ୟଶସ୍ୟ । ଏ ସବୁ ଦେଶମାନଙ୍କରେ ଶତକଡ଼ା ଅଶୀ ଭାଗରୁ ଊର୍ଦ୍ଧ୍ୱ ଜମିରେ ଧାନ ଚାଷ କରାଯାଏ । ଧାନଚାଷ ବ୍ୟତୀତ ଅନ୍ୟ ଖାଦ୍ୟଶସ୍ୟ ଏବଂ ଅଣଖାଦ୍ୟଶସ୍ୟ ପରିମାଣ ଅତି ଅଳ୍ପ । ଏ ସବୁ ଦେଶମାନଙ୍କରେ ବାର୍ଷିକ ଜନସଂଖ୍ୟା ବୃଦ୍ଧିର ହାର ଶତକଡ଼ା ଦୁଇଭାଗରୁ ଅଧିକ । ଜନସଂଖ୍ୟାର ଏହି ଦ୍ରୁତ ବୃଦ୍ଧି ଯୋଗୁଁ ଖାଦ୍ୟର ଚାହିଦା ପ୍ରତିବର୍ଷ ଦ୍ରୁତଗତିରେ ବୃଦ୍ଧି ପାଉଛି । ସୁତରାଂ ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି କରିବା ସେ ଦେଶମାନଙ୍କର ଜନସାଧାରଣ ଏବଂ ସରକାରମାନଙ୍କର ପ୍ରଧାନ ସମସ୍ୟା ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି ଅର୍ଥ ଧାନ ଉତ୍ପାଦନ ପରିମାଣ ବୃଦ୍ଧି । କାରଣ ଧାନ ହିଁ ସେ ଦେଶମାନଙ୍କର ପ୍ରଧାନ ଖାଦ୍ୟଶସ୍ୟ । ଧାନ ଉତ୍ପାଦନ ପରିମାଣ ବୃଦ୍ଧି କରିବାପାଇଁ ସେ ଦେଶମାନଙ୍କର ଚାଷୀମାନେ କି କି ଉପାୟ ଅବଲମ୍ବନ କରିବା ଉଚିତ ଏବଂ ସେ ଦେଶମାନଙ୍କର ସରକାରମାନେ ଧାନ ଉତ୍ପାଦନ ବୃଦ୍ଧି କରିବା ପାଇଁ କି କି

ନୀତି ଅବଲମ୍ବନ କରିବା ଉଚିତ ସେ ବିଷୟରେ ଗବେଷଣା କରି ବିଶାରଦମାନେ ପରାମର୍ଶ ଦେବା କଥା । ସେଥିପାଇଁ ଗବେଷକମାନେ ସେ ଦେଶମାନଙ୍କର ଭୌଗୋଳିକ ଅବସ୍ଥା, ଜଳବାୟୁ, ଜଳସେଚନର ସୁବିଧା, ଚାଷୀମାନଙ୍କର କୃଷିକ୍ଷେତ୍ରର ସଂଗଠନ, ଭୂରାଜସ୍ୱ ଆଇନ, ଜମିର ପରିମାଣ, ଚାଷ ଋଣ ବ୍ୟବସ୍ଥା, ଚାଷୀମାନଙ୍କର ଅର୍ଥନୈତିକ ଏବଂ ସାମାଜିକ ଅବସ୍ଥା, ଖାଦ୍ୟ ଉତ୍ପାଦନର ବୃଦ୍ଧି ଓ କ୍ଷୟର ଦରଦାମ୍ ଉପରେ ପ୍ରଭାବ, ଅନ୍ୟ ଦିଗରେ ଖାଦ୍ୟଶସ୍ୟର ଦରଦାମ ବୃଦ୍ଧି ଓ କ୍ଷୟର ଖାଦ୍ୟ ଉତ୍ପାଦନ ଉପରେ ପ୍ରଭାବ ପ୍ରଭୃତି ସମସ୍ତ ବିଷୟ ବିଶ୍ଳେଷଣ କରିବା ଆବଶ୍ୟକ । ଏ ସବୁ ବିଷୟ ପାଇଁ ମୁଁ ଦକ୍ଷିଣ, ଦକ୍ଷିଣପୂର୍ବ ଏବଂ ପୂର୍ବଏସିଆରୁ ବଙ୍ଗଳାଦେଶ ସହ ପୂର୍ବ ଓ ଦକ୍ଷିଣ ଭାରତ, ବ୍ରହ୍ମଦେଶ, ଭିଏତନାମ, ଥାଇଲାଣ୍ଡ, ଜାପାନ ଦେଶମାନଙ୍କୁ ବାଛିଲି । ସେ ଦେଶମାନଙ୍କର ତତ୍‌ପୂର୍ବ ପଚାଶବର୍ଷରେ ଜନସଂଖ୍ୟା ବୃଦ୍ଧି ଏବଂ ଧାନ ଉତ୍ପାଦନ ସମ୍ବନ୍ଧରେ ଉପରୋକ୍ତ ସମସ୍ତ ବିଷୟ ଅନୁଧ୍ୟାନ କଲି । ଏ ସବୁ ଦେଶମାନଙ୍କର ଉପରୋକ୍ତ ବିଷୟମାନଙ୍କରେ ମିଳିତ ଜାତିସଂଘ ସହିତ ସେ ଦେଶମାନଙ୍କର ସରକାରମାନେ ପରିସଂଖ୍ୟାନଗତ ତଥ୍ୟ ପ୍ରକାଶ କରୁଥିଲେ । ଚୀନ ଦେଶକୁ ନ ବାଛିବାର ପ୍ରଧାନ କାରଣ ହେଲା ଯେ, କମ୍ୟୁନିଷ୍ଟ ଚୀନ ଦେଶର ପ୍ରଧାନ ଭୂଖଣ୍ଡ ପାଇଁ ମିଳିତ ଜାତିସଂଘ କୌଣସି ତଥ୍ୟ ପ୍ରକାଶ କରୁ ନ ଥିଲେ କିମ୍ବା ଚୀନ ସରକାର ପ୍ରକାଶ କରୁଥିବା ତଥ୍ୟ ସହଜଲଭ୍ୟ ନ ଥିଲା । ମିଳିତ ଜାତିସଂଘ କେବଳ ଟାଇୱାନ ବା ଫରମୋଜା ଦ୍ୱୀପର ପରିସଂଖ୍ୟାନ ତଥ୍ୟ ପ୍ରକାଶ କରୁଥିଲେ । ସୁତରାଂ ଡକ୍ଟର ରେବର୍ଣ୍ଣଙ୍କ ପରାମର୍ଶରେ ମୁଁ ଏସିଆ ମହାଦେଶର ଉପରୋକ୍ତ ପାଞ୍ଚଗୋଟି ଦେଶରେ ଜନସଂଖ୍ୟା ବୃଦ୍ଧି ଏବଂ ଧାନ ଉତ୍ପାଦନର ଉପରୋକ୍ତ ପୃଷ୍ଠଭୂମି, ଦରଦାମର ଗତି ଓ ପ୍ରଭାବ ଏବଂ ସରକାରୀ ନୀତି ମୋର ଗବେଷଣାର ବିଷୟ ନିର୍ବାଚନ କଲି । ବିଷୟ ବିରାଟ ହୋଇଗଲା ଏବଂ ବହୁଦେଶ ବିଷୟରେ ଅଧ୍ୟୟନ ଏବଂ ପରିସଂଖ୍ୟାନ ତଥ୍ୟ ସଂଗ୍ରହ ଏବଂ ବିଭିନ୍ନ ଦିଗରୁ ସେଗୁଡ଼ିକର ବିଶ୍ଳେଷଣ କରିବା କଳ୍ପନା କରାଗଲା । ଡକ୍ଟର ରେବର୍ଣ୍ଣ କହିଲେ ଆମ ସ୍କୁଲର ପିଏଚ୍.ଡି. ଡିଗ୍ରୀ ବଡ଼ କଠିନ ଡିଗ୍ରୀ । ତୁମେ ଉପରୋକ୍ତ ବିଷୟମାନଙ୍କରେ ମୌଳିକ ଅବଦାନ କରି ପାରିଲେ ଡିଗ୍ରୀ ପାଇବାକୁ ଯୋଗ୍ୟ ବିବେଚିତ ହେବ । ତୁମେ ଗବେଷଣା ଆରମ୍ଭ କର, ତୁମର ଗବେଷଣାର ପ୍ରଗତି ଏବଂ ଇଂରାଜୀ ଭାଷାରେ ନିର୍ଭୁଲ ଥିସିସ୍ ଲେଖିବାର ନିଦର୍ଶନ ପାଇଲେ ମୁଁ ତୁମକୁ ଏମ୍.ଏସ୍‌ସି. କ୍ଳାସରୁ ନାମ ଲେଖାଇବା ଦିନଠାରୁ ପିଏଚ.ଡ଼ି. ଡିଗ୍ରୀ ପାଠ୍ୟକ୍ରମକୁ ଉନ୍ନୀତ ହେବାକୁ ସୁପାରିସ କରିବି । ତାଙ୍କର ଏହି ପରାମର୍ଶ ଅନୁସାରେ ମୁଁ ପଢ଼ାପଢ଼ି କାର୍ଯ୍ୟ ଆରମ୍ଭ କଲି ।

ମୁଁ ଦେଖିଲି ଯେ ମୁଁ କୃଷି ଅର୍ଥନୀତି ବିଷୟରେ ଆଗରୁ କିଛି ପଢ଼ି ନ ଥିଲି । ସେ ବିଷୟରେ ଗବେଷଣା କରିବା ପୂର୍ବରୁ ପ୍ରଥମେ ମୌଳିକ ବିଷୟଗୁଡ଼ିକୁ ଭଲ ଭାବରେ ପଢ଼ି ବୁଝିବାକୁ ପଡ଼ିବ । ତା'ପରେ ସେଗୁଡ଼ିକର ବିଭିନ୍ନ ଦେଶରେ ବିଭିନ୍ନ ପରିସ୍ଥିତିରେ ପ୍ରୟୋଗ ବିଷୟ ବିଚାର କରିବାକୁ ପଡ଼ିବ । ତାହା ବ୍ୟତୀତ ଅର୍ଥନୀତିର ସାଧାରଣ ତତ୍ତ୍ୱ ବିଷୟରେ ଏବଂ ପରିସଂଖ୍ୟାନ ବିଜ୍ଞାନ ବିଷୟରେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ଯେଉଁ

ଉଚ୍ଚମାନର ଲେକ୍‌ଚର କୋର୍ସ ସବୁ ଦିଆଯାଉଛି, ତାହା ଭଲଭାବରେ ବୁଝି ସାଧାରଣ ଅର୍ଥନୀତି ଏବଂ କୃଷି ଅର୍ଥନୀତିରେ ଗବେଷଣା କରିବା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ସେଥିଯୋଗୁଁ ମୁଁ ପ୍ରଥମ ଛଅମାସରେ ଅର୍ଥନୀତିର ମୌଳିକ ତତ୍ତ୍ୱ, କୃଷି ଅର୍ଥନୀତି ଏବଂ ପରିସଂଖ୍ୟାନ ବିଜ୍ଞାନ ଉପରେ ଡକ୍ଟର ରେବର୍ଣ୍ଣ ପରାମର୍ଶ ଦେଇଥିବା ସମସ୍ତ କ୍ଲାସ ଏବଂ ସେମିନାରରେ ଯୋଗ ଦେଲି ଏବଂ ସେ ବିଷୟମାନଙ୍କରେ ଲାଇବ୍ରେରୀରେ ଅନେକ ବହି ପଢ଼ିଲି । ସେଥି ସଙ୍ଗେ ସଙ୍ଗେ ମୋର ଥିସିସ୍ ବିଷୟରେ ପଢ଼ାପଢ଼ି କଲି ।

ସ୍କୁଲରେ ନାମ ଲେଖାଇବାର ପ୍ରଥମ ଛଅ ମାସରେ ରେବର୍ଣ୍ଣ ପରାମର୍ଶ ଦେଇଥିବା ସମସ୍ତ କୋର୍ସ ଓ ସେମିନାରମାନଙ୍କରେ ଯୋଗ ଦେଇଥିଲି ଏବଂ ଥିସିସ୍‌ର ଦୁଇଗୋଟି ଅଧ୍ୟାୟ ଲେଖି ରେବର୍ଣ୍ଣଙ୍କୁ ଦେଖିବାକୁ ଦେଇଥିଲି । ରବିବାର ବ୍ୟତୀତ ସପ୍ତାହର ସବୁଦିନେ ସ୍କୁଲ ଲାଇବ୍ରେରୀ ଖୋଲା ରହୁଥିଲା । ଶୀତଦିନେ ଘନ କୁହୁଡ଼ି ଓ ଅନ୍ଧାର ମଧ୍ୟରେ ଯିବାଆସିବା ଅତି କଷ୍ଟକର ଥିଲେ ସୁଦ୍ଧା ଦିନ ଦଶଟା ବେଳେ ସ୍କୁଲରେ ପହଞ୍ଚି ରାତି ସାଢ଼େଛଅଟା ବେଳକୁ ଲାଣ୍ଡ ଲେଡି ଘରକୁ ଫେରୁଥିଲି । ଜୁନ୍ ମାସ ପରେ ସ୍କୁଲର ଲମ୍ବା ଗ୍ରୀଷ୍ମ ଛୁଟି ଅକ୍ଟୋବର ପର୍ଯ୍ୟନ୍ତ ହୋଇଗଲା । ସେ ପର୍ଯ୍ୟନ୍ତ ଏମ୍.ଏସ୍‌ସି. କ୍ଲାସରୁ ପିଏଚ.ଡ଼ି. କୋର୍ସକୁ ବଦଳି ହୋଇ ନ ଥିବାରୁ ଅତି ଦୁଃଖିତ ଭାବରେ ଥାଏ । ଡକ୍ଟର ରେବର୍ଣ୍ଣଙ୍କ ସହିତ ଦେଖା ହେଉ ନ ଥାଏ । ଦିନେ ସ୍କୁଲ ଅଫିସକୁ ଯାଇ ତାଙ୍କ ଘର ଠିକଣା ମାଗିଲି । ଅଫିସର ମହିଳା କିରାଣି କହିଲେ ଯେ ପ୍ରଫେସରମାନଙ୍କ ଘର ଠିକଣା କନ୍‌ଫିଡେନ୍‌ସିଆଲ । ତାହା କୌଣସି ଛାତ୍ରଙ୍କୁ ଦିଆଯାଏ ନାହିଁ । ଶୁଣି ଆଶ୍ଚର୍ଯ୍ୟ ଲାଗିଲା । ଆମ ଦେଶରେ ପ୍ରଫେସରମାନଙ୍କୁ ଯେ କୌଣସି ଛାତ୍ର ଯେ କୌଣସି ଦିନ ତାଙ୍କ ଘରେ ଦେଖା କରିପାରେ । ପରେ ବୁଝିଲି ଯେ ରେବର୍ଣ୍ଣ ତାଙ୍କ ନିଜ ଗବେଷଣା କାର୍ଯ୍ୟରେ ଗ୍ରୀଷ୍ମଛୁଟିରେ ତିନି ମାସ ଆଫ୍ରିକାର କୌଣସି ଦେଶକୁ ଯାଇଥିଲେ ।

ଅପ୍ରେଲ ମାସ ବେଳକୁ ଲଣ୍ଡନରେ ପାଗ ବଦଳିଗଲା । ସକାଳେ ଘନ କୁହୁଡ଼ି କମିଗଲା । ଗଛମାନଙ୍କରେ ପତ୍ର କଅଁଳିଲା । ଲୋକମାନେ ପାର୍କମାନଙ୍କରେ ବୁଲିବା ଆରମ୍ଭ କଲେ । ସେତେବେଳକୁ ଚକ୍ରଧର ମିଶ୍ର ମିସେସ୍ ଲାଫୋରକେଡ୍ ଘରକୁ ରହିବାକୁ ଆସିଥାନ୍ତି । ସେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପରିସଂଖ୍ୟାନ ବିଜ୍ଞାନରେ ଡକ୍ଟରେଟ୍ ଡିଗ୍ରୀ ପାଇଁ ଗବେଷଣା କରୁଥାନ୍ତି । ରବିବାର ଦିନ ଆମେ ବିଭିନ୍ନ ପାର୍କକୁ ବୁଲି ଯାଉଥିଲୁ । ଲଣ୍ଡନରେ ଶୀତ ଦିନେ ପାର୍କମାନଙ୍କରେ ଫୁଲ ନ ଥାଏ କିମ୍ବା ଗଛରେ ପତ୍ର ନ ଥାଏ । ପାର୍କର ହ୍ରଦମାନଙ୍କର ପାଣି ଅତି ଥଣ୍ଡା ଏବଂ ଘାସ ଉପରେ ବସିବା ସମ୍ଭବ ନୁହେଁ । ସେଥିଯୋଗୁଁ ସାଧାରଣତଃ ଲୋକମାନେ ଶୀତଦିନେ ଛୁଟି ଦିନମାନଙ୍କରେ ଆର୍ଟ ଗ୍ୟାଲେରୀ ଏବଂ ବିଭିନ୍ନ ମ୍ୟୁଜିଅମ୍‌ମାନଙ୍କରେ ବୁଲନ୍ତି । ଅପ୍ରେଲ ମାସ ହେଲାକ୍ଷଣି ଲୋକମାନେ ପିମ୍ପୁଡ଼ି ଗାତରୁ ବାହାରିଲା ପରି ଆଉ ଘରମାନଙ୍କରେ ନ ରହି ପାର୍କମାନଙ୍କରେ ବୁଲାବୁଲି ଏବଂ ଆମୋଦ ପ୍ରମୋଦ କରନ୍ତି । ମେ ମାସରୁ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ଇଂଲାଣ୍ଡ ସମେତ ସମସ୍ତ ପଶ୍ଚିମ ୟୁରୋପର ସମସ୍ତ ଦେଶମାନଙ୍କରେ ଜଳବାୟୁ ଏବଂ ପରିବେଶ

ଅତ୍ୟନ୍ତ ରମଣୀୟ ହୋଇଯାଏ । ଇଂଲଣ୍ଡର ପ୍ରତି ପରିବାର ଗ୍ରୀଷ୍ମଋତୁରେ ଛୁଟି ନେଇ ପଶ୍ଚିମ ୟୁରୋପର କୌଣସି ନା କୌଣସି ଦେଶକୁ ଭ୍ରମଣରେ ଯାଆନ୍ତି । ସେ ବର୍ଷ ଗ୍ରୀଷ୍ମଛୁଟିରେ ମୁଁ ଅନ୍ୟ କୌଣସି ଦେଶକୁ ଯାଇ ନାହିଁ । ଛୁଟିଦିନମାନଙ୍କରେ ଲଣ୍ଡନର ପାର୍କ, ମ୍ୟୁଜିଅମ୍ ପ୍ରଭୃତିରେ ବୁଲୁଥାଏ । ସପ୍ତାହର ଛଅ ଦିନ ଲାଇବ୍ରେରୀରେ ପଢୁଥାଏ । ସେ ବର୍ଷ ଜୁନ୍ ମାସରେ ଇଂଲାଣ୍ଡର ରାଣୀ ଦ୍ୱିତୀୟ ଏଲିଜାବେଥ୍‌ଙ୍କର ଅଭିଷେକ ହେଲା । ତାହା ଇଂଲଣ୍ଡର ଇତିହାସରେ ଗୋଟିଏ ଅତି ବିଶିଷ୍ଟ ଦିନ । ସମସ୍ତ ବ୍ରିଟେନବାସୀ ବହୁଦିନ ଆଗରୁ ସେ ଉତ୍ସବ ଦେଖିବା ପାଇଁ ଉତ୍କଣ୍ଠାର ସହିତ ଅପେକ୍ଷା କରିଥିଲେ ଏବଂ ପୃଥିବୀର ବହୁ ଦେଶରୁ ରାଷ୍ଟ୍ରମୁଖ୍ୟମାନେ ନିମନ୍ତ୍ରିତ ହୋଇ ଅଭିଷେକ ଉତ୍ସବରେ ଯୋଗ ଦେବାକୁ ଆସିଥିଲେ । ଅଭିଷେକ ଦିନ ପାଗ ଅତି ଖରାପ ହୋଇଗଲା । ତଥାପି ଲକ୍ଷ ଲକ୍ଷ ଲୋକ ରାସ୍ତା କଡ଼ରେ ଠିଆ ହୋଇ ରାଣୀଙ୍କର ବକିଂହାମ୍ ନଅରରୁ ଓ୍ୱେଷ୍ଟମିନିଷ୍ଟର ଅଭିଷେକ ମଣ୍ଡପକୁ ଘୋଡ଼ାଗାଡ଼ିରେ ଆସିବାର ଶୋଭାଯାତ୍ରା ଦେଖିଲେ । ସେଥିପାଇଁ ଲକ୍ଷ ଲକ୍ଷ ନରନାରୀ ଦୁଇ ତିନି ଦିନ ଆଗରୁ ରାସ୍ତା କଡ଼ରେ ଧାଡ଼ି ଲଗାଇ ରହିଥିଲେ । ମୁଁ ମଧ୍ୟ ସେମାନଙ୍କ ସଙ୍ଗରେ ମିଶି ଅଭିଷେକ ଶୋଭାଯାତ୍ରା ଦେଖିଥିଲି ।

ଅକ୍ଟୋବର ମାସରେ ସବୁ ସ୍କୁଲ କଲେଜ ସହିତ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ ଖୋଲିଲା । ତା'ପରେ ଡକ୍ଟର ରେବର୍ଣ୍ଣଙ୍କୁ ଦେଖା କଲି । ସେ ମୋର ଥିସିସ୍‌ର ତାଙ୍କୁ ଦେଇଥିବା ଦୁଇଟି ଅଧ୍ୟାୟ ପଢ଼ିଥିଲେ । ସେଥିରେ ସେ ମୋତେ ଏମ୍.ଏସ୍‌ସି. କ୍ଲାସରୁ ପିଏଚ୍.ଡ଼ି. କୋର୍ସକୁ ସ୍କୁଲରେ ନାମ ଲେଖାଇବା ଦିନଠାରୁ ବଦଳି କରିବାକୁ ସୁପାରିସ କଲେ । ସେ ସୁପାରିସ କରିବା ପାଇଁ ପ୍ରଫେସରମାନେ ଛାତ୍ର ପିଏଚ.ଡ଼ି. ଥିସିସ୍ କରିପାରିବ କି ନାହିଁ ଏବଂ ଇଂରାଜୀ ଭାଷାରେ ଥିସିସ୍ ଲେଖିପାରିବ କି ନାହିଁ ବିବେଚନା କରନ୍ତି । ମୁଁ ଦେଇଥିବା ଦୁଇଗୋଟି ଅଧ୍ୟାୟ ପଢ଼ି ରେବର୍ଣ୍ଣ ସନ୍ତୋଷ ପ୍ରକାଶ କରି ମୋତେ ପିଏଚ୍.ଡି. କୋର୍ସକୁ ବଦଳି କରିଥିଲେ । ତାର ପରଠାରୁ ମୁଁ ସ୍କୁଲରେ ସେମିନାରମାନଙ୍କ ବ୍ୟତୀତ ଅନ୍ୟ କୋର୍ସମାନଙ୍କରେ ଯୋଗ ଦେଲି ନାହିଁ । ମୋର ସମସ୍ତ ସମୟ ଥିସିସ୍ ପ୍ରସ୍ତୁତ କରିବା ପାଇଁ ନିୟୋଜିତ କଲି ।

ସେହି ୧୯୫୩ ମସିହା ଅକ୍ଟୋବର ମାସରେ ଗଣେଶ୍ୱର ମିଶ୍ର ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଦର୍ଶନ ଶାସ୍ତ୍ରରେ ପିଏଚ୍.ଡି. କରିବାକୁ ଆସିଲେ ଏବଂ ଲାଫୋର କେଡ୍‌ଙ୍କ ଘରେ ଆମ ସଙ୍ଗରେ ରହିଲେ । ୧୯୫୫ ମସିହା ଜୁନ୍ ମାସରେ ମୁଁ ଭାରତ ଫେରିବା ପର୍ଯ୍ୟନ୍ତ ଚକ୍ରଧର ମିଶ୍ର, ଗଣେଶ୍ୱର ମିଶ୍ର ଏବଂ ମୁଁ ତିନିଜଣ ଏକା ସାଙ୍ଗରେ ସେହିଠାରେ ରହିଥିଲୁ । ଛୁଟିଦିନମାନଙ୍କ ବ୍ୟତୀତ ସବୁଦିନେ ନିଜ ନିଜର ଅନୁଷ୍ଠାନକୁ ପଢ଼ିବାକୁ ଯାଉଥିଲୁ । ଶନିବାର ଦିନ ଭାତ, ମାଛତରକାରି ନିଜେ ରାନ୍ଧି ଖାଉଥିଲୁ ଏବଂ ରବିବାର ଏବଂ ଛୁଟିଦିନମାନଙ୍କରେ ଲଣ୍ଡନର ବିଭିନ୍ନ ପାର୍କ କିମ୍ବା ଲଣ୍ଡନ ନିକଟସ୍ଥ ସମୁଦ୍ର କୂଳସ୍ଥ ଆମୋଦ ପ୍ରମୋଦ କେନ୍ଦ୍ରମାନଙ୍କୁ ବୁଲିବାକୁ ଯାଉଥିଲୁ । ଶୀତଦିନେ ଲଣ୍ଡନରେ ଅଧିକାଂଶ ମ୍ୟୁଜିଅମ୍ ବୁଲି ଦେଖିଥିଲୁ । ସେହିଠାରେ ଥିବାବେଳେ ଆମେ ତିନିଜଣ

ଅକ୍ସଫୋର୍ଡ଼ ଏବଂ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟମାନ ବୁଲି ଦେଖିଥିଲୁ । ୧୯୫୪ ମସିହା ଅଗଷ୍ଟ ମାସରେ ଗଣେଶ୍ୱରବାବୁ, ଦୀନକୃଷ୍ଣ ମହାନ୍ତି ଏବଂ ମୁଁ ତିନିଜଣ ମିଶି ପାରିସ୍ ସହରରେ ଆଠ ଦଶ ଦିନ ବୁଲିବାକୁ ଯାଇଥିଲୁ । ଏସବୁ ଭ୍ରମଣ କାହାଣୀ ମୋର ପୂର୍ବୋକ୍ତ ବିକଶିତ ପାଶ୍ଚାତ୍ୟ ଜଗତ ବହିରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି ।

ପିଏଚ୍.ଡି କୋର୍ସକୁ ଉନ୍ନୀତ ହେବା ପରେ ପ୍ରାୟ ଦେଢ଼ବର୍ଷ କାଳ ମୁଁ ଥିସିସ୍ ପ୍ରସ୍ତୁତ କରିବା କାର୍ଯ୍ୟରେ ଦିନରାତି ଲାଗିଥିଲି । ସେଥିପାଇଁ ପ୍ରଥମେ ପୂର୍ବ ଏବଂ ଦକ୍ଷିଣପୂର୍ବ ଏସିଆ ଦେଶ ଜାପାନ, ଭିଏତନାମ, ଥାଇଲାଣ୍ଡ ଓ ବ୍ରହ୍ମଦେଶର ଭୌଗୋଳିକ, ଅର୍ଥନୈତିକ ଓ ସାମାଜିକ ଅବସ୍ଥା ବିଷୟରେ ବହୁ ବହି ପଢ଼ିଥିଲି । ଭାରତର ସେ ସବୁ ବିଷୟରେ ମୋତେ ବହୁ କଥା ଜଣାଥିଲା । ସେଥିଯୋଗୁଁ ସେ ସବୁ ବିଷୟରେ ବେଶି ପଢ଼ିବା ଆବଶ୍ୟକ ନ ଥିଲା । ମାତ୍ର ଅନ୍ୟ ଚାରି ଦେଶ ବିଷୟରେ ପଢ଼ିବାକୁ ଆବଶ୍ୟକ ଥିଲା । ଡକ୍ଟର ରେବର୍ଣ୍ଣ ସେ ଦେଶମାନଙ୍କ ବିଷୟରେ ବିଖ୍ୟାତ ଗବେଷକ ଓ ଲେଖକମାନେ ଲେଖିଥିବା ବହି ପଢ଼ିବାକୁ ପରାମର୍ଶ ଦେଉଥିଲେ । ସେ ଦେଶମାନଙ୍କର ଅର୍ଥନୈତିକ ବିବରଣୀ ଅଧ୍ୟୟନ ମୋତେ ବିଶେଷ ଆମୋଦଦାୟକ ହୋଇଥିଲା । ଜାପାନ ଦେଶରେ ଜମି ପରିମାଣ ଅତି ଅଳ୍ପ । ଶିଳ୍ପ ବିପ୍ଳବ ପୂର୍ବରୁ ଅଧିକାଂଶ ଲୋକ କୃଷି ଉପରେ ନିର୍ଭର କରୁଥିଲେ । ପ୍ରତି ଚାଷୀର ଜମି ପରିମାଣ ଅତି ଅଳ୍ପ ଥିଲା ଏବଂ ଚାଷୀମାନେ ପାହାଡ଼ମାନଙ୍କର ଅତି ଉଚ୍ଚ ସ୍ଥାନମାନଙ୍କ ଯାଏ ଜମି ସମତଳ କରି ଚାଷ କରିବାକୁ ବାଧ ହେଉଥିଲେ । ଜମି ସବୁ ଅତି ଅନୁର୍ବର । ସେ ଦେଶର ଚାଷୀ ପରିବାରମାନେ ମୋଟେ ଗୃହପାଳିତ ପଶୁଙ୍କୁ ଖାଇବାକୁ ଦେଇ ରଖି ପାରୁ ନ ଥିଲେ । ଆମ ଦେଶରେ ଏବଂ ଅନ୍ୟ ଦକ୍ଷିଣପୂର୍ବ ଏସିଆ ଦେଶରେ ଗୋରୁ ମଇଁଷି ଦ୍ୱାରା ଯେପରି ହଳ କିମ୍ବା ଶଗଡ଼ ଟଣା ହେଉଥିଲା ତାହା ଜାପାନରେ ମୋଟେ ନ ଥିଲା । ଚାଷୀ ମଜୁରିଆମାନେ କୋଡ଼ି କୋଦାଳରେ ମାଟି ହାଣି, ଭାରରେ ପାଣି ବୋହି ବହୁ ପରିଶ୍ରମ କରି ଚାଷ କରୁଥିଲେ । ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଜିନିଷପତ୍ର କେବଳ ମଣିଷମାନେ ବୋହୁଥିଲେ । ଲୋକସଂଖ୍ୟା ବୃଦ୍ଧି ସହ ଜମିରେ ବହୁ ପରିମାଣ ଖତ ଓ ରାସାୟନିକ ସାର ବ୍ୟବହାର କରି ଅତି ଅନୁର୍ବର ଜମିର ଉତ୍ପାଦିକା ଶକ୍ତି ପୃଥିବୀର ସର୍ବଶ୍ରେଷ୍ଠ ସ୍ଥାନକୁ ଆଣିପାରିଥିଲେ । ଦେଶରେ ଜମିଦାର ଓ ମହାଜନମାନଙ୍କ ଉତ୍ପାତ ଚାଷୀମାନଙ୍କ ଉପରୁ କମି ନ ଥିଲା । ଧାନ ଦେଶର ସର୍ବପ୍ରଧାନ ଉତ୍ପାଦିତ ଖାଦ୍ୟଶସ୍ୟ ଏବଂ ଭାତ ଓ ମାଛ ସେମାନଙ୍କର ପ୍ରଧାନ ଖାଦ୍ୟ ଥିଲା । ବିଗତ ଶହେତିରିଶ ବର୍ଷ ମଧ୍ୟରେ ଦେଶର ରୂପ ବଦଳିଗଲା । ଜାପାନୀମାନେ ପାଶ୍ଚାତ୍ୟ ଦେଶର ମେସିନ ସାହାଯ୍ୟରେ ସବୁ ପ୍ରକାର ଶିଳ୍ପ ପଦାର୍ଥ ଉତ୍ପାଦନ ପ୍ରଣାଳୀ ଗ୍ରହଣ କରିନେଲେ । କୃଷି କ୍ଷେତ୍ରରେ କ୍ଷୁଦ୍ର ଚାଷୀମାନେ ମନୁଷ୍ୟର ପରିଶ୍ରମ ପରିବର୍ତ୍ତେ ବହୁ ପ୍ରକାର ଛୋଟ ଯନ୍ତ୍ର ବ୍ୟବହାର କଲେ । ପାଣି ପମ୍ପ ଦ୍ୱାରା ଜମିରେ ଜଳସେଚନ କଲେ, ଜମିରେ ଧାନଚାଷରେ ବହୁ ପରିମାଣରେ ରାସାୟନିକ ସାର ପ୍ରୟୋଗ କରି କୃଷି ଉତ୍ପାଦନ ବହୁ ପରିମାଣରେ ବଢ଼ାଇଲେ ।

କୃଷିକ୍ଷେତ୍ରରୁ ସଞ୍ଚୟକୁ ଶିଳ୍ପକ୍ଷେତ୍ରରେ ଲଗାଇଲେ । ଫଳରେ ଦ୍ୱିତୀୟ ମହାଯୁଦ୍ଧ ବେଳକୁ ବହୁ ପରିଶ୍ରମୀ ଜାପାନୀ ଜାତି ପୃଥିବୀର ଗୋଟିଏ ବୃହତ୍ ଶକ୍ତି ରୂପେ ଠିଆ ହେଲା । ଦ୍ୱିତୀୟ ମହାଯୁଦ୍ଧ ବେଳେ ଜାପାନୀମାନେ କିପରି ଚୀନ ଦେଶର ବହୁ ଅଂଶ, କୋରିଆଦେଶ ଏବଂ ଦକ୍ଷିଣପୂର୍ବ ଏସିଆର ଭାରତ ପର୍ଯ୍ୟନ୍ତ ସବୁ ଦେଶ ଜୟ କରିନେଲେ, ତାହା ପୃଥିବୀରେ ସବୁଆଡ଼େ ଜଣାଶୁଣା କଥା । ଦ୍ୱିତୀୟ ମହାଯୁଦ୍ଧରେ ସେମାନେ ହାରିଗଲେ, ଦେଶର ଶିଳ୍ପ କାରଖାନା ବହୁ ପରିମାଣରେ ଧ୍ୱଂସ ହୋଇଗଲା । ହିରୋସୀମା ଓ ନାଗାସାକି ସହରରେ ପରମାଣୁ ବୋମାରେ ଗୋଟିଏ ଲେଖାଏଁ ବୋମାରେ ଲକ୍ଷ ଲକ୍ଷ ଲୋକ ମଲେ ଏବଂ ଅନ୍ୟ ବହୁ ଲକ୍ଷ ଲୋକ ବହୁକାଳ ଧରି ମୃତ୍ୟୁ ଯନ୍ତ୍ରଣା ଭୋଗ କଲେ । ଆମେରିକାର ସୈନ୍ୟମାନେ ତାଙ୍କ ଦେଶକୁ ଆଠ ଦଶ ବର୍ଷ ନିଜ କର୍ତ୍ତୃତ୍ୱରେ ରଖିଲେ । ମାତ୍ର ବିଗତ ଚାଳିଶ ବର୍ଷ ମଧ୍ୟରେ ସେ ଜାତିର ପୁନରୁତ୍ଥାନ ହେଲା । ଦେଶରେ କୋଇଲା, ଧାତୁ ପଦାର୍ଥ, କଞ୍ଚାମାଲ କିଛି ନାହିଁ । ଦେଶରେ ପ୍ରତିବର୍ଷ ବହୁବାର ଭୂମିକମ୍ପ ହୁଏ । ସେ ଦେଶରେ କେବଳ ଅଛନ୍ତି ଶୃଙ୍ଖଳିତ ସ୍ୱାଭିମାନୀ ଅତି ପରିଶ୍ରମୀ ମଣିଷ । ବର୍ତ୍ତମାନ ଶିଳ୍ପ ଓ କୃଷି ଉତ୍ପାଦନ ହେତୁ ସେମାନେ ପୃଥିବୀର ତିନି ଚାରି ଧନୀ ଦେଶଙ୍କ ମଧ୍ୟରେ ଅନ୍ୟତମ । ତାଙ୍କ ଦେଶ ତିଆରି ମଟରଗାଡ଼ି, ଜାହାଜ, ଘଣ୍ଟା, ଇଲେକ୍ଟ୍ରୋନିକ୍ସ ପଦାର୍ଥ ଏବଂ ବହୁପ୍ରକାର ମେସିନ୍ ଓ ଶିଳ୍ପ ଜାତ ପଦାର୍ଥ ପୃଥିବୀରେ ସବୁଠାରୁ ଭଲ । ଶିଳ୍ପ ବାଣିଜ୍ୟ କାରବାରରେ ତାଙ୍କ ସଙ୍ଗରେ ଆମେରିକା ଓ ୟୁରୋପର ଶିଳ୍ପୋନ୍ନତ ଦେଶମାନେ ସମକକ୍ଷ ହୋଇପାରୁ ନାହାନ୍ତି । ଜାପାନ ଦେଶର ଇତିହାସ ଅତି ବିସ୍ମୟକର ଏବଂ ତାହାର ଅଧ୍ୟୟନ ଅତି ଆନନ୍ଦଦାୟକ । ପଢ଼ିବସିଲେ ପଢ଼ା ବନ୍ଦ କରି ଅନ୍ୟ କାମକୁ ଯିବାକୁ ଇଚ୍ଛା ହୁଏ ନାହିଁ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଫରାସୀ ସରକାରଙ୍କ ଅଧୀନରେ ଥିବା ଇଣ୍ଡୋଚୀନ ଦେଶ ତିନିଗୋଟି ରାଜ୍ୟରେ ବିଭକ୍ତ ହୋଇଥିଲା । ସେ ତିନିଗୋଟି ରାଜ୍ୟ ହେଲା ଭିଏତନାମ୍, ଲାଓସ ଏବଂ କାମ୍ବୋଡ଼ିଆ । ଭିଏତନାମ ଦେଶ ଉତ୍ତରରେ ଚୀନ୍ ଦେଶ ସୀମାରୁ ଦକ୍ଷିଣରେ ମେକଙ୍ଗ ନଦୀର ମୁହାଣ ପର୍ଯ୍ୟନ୍ତ ଲମ୍ବିଯାଇଛି । ସେ ଦେଶର ଲୋକମାନେ ମାଳୟ ଓ ଚୀନ୍ ଦେଶର ମିଶ୍ରିତ ଲୋକ । ପୂର୍ବ କାଳରେ ସେ ଦେଶର ଲୋକଙ୍କର ଲୋହିତ ନଦୀର ଉପତ୍ୟକାରେ ଘନ ଜନବସତି ସ୍ଥଳ ଥିଲା । ସେମାନେ ଲୋହିତ ନଦୀରେ ବହୁ ବନ୍ଧ ବାଡ଼ ପକାଇ ଉର୍ବର ଜମିରେ ଚାଷ କରୁଥିଲେ । ଦେଶର ଦକ୍ଷିଣ ଭାଗ ଦକ୍ଷିଣ ଚୀନ ସାଗର ଉପକୂଳ ଅଞ୍ଚଳ ମେକଙ୍ଗ ମୁହାଣ ପର୍ଯ୍ୟନ୍ତ ବିସ୍ତାରିତ ହୋଇଛି । ଶହେ ଦେଢ଼ଶହ ବର୍ଷ ପୂର୍ବରୁ ମେକଙ୍ଗ ନଦୀ ମୁହାଣ ନିକଟସ୍ଥ ବିରାଟ ପାଟଜମି ଅଞ୍ଚଳ ଚାଷ କରି ହେଉ ନ ଥିଲା । ଜମି ମାଲିକମାନେ ଭାଗଚାଷୀମାନଙ୍କୁ ଖୁସାମତ କରି ଜମି ଭାଗ ଦେଉଥିଲେ । ଅନେକ ସମୟରେ ଭାଗଚାଷୀ କେତେ ବର୍ଷ ମାଲିକକୁ କିଛି ନ ଦେଇ ଜମି ଛାଡ଼ି ଅନ୍ୟ ସ୍ଥାନକୁ ପଳାଇ ଯାଉଥିଲା । ଆମ ଦେଶରେ ପୂର୍ବ ଏବଂ ପଶ୍ଚିମବଙ୍ଗର ଗଙ୍ଗାନଦୀର ମୁହାଣ ନିକଟସ୍ଥ ପାଟଜମିମାନଙ୍କରେ ଚିରସ୍ଥାୟୀ ବନ୍ଦୋବସ୍ତ ପୂର୍ବରୁ ମଧ୍ୟ

ସେହିପରି ଅବସ୍ଥା ଥିଲା । ଭିଏତନାମର ଲୋକମାନେ ଚୀନ୍ ଦେଶ ବା ଜାପାନ ଦେଶର ଲୋକମାନଙ୍କ ପରି ପରିଶ୍ରମୀ ଓ କାର୍ଯ୍ୟକ୍ଷମ ନ ଥିଲେ । ଉତ୍ତରଭିଏତନାମରେ ଜନସଂଖ୍ୟା ଖୁବ୍ ଘନ ଥିଲା ଏବଂ ଅଧିକାଂଶ ଲୋକ ଛୋଟ ଛୋଟ ଚାଷୀ ରୂପେ କେବଳ ଧାନଚାଷ କରି ଦରିଦ୍ର ଭାବରେ ଚଳୁଥିଲେ । ଦକ୍ଷିଣଭିଏତନାମ୍‌ରେ ଅଧିକାଂଶ ଜମି ଖାଲୁଆ ପାଟଜମି ଥିବାରୁ ସେଥିରେ ଧାନ ଚାଷ ହୋଇ ପାରୁ ନ ଥିଲା । ସେ ଅଞ୍ଚଳରେ ଜନସଂଖ୍ୟା କମ ଥିଲା । ଭିଏତନାମରେ ଭାରତୀୟ ସଂସ୍କୃତି ଅପେକ୍ଷା ଚୀନଦେଶର ସଂସ୍କୃତିର ଅଧିକ ପ୍ରାଧାନ୍ୟ ଥିଲା ।

ଇଣ୍ଡୋଚୀନ ଦେଶର ମଧ୍ୟଭାଗରେ ପାର୍ବତ୍ୟ ଲାଓସ ରାଜ୍ୟ ଥିଲା । ସେ ଅଞ୍ଚଳର ଲୋକମାନେ ପାହାଡ଼ିଆ ଅଞ୍ଚଳର ଲୋକ ଏବଂ ସେ ରାଜ୍ୟରେ ଅନୁର୍ବର ଜମି ହେତୁ ଲୋକସଂଖ୍ୟା ଅତି କମ୍ ଥିଲା । ଲାଓସ ପରେ ଇଣ୍ଡୋଚୀନର ଦକ୍ଷିଣପଶ୍ଚିମ ଅଞ୍ଚଳରେ କାମ୍ବୋଡ଼ିଆ ରାଜ୍ୟ ଥିଲା । ସେଥିରେ ଭାରତୀୟ ସଂସ୍କୃତିର ପ୍ରାଧାନ୍ୟ ଖୁବ୍ ଅଧିକ । ଲୋକଙ୍କ ମଧ୍ୟରୁ ବହୁ ଅଂଶ ଭାରତୀୟ ବଂଶୋଦ୍‌ଭବ । ରାଜାମାନଙ୍କର ନାମ ନରୋତ୍ତମ ପ୍ରଭୃତି ଭାରତୀୟ ନାମ । ସେ ଦେଶରେ ଜନସଂଖ୍ୟା ଉତ୍ତର ଭିଏତ୍‌ନାମ ଲୋହିତ ନଦୀ ଉପତ୍ୟକା ତୁଳନାରେ ଖୁବ୍ ଅଳ୍ପ ଥିଲା । ଜମି ଲୋହିତ ନଦୀ ଉପତ୍ୟକା ପରି ଉର୍ବର ନ ଥିଲା । ଉପରୋକ୍ତ ତିନିଗୋଟି ଯାକ ରାଜ୍ୟ, ଉନବିଂଶ ଶତାବ୍ଦୀ ଏବଂ ବିଂଶ ଶତାବ୍ଦୀର ଦ୍ୱିତୀୟ ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ ଫରାସୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନୀମାନେ ତିନିଗୋଟି ଦେଶକୁ ଜୟ କରିନେଲେ । ଯୁଦ୍ଧ ପରେ ଉତ୍ତର ଭିଏତନାମ ହୋଚିମିନ୍‌ଙ୍କ ନେତୃତ୍ୱରେ କମ୍ୟୁନିଷ୍ଟ ରାଜ୍ୟ ହୋଇ ସ୍ୱାଧୀନ ହେଲା । ପରେ ଦକ୍ଷିଣଭିଏତନାମରେ କମ୍ୟୁନିଷ୍ଟ ଶାସନ କରାଇ ନ ଦେବାକୁ ଆମେରିକା ଲୋକମାନେ ଅନେକ ବର୍ଷ ସେ ଦେଶରେ ଅକଥନୀୟ ଅତ୍ୟାଚାର କଲେ । ଶେଷରେ ଆମେରିକାର ସୈନ୍ୟମାନେ ସେ ଦେଶ ଛାଡ଼ିବାକୁ ବାଧ୍ୟ ହେଲେ ଏବଂ ଉଭୟ ଉତ୍ତର ଓ ଦକ୍ଷିଣ ଭିଏତନାମ ରାଜ୍ୟ ମିଶି ବର୍ତ୍ତମାନ ଭିଏତନାମ ରାଜ୍ୟ ହୋଇଛି ଏବଂ ଦେଶ ପ୍ରଗତି ପଥରେ ଆଗେଇଛି ।

କାମ୍ବୋଡ଼ିଆରେ ଜାପାନୀମାନେ ଛାଡ଼ି ଚାଲିଯିବାପରେ ଲୋକମାନଙ୍କ ମଧ୍ୟରୁ ଗୋଟିଏ ପକ୍ଷ ଚୀନ ଦେଶର ସମର୍ଥନରେ ଏବଂ ଅନ୍ୟ ପକ୍ଷ ରୁଷ ଦେଶ ସମର୍ଥନରେ ସରକାର ଗଢ଼ି ଦେଶ ଶାସନ କରିବାକୁ ଚେଷ୍ଟା କଲେ । ସେହି ଦୁଇ ପକ୍ଷଙ୍କ ମଧ୍ୟରେ ଯୁଦ୍ଧ ହୋଇ ଲକ୍ଷ ଲକ୍ଷ ଲୋକ ମଲେ । ସେ ଯୁଦ୍ଧର ଆଜିଯାଏ ସଂପୂର୍ଣ୍ଣ ଅବସାନ ହୋଇ ନାହିଁ ଏବଂ ଦେଶରେ ପୂର୍ଣ୍ଣ ଶାନ୍ତି ପ୍ରତିଷ୍ଠା ହୋଇ ନାହିଁ । କାମ୍ବୋଡ଼ିଆକୁ ବର୍ତ୍ତମାନ କାମ୍ପୁଚିଆ କୁହାଯାଉଛି । ଏ ତିନିଗୋଟି ଯାକ ରାଜ୍ୟରେ ଧାନ ଏକମାତ୍ର ଫସଲ ଏବଂ ଚାଷୀମାନେ ଅଧିକାଂଶ ଛୋଟଚାଷୀ ।

ଥାଇଲାଣ୍ଡର ପୂର୍ବ ନାମ ଶ୍ୟାମ ଦେଶ ଥିଲା । ଶ୍ୟାମ ଦେଶ ବ୍ରିଟିଶ ଓ ଫରାସୀ କୌଣସି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ନ ହୋଇ ସ୍ୱାଧୀନ ରାଜ୍ୟ ହୋଇ ଚଳୁଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଏବଂ ଯୁଦ୍ଧ ସମୟରେ ସେ ଦେଶ ଜାପାନୀମାନଙ୍କ ସହିତ ସନ୍ଧି କରି ସେମାନଙ୍କୁ ସମର୍ଥନ କରୁଥିଲା । ଥାଇ ଅର୍ଥ ଫ୍ରି ବା ସ୍ୱାଧୀନ, ପରେ ସେ ଦେଶର ନାମ ଥାଇଲାଣ୍ଡ ହୋଇଛି । ଥାଇଲାଣ୍ଡରେ ଭାରତୀୟ ସଂସ୍କୃତିର ପ୍ରାଧାନ୍ୟ ଖୁବ୍ ବେଶୀ । ଦେଶରେ ବହୁ ହିନ୍ଦୁ ଓ ବୌଦ୍ଧ ମନ୍ଦିର ଅଛି । ଅଞ୍ଚଳମାନଙ୍କର ନାମ ଧାନ୍ୟପୁରୀ, ଗୋପପୁରୀ ପ୍ରଭୃତି ସଂସ୍କୃତ ଭାଷାରୁ ଉଦ୍‌ଭବ । ରାଜାମାନଙ୍କର ନାମ ରାମ ପ୍ରଥମ, ରାମ ଦ୍ୱିତୀୟ ପ୍ରଭୃତି ମଧ୍ୟ ଭାରତୀୟ ଐତିହାସିକ ନାମ । ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଭାରତୀୟ ବଂଶୋଦ୍‌ଭବ । ବର୍ତ୍ତମାନ ସେ ଦେଶର ଲୋକମାନେ ଚୀନ୍, ମାଳୟ ଏବଂ ଭାରତୀୟ ଲୋକମାନଙ୍କ ମିଶ୍ରଣରୁ ଉଦ୍‌ଭବ । ଥାଇଲାଣ୍ଡର ଜଳବାୟୁ ସେ ଦେଶର ଲୋକମାନଙ୍କର ପୁରାତନ ଚାଲିଚଳଣି ଏବଂ ସାମାଜିକ ପ୍ରଥା ପଢ଼ି ମୋର ମନେହେଲା ଯେ ଆମ ଓଡ଼ିଶାରେ ଚାଲୁଥିବା ଅନେକ ପର୍ବପର୍ବାଣି, କିମ୍ବଦନ୍ତୀ, ଲୋକକଥା ଏବଂ ସାଂସ୍କୃତିକ ଉତ୍ସବ ଥାଇଲାଣ୍ଡରେ ଅଛି । ଆଜିସୁଦ୍ଧା କାର୍ତ୍ତିକ ପୂର୍ଣ୍ଣିମା ଦିନର ଡଙ୍ଗାଭସା ଉତ୍ସବ ବ୍ୟାଙ୍କକ ସହରର ସର୍ବପ୍ରଧାନ ଉତ୍ସବ । ଆମ ଓଡ଼ିଶାରେ ପିଲା ଜନ୍ମବେଳେ ଯେପରି ଷଷ୍ଠୀଘର ହୁଏ ଏବଂ ଷଷ୍ଠୀ ଘର ପାଖରେ ଥୁଆ ହେଉଥିବା ତାଳପତ୍ରରେ ଯେପରି ଜାତକ ତିଆରି ହୁଏ । ଥାଇଲାଣ୍ଡରେ ମଧ୍ୟ ସେ ସାମାଜିକ ପ୍ରଥା ଅଛି । ସେଠାରେ ମଧ୍ୟ ଛୋଟ ପିଲାମାନଙ୍କର ଉପନୟନ ଉତ୍ସବ ହେଉଥିଲା । ମା ନାରଙ୍ଗ ଖାଇଥିବାରୁ କୁମ୍ଭୀର ତାର ଝିଅକୁ ପିଠିରେ ବସାଇ ନେଇଯାଇଥିବା ଓଡ଼ିଶାର ଗପ ଥାଇଲାଣ୍ଡରେ ମଧ୍ୟ ଅଛି । ଆମ ଉପକୂଳବର୍ତ୍ତୀ ଗାଁମାନଙ୍କରେ ଯେପରି ଲୋକମାନେ ପୋଖରୀ ଗାଡ଼ିଆରୁ ପୋଲୁହ ଏବଂ ଖଇଁଚିରେ ମାଛ ଧରନ୍ତି ଏବଂ ମାଛକୁଣ୍ଡମାନଙ୍କରେ ଘରେ ଅନେକ ଦିନ ଯାଏ ବଞ୍ଚାଇ ରଖିଥାନ୍ତି । ଥାଇଲାଣ୍ଡରେ ମଧ୍ୟେ ସେ ଅଭ୍ୟାସ ଅଛି । ଅନେକ ଇଂରେଜ ଲେଖକ ଥାଇଲାଣ୍ଡର ସାମାଜିକ ଜୀବନ ଓ ଚାଲିଚଳଣି ଟିକିନିଖି ଭାବରେ ବର୍ଣ୍ଣନା କରିଛନ୍ତି । ସେ ସବୁ ପଢ଼ି କଳିଙ୍ଗ ଦେଶ ଓ ଶ୍ୟାମଦେଶ ମଧ୍ୟରେ ପୂର୍ବ ସମ୍ବନ୍ଧ ପାଠକ ମନରେ ସ୍ପଷ୍ଟ ହୋଇଯାଏ । ଓଡ଼ିଶାର ଜଳବାୟୁ ଏବଂ ଲୋକମାନଙ୍କର ସାମାଜିକ ପ୍ରଥା ସେମାନଙ୍କ ସହିତ ସମାନ ହୋଇଥିବାରୁ ଶ୍ୟାମଦେଶ ଉପରେ କଳିଙ୍ଗର ପ୍ରଭାବ ଖୁବ୍ ଅଧିକ ଥିଲା ବୋଲି ମନେହୁଏ । ବର୍ତ୍ତମାନ ସେଠାରେ ଆମେରିକା ଲୋକମାନଙ୍କର ପ୍ରଭାବ ଖୁବ୍ ବେଶୀ । ଦ୍ୱିତୀୟ ବିଶ୍ୱଯୁଦ୍ଧ ଏବଂ ପରେ ଭିଏତନାମ ଓ ସେ ଦେଶରେ ଆମେରିକାର ସୈନ୍ୟମାନେ ବହୁକାଳ ସେ ଦେଶରେ ସହରମାନଙ୍କରେ ରହିଥିଲେ । ଆମେରିକାର ବହୁ ପୁଞ୍ଜି ମଧ୍ୟ ସେ ଦେଶରେ ନିବେଶିତ ହୋଇଛି । ଦେଶରେ ବାଣିଜ୍ୟ, ଶିଳ୍ପ ପ୍ରଗତି ହେତୁ ଲୋକମାନଙ୍କର ଅର୍ଥନୈତିକ ଅବସ୍ଥା ବଦଳି ଯାଉଛି ଏବଂ ସାଧାରଣ ଲୋକମାନେ ସ୍ୱଚ୍ଛଳ ହୋଇଯାଇଛନ୍ତି । ସହର ମାନ ବଡ଼ ହୋଇଯାଉଛି । ଫଳରେ ଆମେରିକାର ସଂସ୍କୃତି ବହୁ ପରିମାଣରେ ପୂର୍ବ ସଂସ୍କୃତିକୁ ଲୋପ କରି ଦେଉଛି ।

ଶେଷରେ ବ୍ରହ୍ମଦେଶ ଉନବିଂଶ ଶତାବ୍ଦୀରୁ ୧୯୩୫ ମସିହା ପର୍ଯ୍ୟନ୍ତ ଭାରତ ବର୍ଷର ଅଙ୍ଗରୂପେ ବ୍ରିଟିଶ ଶାସନ ଅଧୀନରେ ଥିଲା । ପୂର୍ବେ ଦକ୍ଷିଣ ବ୍ରହ୍ମଦେଶର ଇରାବତୀ ନଦୀର ଉପତ୍ୟକାର ଜମି ସବୁ ପାଣି ପଙ୍କ ପୂର୍ଣ୍ଣ ପାଟ ଜମି ଥିବାରୁ ବ୍ରହ୍ମଦେଶର ଲୋକମାନେ ସେଥିରେ ଚାଷ କରିପାରୁ ନ ଥିଲେ । ପୁରାକାଳରେ ବ୍ରହ୍ମଦେଶର ଲୋକମାନେ ଉତ୍ତର ଅଞ୍ଚଳରେ ବାସ କରୁଥିଲେ ଏବଂ ମାଣ୍ଡାଲେ ସହର ରାଜାମାନଙ୍କର ରାଜଧାନୀ ଥିଲା । ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଏବଂ ବିଂଶ ଶତାବ୍ଦୀର ବ୍ରିଟିଶ ରାଜତ୍ୱ ସମୟରେ ଭାରତୀୟ ପୁଞ୍ଜି ଓ ଭାରତୀୟ ଶ୍ରମିକ ସାହାଯ୍ୟରେ ବ୍ରହ୍ମଦେଶର ଦକ୍ଷିଣଭାଗ ଇରାବତୀ ନଦୀ ଉପତ୍ୟକାରେ ବନ୍ଧ ବାଡ଼ କରାଯାଇ ସେ ଅଞ୍ଚଳରେ ଶହେକୋଡ଼ିଏ ଲକ୍ଷ ଏକର ଜମି ଧାନଚାଷ ପାଇଁ ଉପଯୁକ୍ତ କରାଗଲା । ଧାନ ବ୍ରହ୍ମଦେଶର ପ୍ରଧାନ ରପ୍ତାନୀ ପଦାର୍ଥ ଏବଂ ଲୋକମାନଙ୍କର ଆୟର ପ୍ରଧାନ ସୂତ୍ର ଥିଲା । ଇରାବତୀ ନଦୀ ମୁହାଣରେ ଅବସ୍ଥିତ ରେଙ୍ଗୁନ୍ ବନ୍ଦର ଧାନ ରପ୍ତାନୀ ଏବଂ ବାହାର ଜଗତ ସହିତ ଯୋଗାଯୋଗ ପାଇଁ ବ୍ରହ୍ମଦେଶର ପ୍ରଧାନ ବନ୍ଦର ହେଲା । ଦକ୍ଷିଣ ବ୍ରହ୍ମଦେଶରେ ଧାନଚାଷ ଏବଂ ରପ୍ତାନୀ ହେତୁ ବ୍ରହ୍ମଦେଶ ଧନୀ ହୋଇଗଲା । ଭାରତବର୍ଷର ମାନ୍ଦ୍ରାଜ ପ୍ରେସିଡେନ୍ସିରୁ ଚେଟିଆର ମହାଜନମାନେ ପୁଞ୍ଜି ଖଟାଇ ବ୍ରହ୍ମଦେଶ ଓ ଭାରତୀୟ ଚାଷୀ ଓ ଶ୍ରମିକମାନଙ୍କ ସାହାଯ୍ୟରେ ଦକ୍ଷିଣ ବ୍ରହ୍ମଦେଶର କୋଟିଏ ଏକରରୁ ଉର୍ଦ୍ଧ୍ୱ ପାଟ ଜମିକୁ ଧାନ ଚାଷଯୋଗ୍ୟ କଲେ । ବର୍ମାର ଚାଷୀମାନେ ଦକ୍ଷିଣ ଭାରତୀୟ ଚାଷୀମାନଙ୍କଠାରୁ ଅପେକ୍ଷାକୃତ ଅଳସୁଆ ଥିଲେ । ଚେଟିଆର ମାନେ କାଳକ୍ରମେ ୧୯୩୦ ମସିହା ସୁଦ୍ଧା ଦକ୍ଷିଣ ବ୍ରହ୍ମଦେଶର ଇରାବତୀ ନଦୀ ଉପତ୍ୟକାରେ ଅଧାରୁ ଅଧିକ ଧାନ ଜମିର ମାଲିକ ହୋଇଗଲେ ଏବଂ ବହୁ ଜମି ଦକ୍ଷିଣ ଭାରତୀୟ ଭାଗଚାଷୀଙ୍କ ଦ୍ୱାରା ଚାଷ କରାଉଥିଲେ । ବ୍ରହ୍ମଦେଶର ଚାଷୀମାନେ ଏଥିରେ ବିଶେଷ ଅସନ୍ତୁଷ୍ଟ ହୋଇଥିଲେ ଏବଂ ବିଶ୍ୱଯୁଦ୍ଧ ପୂର୍ବରୁ ମଧ ସେମାନେ ରେଙ୍ଗୁନ ଏବଂ ମଉଲମେନ୍ ସହରମାନଙ୍କରେ ଭାରତୀୟମାନଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ୧୯୪୧ ମସିହା ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନୀମାନେ ବ୍ରହ୍ମଦେଶ ଜୟ କରିନେଲେ । ଭାରତୀୟ ଲୋକମାନେ ବିରୋଧୀ ବ୍ରହ୍ମଦେଶର ଲୋକ ଏବଂ ଜାପାନୀମାନଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇ ଭାରତବର୍ଷକୁ ଉତ୍ତର ବ୍ରହ୍ମଦେଶ ଓ ଭାରତର ପାର୍ବତୀୟ ସୀମା ବାଟ ଦେଇ ଭାରତ ପଳାଇ ଆସିଲେ । ରେଙ୍ଗୁନ ବନ୍ଦର ଜାପାନୀମାନେ ଅଧିକାର କରିଥିବାରୁ ସେମାନେ ଜଳପଥରେ ଭାରତ ଆସିପାରିଲେ ନାହିଁ । ଭାରତ ପଳାଇ ଆସିଲା ବେଳେ ଚେଟିଆରମାନେ ବ୍ରହ୍ମଦେଶରେ ସେମାନଙ୍କର ଜମି ମାଲିକାନାର ପ୍ରମାଣ ସ୍ୱରୂପ ଗାଡ଼ି ଗାଡ଼ି ପଟା ପାଉତି ତମସୁକ ପ୍ରଭୃତି ଆଣିଥିଲେ । ସେଗୁଡ଼ିକ ସେମାନେ ଯୁଦ୍ଧ ପରେ ଭାରତ ସରକାରଙ୍କ ପାଖରେ ଦାଖଲ କରି କ୍ଷତିପୂରଣ ଦାବି କରିଥିଲେ । ମାତ୍ର ଯୁଦ୍ଧ ପରେ ବ୍ରହ୍ମଦେଶ ସ୍ୱାଧୀନ ହେଲା । ସେ ଦେଶର ସରକାର ବ୍ରହ୍ମଦେଶର ଜମିସବୁ ରାଷ୍ଟ୍ରୀୟ ସମ୍ପତ୍ତି ବୋଲି ଘୋଷଣା କଲେ । ଚେଟିଆରମାନଙ୍କ ଦାବି ବିଷୟରେ ଭାରତ ସରକାର ଏବଂ ବ୍ରହ୍ମଦେଶ ସରକାରଙ୍କ

ମଧ୍ୟରେ ବହୁକାଳ କଥାବାର୍ତ୍ତା ଚାଲିଥିଲା । ଶେଷରେ ବୋଧହୁଏ ଚେଟିଆରମାନେ ବିଶେଷ କିଛି କ୍ଷତିପୂରଣ ପାଇଲେ ନାହିଁ । ସେମାନଙ୍କର ବ୍ରହ୍ମଦେଶରେ ଥିବା ଭୂସମ୍ପତ୍ତି ସେ ଦେଶ ସରକାର ଅଧିକାର କରିନେଲେ । ବିଗତ ପଚାଶ ବର୍ଷ ମଧ୍ୟରେ ବ୍ରହ୍ମଦେଶରେ ବହୁକାଳ ସାମରିକ ଶାସନ ଜାରୀ ରହିଛି । ବର୍ତ୍ତମାନ ସୁଦ୍ଧା ସେ ଦେଶ ସାମରିକ ଶାସକମାନଙ୍କ ଅଧୀନରେ ଅଛି । ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠା ପାଇଁ ଆନ୍ଦୋଳନ ଚାଲିଛି ।

ଆମ ଭାରତବର୍ଷରେ ମାଲବାର ଉପକୂଳ ଅଞ୍ଚଳରୁ ଆରମ୍ଭ କରି କାବେରୀ, କୃଷ୍ଣା, ଗୋଦାବରୀ, ମହାନଦୀ, ଗଙ୍ଗାନଦୀର ଉପତ୍ୟକାରେ, ମାଲବାର, ତାମିଲ୍, ତେଲଗୁ, ଓଡ଼ିଆ, ବଙ୍ଗାଳୀ ଏବଂ ଆସାମୀ ସମସ୍ତ ଚାଷୀମାନଙ୍କର ଧାନ ପ୍ରଧାନ ଫସଲ । ଭାରତର ଉପରୋକ୍ତ ନଦୀମାନଙ୍କ ଉପତ୍ୟକା ଠାରୁ ଆରମ୍ଭ କରି ବ୍ରହ୍ମଦେଶର ଇରାବତୀ, ଥାଇଲାଣ୍ଡର ମେନାମ, ଇଣ୍ଡୋଚୀନର ମେକଙ୍ଗ ଓ ଲୋହିତ ନଦୀ ଉପତ୍ୟକାମାନ ଚୀନଦେଶର ଦକ୍ଷିଣ ପୂର୍ବ ଅଞ୍ଚଳ, ଟାଇଓ୍ୱାନ୍ ଦ୍ୱୀପ, ଫିଲିପାଇନ୍ସ ଦ୍ୱୀପପୁଞ୍ଜ, ଜାପାନ, ଇଣ୍ଡୋନେସିଆ ଦ୍ୱୀପପୁଞ୍ଜ ପ୍ରଭୃତି ପୂର୍ବ, ଦକ୍ଷିଣପୂର୍ବ ଏସିଆର ସବୁଦେଶର ଚାଷୀମାନଙ୍କର ଧାନ ଏକମାତ୍ର ପ୍ରଧାନ ଶସ୍ୟ । ୟୁରୋପୀୟ ବିଶେଷଜ୍ଞମାନେ ଏସିଆ ମହାଦେଶର ମୌସୁମୀବାୟୁ ପ୍ରବାହିତ ଦକ୍ଷିଣଭାରତରୁ ଆରମ୍ଭ କରି ଜାପାନ ପର୍ଯ୍ୟନ୍ତ ଏହି ବିରାଟ ଅଞ୍ଚଳକୁ ଏକମାତ୍ର ଫସଲ ଧାନ ଚାଷ ଅଞ୍ଚଳ (rice monoculture area) ଏବଂ ଧାନ ସଭ୍ୟତାର ଦେଶମାନ (rice civilization of monosoon Asia) ବୋଲି ବର୍ଣ୍ଣନା କରିଛନ୍ତି । ଆମ ରାଜ୍ୟ ସହ ଭାରତବର୍ଷର ଦକ୍ଷିଣ ଏବଂ ପୂର୍ବାଞ୍ଚଳ ଲୋକମାନଙ୍କର ସାମାଜିକ ଓ ସାଂସ୍କୃତିକ ଜୀବନ, ଖାଦ୍ୟପେୟ, ଓଷାବାର, ପୁନିଅଁ ପରବ, ପିଠାପଣା କଥା ବିଚାରକୁ ନେଲେ ଆମ ସଭ୍ୟତା ଯେ ଧାନଚାଷ ଉପରେ ଗଠିତ ହୋଇଛି ଏହା ସହଜରେ ଅନୁମେୟ । ପୂଜାପାଇଁ କଳସଟିଏ ବସାଇଲେ ଧାନ ଗଣ୍ଡିଏ ଉପରେ କଳସ ବସୁଛି । ପୁରୋହିତ ଆଶୀର୍ବାଦ କଲେ ହଳଦିମିଶା ଅରୁଆଚାଉଳ ଯଜମାନ ମୁଣ୍ଡରେ ପକାଇ ଆଶୀର୍ବାଦ କରୁଛି; ଅକ୍ଷୟ ତୃତୀୟାରେ ଧାନ ବିହନରେ ଅଖିମୁଠି ଚାଲୁଛି, ଅଗ୍ନି ପୂର୍ଣ୍ଣିମାରେ ଧାନ କିଆରିରେ ଅଗି ପାଉଁଶ ପଡୁଛି । ପୂଜା, ଯଜ୍ଞ, ପିଠାପଣା, ଶ୍ରାଦ୍ଧ, ମହଳା ସବୁଥିରେ ଚାଉଳର ବ୍ୟବହାର । ଅନ୍ନ ଲୋକମାନଙ୍କର ପ୍ରଧାନ ଖାଦ୍ୟ ଏବଂ ଲୋକମାନଙ୍କର ପିଣ୍ଡ ଅନ୍ନମୟ ବୋଲି ଶାସ୍ତ୍ରରେ ଲିଖିତ ହୋଇଛି । ୟୁରୋପର ବହୁ ଲେଖକ ଏ ସବୁ ବିଷୟ ବିଶ୍ଳେଷଣ କରି ଏ ଦେଶମାନଙ୍କର ସଭ୍ୟତା ଧାନ ଉପରେ ଆଧାରିତ ବୋଲି କହୁଛନ୍ତି । ଧାନ କିପରି ଶସ୍ୟ, କେଉଁ ଦେଶରେ ପ୍ରଥମେ ଆଦିମ କାଳରେ ଧାନଚାଷ ଆରମ୍ଭ ହୋଇଥିଲା ଏବଂ ବର୍ତ୍ତମାନ ଯୁଗରେ ବିଭିନ୍ନ ଦେଶରେ ଧାନଚାଷ ପ୍ରଣାଳୀ ଏବଂ ବିଭିନ୍ନ ବୈଜ୍ଞାନିକ ପଦ୍ଧତି ଅବଲମ୍ବନରେ ଏ ଶସ୍ୟର ବିଭିନ୍ନ ଦେଶରେ ଉତ୍ପାଦନ କିପରି ବଢ଼ିପାରୁଛି, ଏ ଶସ୍ୟର ଅର୍ଥନୈତିକ ସମସ୍ୟା, ଦରଦାମ, ବାଣିଜ୍ୟ ବ୍ୟବସାୟ ପ୍ରଭୃତି ଉପରେ ହଜାର ହଜାର ସଂଖ୍ୟାରେ ଅତି ଉପାଦେୟ ବହି

ବିଭିନ୍ନ ଭାଷାରେ ଲେଖା ହୋଇଛି । ଡକ୍ଟର ରେବର୍ଣ୍ଣଙ୍କ ପରାମର୍ଶରେ ମୌସୁମୀ ବାୟୁ ପ୍ରବାହିତ ଏସିଆ ମହାଦେଶର ପ୍ରଧାନ ଦେଶମାନଙ୍କରେ ଧାନ ଉତ୍ପାଦନ ଓ ଦରଦାମର ଅର୍ଥନୈତିକ ଦିଗ ମୋର ଥିସିସ୍ ବିଷୟ ନେଇଥିଲି । ସେହି ଗବେଷଣାକ୍ରମରେ ମୁଁ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ, ବ୍ରିଟିଶ ମ୍ୟୁଜିଅମ, ଇଣ୍ଡିଆ ହାଉସ୍ ଏବଂ ଲଣ୍ଡନ ସ୍ଥିତ ବିଭିନ୍ନ ଦୂତାବାସର ଲାଇବ୍ରେରୀମାନଙ୍କରେ ଶହ ଶହ ସଂଖ୍ୟାରେ ବହି, ସରକାରୀ ଏବଂ ବେସରକାରୀ ରିପୋର୍ଟ, ପ୍ରକାଶିତ ସରକାରୀ ପରିସଂଖ୍ୟାନ ତଥ୍ୟ ଜଙ୍ଗଲରେ ପ୍ରବେଶ କଲି । ସେ ବହି, ରିପୋର୍ଟ ସବୁ ପଢ଼ି, ସେମାନଙ୍କରୁ ତଥ୍ୟ ସଂଗ୍ରହ କରି ଏବଂ ସେଗୁଡ଼ିକର ବିଭିନ୍ନ ଦିଗ ବିଶ୍ଳେଷଣ କରି ମୋର ଥିସିସ୍ ପ୍ରସ୍ତୁତ କରିବାରେ ଦୁଇବର୍ଷ କାଳ କଟାଇଲି ।

ମୁଁ ଗବେଷଣା କରିବାପାଇଁ ନେଇଥିବା ଦେଶମାନଙ୍କରେ କୃଷି ଓ କୃଷକମାନଙ୍କର ପୃଷ୍ଠଭୂମି ବିଷୟରେ ତଥ୍ୟ ସଂଗ୍ରହ ସହିତ ସେହି ଦେଶମାନଙ୍କର ଗବେଷଣା ସମୟର ପଚାଶ ବର୍ଷ ମଧ୍ୟରେ ସେ ଦେଶମାନଙ୍କରେ ଜନସଂଖ୍ୟା ବୃଦ୍ଧି, ଚାଷଜମି ବୃଦ୍ଧି, ଉତ୍ପାଦନ ହାର ଏବଂ 'ଉତ୍ପାଦନ ପରିମାଣର ବୃଦ୍ଧି ହ୍ରାସ ଏବଂ ଉତ୍ପାଦିତ ଶସ୍ୟମାନଙ୍କର ଦରଦାମ ବିଷୟରେ ପରିସଂଖ୍ୟାନ ତଥ୍ୟ ସଂଗ୍ରହ କଲି । ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ଗୋଟିଏ ମେସିନ୍ ରୁମ ଅଛି । ସେଥିରେ ସଂଖ୍ୟାର ମିଶାଣ, ଫେଡ଼ାଣ, ଗୁଣନ, ହରଣ, ବର୍ଗମୂଳ ପ୍ରଭୃତି କରିବାପାଇଁ ଗୁଡ଼ିଏ କାଲକୁଲେଟିଂ ମେସିନ୍ ଅଛି । ସେ ମେସିନ୍ ବ୍ୟବହାର କରିବାକୁ ଇଚ୍ଛୁକ ଛାତ୍ରଛାତ୍ରୀମାନେ ସ୍କୁଲ ଅଫିସରେ କସନ୍ ମନି ଦେଇ ସେ ରୁମର ଗୋଟିଏ ଚାବି ନେଇଥାନ୍ତି ଏବଂ ନିଜ ସୁବିଧାରେ ସେ ମେସିନ୍ ବ୍ୟବହାର କରନ୍ତି । ମୁଁ ସେହିପରି ଗୋଟିଏ ଚାବି ନେଇଥିଲି । ସେହି ରୁମରେ ବହୁଦିନ ଘଣ୍ଟା ଘଣ୍ଟା ବସି ମୁଁ ସଂଗ୍ରହ କରିଥିବା ପରିସଂଖ୍ୟାନଗତ ତଥ୍ୟମାନଙ୍କ ମଧ୍ୟରେ ସମ୍ବନ୍ଧ ବିଷୟ ବିଶ୍ଳେଷଣ କଲି । ସେହି ବିଶ୍ଳେଷଣର ଫଳ ଉପରେ ବହୁ ଟେବୁଲ, ଗ୍ରାଫ୍, ଚାର୍ଟ ପ୍ରସ୍ତୁତ କରି ଥିସିସ୍ ଲେଖୁଥିଲି ଏବଂ ପର୍ଯ୍ୟାୟକ୍ରମେ ଥିସିସ୍‌ର ବିଭିନ୍ନ ଅଧ୍ୟାୟ ରେବର୍ଣ୍ଣଙ୍କୁ ଦେଖିବାକୁ ଦେଉଥିଲି । ସେ ଜଣେ ବିଶିଷ୍ଟ ଗବେଷକ ଭାବରେ ସେଗୁଡ଼ିକ ପରୀକ୍ଷା ଓ ନିରୀକ୍ଷଣ କରି ସେଗୁଡ଼ିକୁ ଅନୁମୋଦନ କରୁଥିଲେ ବା କେତେକ ସଂଶୋଧନ ନିମିତ୍ତ ପରାମର୍ଶ ଦେଉଥିଲେ ।

୧୯୫୫ ମସିହା ଜାନୁଆରୀ ମାସରେ ଭାରତ ସରକାର ମୋତେ ଦୁଇବର୍ଷ ପାଇଁ ଦେଇଥିବା ସମୟ ଶେଷ ହୋଇଗଲା । ସେତେବେଳକୁ ଥିସିସ୍ କାମ ଶେଷ ହୋଇ ନ ଥିଲା । ସ୍କଲାରସିପ୍ ସମୟ ଆଉ ଛ'ମାସ ପାଇଁ ବୃଦ୍ଧି କରିବାନିମିତ୍ତ ସୁପାରିସ କରିବାକୁ ମୁଁ ଡକ୍ଟର ରେବର୍ଣ୍ଣଙ୍କୁ ଅନୁରୋଧ କଲି । ସେ ଥିସିସ୍‌ର ପ୍ରଗତି ଦେଖି ସ୍କଲାରସିପ୍ ସମୟ ଆଉ କେବଳ ପାଞ୍ଚ ମାସ ବଢ଼ାଇ ଦେବାକୁ ସୁପାରିସ କଲେ ଏବଂ ତାଙ୍କ ସୁପାରିସ ଭାରତ ସରକାର ଗ୍ରହଣ କଲେ । ଡକ୍ଟର ରେବର୍ଣ୍ଣଙ୍କର କାର୍ଯ୍ୟର ରୀତି ସେହିପରି । ସ୍କଲାରସିପ୍ ସମୟ ଛଅମାସ ବଢ଼ାଇ ଦେଇଥିଲେ ମୁଁ ପରୀକ୍ଷା ପରେ କୋଡ଼ିଏ ପଚିଶ ଦିନ ସମୟ

ପାଇଥାନ୍ତି ଏବଂ ସ୍କଟଲାଣ୍ଡ ଓ ୱେଲସ ପ୍ରଭୃତି ଅଞ୍ଚଳ ବୁଲି ଦେଖିଥାନ୍ତି । ପାଞ୍ଚମାସ ବୃଦ୍ଧି ପାଇଁ ସୁପାରିସ କଲେ । ତାହାଦ୍ୱାରା ମୋର ଥିସିସ୍ ଉପରେ ମୌଖିକ ପରୀକ୍ଷା ସରିବାର ସାତଦିନ ପରେ ମୁଁ ଭାରତ ଫେରିଲି । ସେତେବେଳକୁ ଲଣ୍ଡନ ବିଶ୍ୱବିଦ୍ୟାଳୟ ମୋର ପରୀକ୍ଷା ଫଳ ବିଧିବଦ୍ଧ ଭାବରେ ଘୋଷଣା କରି ନ ଥାଏ ।

ମୁଁ ଲଣ୍ଡନରେ ଦୁଇବର୍ଷ ପାଞ୍ଚ ମାସ ରହିବା ସମୟରେ ଛୁଟିଦିନମାନଙ୍କ ବ୍ୟତୀତ ପ୍ରାୟ ସବୁ ସମୟ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ ଏବଂ ଲଣ୍ଡନ ସହରରେ ବିଭିନ୍ନ ଲାଇବ୍ରେରୀରେ ପଢ଼ାପଢ଼ିରେ କଟାଉଥିଲି । ଇଂଲଣ୍ଡର ବିଭିନ୍ନ ଅଞ୍ଚଳ ବା ୟୁରୋପର ବିଭିନ୍ନ ଦେଶ ବୁଲିବା ପାଇଁ ମୋର ସମୟ କିମ୍ବା ସମ୍ବଳ ନ ଥିଲା । କେବଳ ୧୯୫୪ ମସିହା ଗ୍ରୀଷ୍ମଛୁଟିରେ ଆଠ ଦଶ ଦିନ ପାଇଁ ପ୍ୟାରିସ୍ ଯାଇଥିଲି । ସ୍କଲାରସିପ୍ ଟଙ୍କାରେ ଯେକୌଣସିମତେ ସର୍ବନିମ୍ନ ଦୈନନ୍ଦିନ ଖର୍ଚ୍ଚଟା ଚଳି ଯାଉଥିଲା । ବିଭିନ୍ନ ସ୍ଥାନ ବୁଲି ଦେଖିବା, ସିନେମା ଥିଏଟର ଦେଖିବା କିମ୍ବା ଭଲ ରେସ୍ତୋରାଁମାନଙ୍କରେ ଖିଆପିଆ କରିବାକୁ ପାଖରେ ପଇସା ନ ଥିଲା । ଆମେ ଶସ୍ତା ସ୍ଥାନରେ ରହିବାକୁ ଏବଂ ଶସ୍ତା ଖାଦ୍ୟ ଖାଇବାକୁ ବାଧ ହେଉଥିଲୁ ।

ପିଏଚ୍.ଡି. ଡିଗ୍ରୀ ପାଇଁ ମୌଖିକ ପରୀକ୍ଷା ସରିବାର ସପ୍ତାହକ ପରେ ଯେଉଁ ପୋଲାଣ୍ଡ ଦେଶର ବାତୋରୀ ଜାହାଜରେ ପ୍ରଥମେ ଲଣ୍ଡନ ଯାଇଥିଲି ସେହି ଜାହାଜରେ ଭାରତ ଫେରିଆସିଲି । ବମ୍ବେ ସହରର ସେହି ସିପ୍ ହୋଟେଲରେ ୧୯୫୫ ମସିହା ମଇ ମାସ ମଧ୍ୟଭାଗରେ ପହଞ୍ଚି ଦୁଇଦିନ ପରେ ସେଠାରୁ ବମ୍ବେ ମେଲ୍‌ରେ କଟକ ଫେରିଆସିଲି । କଟକ ଫେରିଆସିବାର ବେଶିଦିନ ଆଗରୁ ଡି.ପି.ଆଇ.ଙ୍କ ପାଖକୁ ଲେଖି ନ ଥିବାରୁ ପହଞ୍ଚିବାକ୍ଷଣି ସେ ମୋତେ ରେଭେନ୍ସା କଲେଜରେ ଅବସ୍ଥାପିତ କରି ପାରି ନ ଥିଲେ । ସେତେବେଳେ ଗ୍ରୀଷ୍ମଛୁଟିରେ କଲେଜ ବନ୍ଦ ଥାଏ ଏବଂ ସେଥିରେ କୌଣସି ପୋଷ୍ଟ ଖାଲି ନ ଥାଏ । ଡକ୍ଟର ବଳଭଦ୍ର ପ୍ରସାଦ ସେତେବେଳେ ଡି.ପି.ଆଇ. ଥିଲେ । ସେ ମୋତେ ଛୁଟିରେ କିଛିଦିନ ପାଇଁ ଶୈଳବାଳା ମହିଳା କଲେଜରେ ଅବସ୍ଥାପିତ କଲେ । ଛୁଟି ପରେ ରେଭେନ୍ସା କଲେଜରେ ଯୋଗ ଦେଲି । ଗାଁରୁ ପିଲାମାନେ କଟକ ଆସିଲେ ଏବଂ ରେଭେନ୍ସା କଲେଜ ହତାରେ କୌଣସି ଘର ଖାଲି ନ ଥିବାରୁ ପୁଣି ନୂଆବଜାରର ସେହି ଗିରିଧାରୀ ସାହୁଙ୍କ ଗୋଟିଏ ଘରେ କିଛିକାଳ ରହିଲୁ । ସେତେବେଳେ ରେଭେନ୍ସା କଲେଜର ରସାୟନ ଅଧ୍ୟାପକ ମୋର ବନ୍ଧୁ ରାଜକିଶୋର ମିଶ୍ର କଲେଜ ହତାରେ ମାଲଗୋଦାମ ପାଖରେ ଗୋଟିଏ ଘରେ ଏକାଟିଆ ରହୁଥିଲେ । ଘରଟା ବଡ଼ ଥିଲା ଏବଂ ସେ ଏକାଟିଆ ରହୁଥିବାରୁ କେତେଗୋଟି କୋଠରି ଖାଲି ପଡ଼ିଥିଲା । ସେହି ଘରେ ଦୁଇ ତିନି ଗୋଟି କୋଠରିରେ ସେ ମୋତେ ରହିବାକୁ କହିଲେ । ଗିରିଧାରୀ ସାହୁଙ୍କ ଘର ଅପେକ୍ଷା ତାହା ଅଧିକ ସୁବିଧାଜନକ ଥିବାରୁ ଆମେ ସେହି ଘରେ ରହିଲୁ । ବର୍ଷକ ପରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରାମ୍ୟ ଅର୍ଥନୀତି ବିଭାଗରେ ରିଡ଼ର ଭାବରେ ଯୋଗ ଦେବାରୁ ରେଭେନ୍ସା କଲେଜର କୌଣସି ଘର ପାଇବାକୁ ହକ୍‌ଦାର ନ ଥିଲି । ସୁତରାଂ ରାଜୁବାବୁଙ୍କ ସଙ୍ଗରେ ସେହି ଘରେ ଆମେ ଚାରିବର୍ଷ ରହିଗଲୁ ।

# ଉତ୍କଳ ବିଶ୍ୱବିଦ୍ୟାଳୟ

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ୧୯୪୩ ମସିହା ଅଗଷ୍ଟ ମାସ ଦୁଇ ତାରିଖରେ ଉତ୍କଳ ବିଶ୍ୱବିଦ୍ୟାଳୟ ଆଇନ ଓଡ଼ିଶା ବିଧାନସଭାରେ ଗୃହୀତ ହୋଇଥିଲା । ସେତେବେଳେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଓଡ଼ିଶାର ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ଥିଲେ ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ମନ୍ତ୍ରିମଣ୍ଡଳରେ ଶିକ୍ଷାମନ୍ତ୍ରୀ ଥିଲେ । ତାହା ପୂର୍ବରୁ ଓଡ଼ିଶା ଡିଭିଜନ ଏବଂ ଓଡ଼ିଶା ଗଡ଼ଜାତମାନଙ୍କର ସ୍କୁଲ ଓ କଲେଜମାନ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା ଏବଂ ଦକ୍ଷିଣ ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଜିଲ୍ଲାମାନଙ୍କର ସ୍କୁଲ କଲେଜ ସବୁ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ବିଶ୍ୱନାଥ ଦାଶ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିବାବେଳେ ଓଡ଼ିଶାରେ ଗୋଟିଏ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ କରି ପ୍ରଦେଶର ସବୁ ସ୍କୁଲ ଓ କଲେଜକୁ ତା ଅଧୀନରେ ରଖିବାକୁ ପରିକଳ୍ପନା କରାଯାଇଥିଲା ଏବଂ ସେ ବିଷୟ ଅନୁଧ୍ୟାନ କରି ରିପୋର୍ଟ ଦେବାକୁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଟି ନିଯୁକ୍ତ କରାଯାଇଥିଲା । ସେ କମିଟି ସେହି ମନ୍ତ୍ରିମଣ୍ଡଳ ସମୟରେ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ସୁପାରିସ କରି ରିପୋର୍ଟ ଦେଇଥିଲେ । ମାତ୍ର ତାହାପରେ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବାରୁ ଏବଂ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବାରୁ ବିଶ୍ୱବିଦ୍ୟାଳୟ ସ୍ଥାପନ ସମ୍ଭବ ହୋଇ ନ ଥିଲା । ତେଣୁ ୧୯୪୩ ମସିହାରେ ପାରଳା ମହାରାଜାଙ୍କ ମିଳିତ ମନ୍ତ୍ରିମଣ୍ଡଳ ସମୟରେ ବିଶ୍ୱବିଦ୍ୟାଳୟ ଆଇନ ପାସ୍ ହୋଇଥିଲା । ଆଇନ ପାସ ହେବାର ପ୍ରାୟ ଚାରି ମାସ ପରେ ୧୯୪୩ ମସିହା ନଭେମ୍ବର ମାସ ୨୭ ତାରିଖରେ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସର ଓ୍ୟାର୍ଡେନ୍‌ଙ୍କ ବାସଗୃହ ପାଇଁ ଉଦ୍ଦିଷ୍ଟ ଘରେ ବିଶ୍ୱବିଦ୍ୟାଳୟ ଅଫିସ୍ ଆରମ୍ଭ ହୋଇଥିଲା । ସେହି ଦିନଟି ଆଜିଯାଏ ବିଶ୍ୱବିଦ୍ୟାଳୟ ଫାଉଣ୍ଡେସନ ଡେ ବା ପ୍ରତିଷ୍ଠା ଦିବସ ରୂପେ ପାଳିତ ହେଉଛି । ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜା ସେ ବର୍ଷର ଡିସେମ୍ବର ମାସ ୧୬ ତାରିଖରେ ଯୋଗ ଦେଇଥିଲେ । ସେ ରେଭେନ୍ସା କଲେଜର ପ୍ରିନ୍ସିପାଲ କାର୍ଯ୍ୟ ସହିତ ବିଶ୍ୱବିଦ୍ୟାଳୟର କୁଳପତି କାର୍ଯ୍ୟ କରିବାକୁ ନିଯୁକ୍ତ ହୋଇଥିଲେ ଏବଂ ସେଥିପାଇଁ ସ୍ୱତନ୍ତ୍ର ଦରମା ପାଉ ନ ଥିଲେ । ପୂର୍ବରୁ ରେଭେନ୍ସା କଲେଜରେ ଇଂରାଜୀ ପ୍ରଫେସର ଥିବା ଶ୍ରୀ ଭି.ଭି. ଜନ୍ ବିଶ୍ୱବିଦ୍ୟାଳୟର ପ୍ରଥମ ରେଜିଷ୍ଟ୍ରାର ହୋଇଥିଲେ ।

ମୁଁ ଓ ମୋର ସହପାଠୀମାନେ ଉତ୍କଳ ବିଶ୍ୱବିଦ୍ୟାଳୟରେ ମୋଟେ ପଢ଼ି ନାହୁଁ । ଆମେ ଏମ୍.ଏ. ପଢ଼ିବା ଶେଷ ପର୍ଯ୍ୟନ୍ତ ଓଡ଼ିଶା ଡିଭିଜନର ସବୁ ସ୍କୁଲ କଲେଜ ପାଟନା

ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଆମେ ପାଟନା ବିଶ୍ୱବିଦ୍ୟାଳୟରୁ ୧୯୪୨ ମସିହାରେ ଏମ୍.ଏ. ପାସ୍ କରିବା ପରବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ ଆରମ୍ଭ ହୋଇଥିଲା । ମାତ୍ର ଆମେ ୧୯୪୪ ମସିହାରେ ଶିକ୍ଷା ବିଭାଗରେ ଚାକିରି ଆରମ୍ଭ କରିବା ସମୟକୁ ଓଡ଼ିଶା ପ୍ରଦେଶର ସବୁ ନୂତନ ଏବଂ ପୁରାତନ ସ୍କୁଲ କଲେଜ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ କାର୍ଯ୍ୟ କରୁଥିଲା । ୧୯୪୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରଥମେ ମାଟ୍ରିକୁଲେସନ୍ ଠାରୁ ଏମ୍.ଏ., ଏମ୍.ଏସ୍‌ସି. ପର୍ଯ୍ୟନ୍ତ ସବୁ ପରୀକ୍ଷା ଆରମ୍ଭ କରିଥିଲା । ଘଟଣାଚକ୍ରରେ ଚାକିରି ଆରମ୍ଭରୁ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲି ଏବଂ ସମଗ୍ର ଚାକିରିକାଳ ୩୬ ବର୍ଷ ମଧ୍ୟରୁ ପ୍ରାୟ ତେଇଶି ବର୍ଷ ବିଶ୍ୱବିଦ୍ୟାଳୟ ଅଧୀନରେ ପ୍ରତ୍ୟକ୍ଷ ଭାବରେ ଚାକିରି କରିଥିଲି । ସ୍ଥୂଳତଃ ୧୯୪୪ ମସିହାଠାରୁ ୧୯୮୦ ମସିହା ପର୍ଯ୍ୟନ୍ତ ୩୬ ବର୍ଷକାଳ ମୁଁ ବିଶ୍ୱବିଦ୍ୟାଳୟର କାର୍ଯ୍ୟର ପ୍ରତ୍ୟକ୍ଷଦର୍ଶୀ ଏବଂ ପ୍ରତ୍ୟକ୍ଷ ଅନୁଭବୀ ।

୧୯୪୩ ମସିହାଠାରୁ ୧୯୪୮ ମସିହା ପର୍ଯ୍ୟନ୍ତ ପ୍ରଥମ ପାଞ୍ଚବର୍ଷ ମଧ୍ୟରେ ବିଶ୍ୱବିଦ୍ୟାଳୟର ନିୟମ ଏବଂ ଷ୍ଟାଚ୍ୟୁଟସ୍ ଓ ରେଗୁଲେସନ୍ ପ୍ରସ୍ତୁତ ହେଲା । ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ସିନେଟ୍, ଏକାଡ଼େମିକ କାଉନ୍‌ସିଲ୍, ସିଣ୍ଡିକେଟ୍, ବୋର୍ଡ଼ସ୍ ଅଫ୍ ଷ୍ଟଡ଼ିଜ ପ୍ରଭୃତି ସଂଗଠିତ ହେଲା । ବିଶ୍ୱବିଦ୍ୟାଳୟର କର୍ମଚାରୀମାନେ ନିଯୁକ୍ତ ହେଲେ ଏବଂ ବିଶ୍ୱବିଦ୍ୟାଳୟ ଅଫିସର ବିଭିନ୍ନ ବିଭାଗମାନ ଶୃଙ୍ଖଳିତ ଭାବରେ କାର୍ଯ୍ୟ କଲେ । ସେତେବେଳେ ବିଶ୍ୱବିଦ୍ୟାଳୟ ଅଧୀନରେ ସ୍ନାତକ କିମ୍ବା ସ୍ନାତକୋତ୍ତର ସ୍ତରରେ ପ୍ରତ୍ୟକ୍ଷ ଶିକ୍ଷାଦାନ ବ୍ୟବସ୍ଥା ନ ଥିଲା । ସବୁ ଶିକ୍ଷାଦାନ ପାଇଁ ବିଶ୍ୱବିଦ୍ୟାଳୟ ବିଭିନ୍ନ ବିଷୟ ପାଇଁ ପାଠ୍ୟକ୍ରମମାନ ପ୍ରସ୍ତୁତ କରୁଥିଲା ଏବଂ ପରୀକ୍ଷାମାନ ପରିଚାଳନା କରୁଥିଲା । ପାଠ୍ୟକ୍ରମ ପ୍ରସ୍ତୁତି ପାଇଁ ଏବଂ ବିଶ୍ୱବିଦ୍ୟାଳୟ ପରିଚାଳନା ପାଇଁ ସିନେଟ୍, ସିଣ୍ଡିକେଟ୍, ଏକାଡେମିକ କାଉନସିଲ୍ ଏବଂ ବୋର୍ଡ଼ସ୍ ଅଫ୍ ଷ୍ଟଡ଼ିଜମାନଙ୍କର ସଭା କରାଇବା ଏବଂ ଡିଗ୍ରୀମାନ ବିତରଣ ପାଇଁ ସମାବର୍ତ୍ତନ ସଭା କରାଇବା ପ୍ରଭୃତି ବିଶ୍ୱବିଦ୍ୟାଳୟର ଦାୟିତ୍ୱ ଥିଲା । ବିଶ୍ୱବିଦ୍ୟାଳୟ ଆରମ୍ଭ ହେବାବେଳେ ତା ଅଧୀନରେ ମୋଟେ ପାଞ୍ଚଗୋଟି କଲେଜ ଥିଲା । ତାର ପରବର୍ଷ ପୁରୀ, ବାଲେଶ୍ୱର ଓ ସମ୍ବଲପୁର ଠାରେ ସରକାରୀ ପ୍ରଥମଶ୍ରେଣୀ କଲେଜ ଏବଂ ବଲାଙ୍ଗିର, କଟକ ପ୍ରଭୃତି ସ୍ଥାନରେ ବେସରକାରୀ କଲେଜମାନ ସ୍ଥାପିତ ହୋଇଥିଲା । କ୍ରମେ କଲେଜ ସଂଖ୍ୟା ଅଧିକ ହୋଇଥିଲା । ପ୍ରଥମ ପାଞ୍ଚବର୍ଷ ଯାକ ୧୯୪୩ ମସିହା ଡିସେମ୍ବର ମାସ ୧୬ ତାରିଖ ଠାରୁ ୧୯୪୮ ମସିହା ସେପ୍ଟେମ୍ବର ମାସ ୩୦ ତାରିଖ ପର୍ଯ୍ୟନ୍ତ ପରିଜା ବିଶ୍ୱବିଦ୍ୟାଳୟର ଅବୈତନିକ କୁଳପତି ଥିଲେ, ଶ୍ୟାମଚନ୍ଦ୍ର ତ୍ରିପାଠୀ ଚାରିବର୍ଷରୁ ଅଧିକ କାଳ ଡି.ପି. ଆଇ. ଥିଲେ ଏବଂ ଭି.ଭି.ଜନ୍. ବର୍ଷେ ଦୁଇବର୍ଷ ଏବଂ ତାପରେ ଗୋକୁଳ ଚନ୍ଦ୍ର ଶତପଥୀ ରେଜିଷ୍ଟ୍ରାର ଥିଲେ । ସେହିମାନଙ୍କ ତତ୍ତ୍ୱାବଧାନରେ ବିଶ୍ୱବିଦ୍ୟାଳୟର ସମସ୍ତ କାର୍ଯ୍ୟ ନିୟମିତ ଭାବରେ କରାଯାଇ ପାରିଥିଲା । ବିଶ୍ୱବିଦ୍ୟାଳୟ ଅଫିସ ଅଳ୍ପ କେତେମାସ ରେଭେନ୍ସା କଲେଜରେ କାର୍ଯ୍ୟ କରିଥିଲା । ତାପରେ ପାଞ୍ଚବର୍ଷରୁ ଊର୍ଦ୍ଧ୍ୱ ସମୟ ବର୍ଦ୍ଧମାନ କୋଠିରେ କାର୍ଯ୍ୟ କରିଥିଲା ।

ମୁଁ ୧୯୪୪ ମସିହାଠାରୁ ୧୯୫୨ ମସିହା ପର୍ଯ୍ୟନ୍ତ ସମ୍ବଲପୁର କଲେଜରେ ଲେକଚରର୍ ଥିଲି ଏବଂ ୧୯୪୭ ମସିହାରୁ ୧୯୫୨ ମସିହା ପର୍ଯ୍ୟନ୍ତ ସେହି କଲେଜର ପ୍ରତିନିଧି ରୂପେ ବିଶ୍ୱବିଦ୍ୟାଳୟର ସିନେଟର ସଭ୍ୟ ହୋଇଥିଲି । ସେ କଲେଜର ଅର୍ଥନୀତି ବିଭାଗର ମୁଖ୍ୟ ହୋଇଥିବାରୁ ବିଶ୍ୱବିଦ୍ୟାଳୟ ଅର୍ଥନୀତି ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍‌ର ଏବଂ ପରୀକ୍ଷା କଣ୍ଡକ୍ଟିଂ ବୋର୍ଡ଼ ପ୍ରଭୃତିର ସଭ୍ୟ ହୋଇଥିଲି । ସେ ସବୁ ସଂଗଠନର କାର୍ଯ୍ୟରେ ଯୋଗ ଦେବାକୁ ମୁଁ ପ୍ରତିବର୍ଷ ଅନେକଥର ବିଶ୍ୱବିଦ୍ୟାଳୟ ଅଫିସକୁ ଆସୁଥିଲି ଏବଂ ବିଶ୍ୱବିଦ୍ୟାଳୟର ଅଧିକାଂଶ କର୍ମଚାରୀଙ୍କ ସହିତ ପରିଚିତ ହୋଇଥିଲି ।

୧୯୪୮ ମସିହାରେ ଓଡ଼ିଶା ସରକାର ବିଶ୍ୱବିଦ୍ୟାଳୟରେ ଦରମା ପାଇ ପୂର୍ଣ୍ଣ ସମୟ ବିନିଯୋଗ କରି କୁଳପତି ନିଯୁକ୍ତ କରିବା ପାଇଁ ବ୍ୟବସ୍ଥା କଲେ । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ରାଜ୍ୟର ଏକମାତ୍ର ବିଶ୍ୱବିଦ୍ୟାଳୟ ଥିଲା । ବିଶ୍ୱବିଦ୍ୟାଳୟ ଆଇନ୍‌ରେ କୁଳପତି ନିଯୁକ୍ତି ପ୍ରଣାଳୀରେ ବ୍ୟବସ୍ଥା ହେଲା । ସେତେବେଳର ନିୟମ ଅନୁସାରେ ବିଶ୍ୱବିଦ୍ୟାଳୟ ସିନେଟ୍ ସର୍ବୋଚ୍ଚ ଭୋଟ ପାଇଥିବା ତିନିଜଣ ବ୍ୟକ୍ତିଙ୍କ ନାମ କୁଳାଧିପତିଙ୍କୁ ସୁପାରିସ କରିବ ଏବଂ କୁଳାଧିପତି ସେମାନଙ୍କ ମଧ୍ୟରୁ ଜଣକୁ କୁଳପତି ରୂପେ ନିଯୁକ୍ତ କରିବେ । ୧୯୪୮ ମସିହା ସିନେଟ୍ ଭୋଟ ଅନୁସାରେ ଚିନ୍ତାମଣି ଆଚାର୍ଯ୍ୟ ସର୍ବାଧିକ ଭୋଟ ପାଇଥିଲେ ଏବଂ ଭୋଟ ଅନୁସାରେ ପରିଜାଙ୍କ ନାମ ଦ୍ୱିତୀୟ ସ୍ଥାନରେ ଥିଲା । ମୁଁ ସେତେବେଳେ ସିନେଟ୍‌ରେ ସଭ୍ୟ ଥିଲି । ଆମେ ଜାଣିପାରିଥିଲୁ ଯେ ଚିନ୍ତାମଣି ଆଚାର୍ଯ୍ୟ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବରେ ବହୁ ପ୍ରଚାର କରିଥିଲେ । ପରିଜା ନିଜର ମର୍ଯ୍ୟାଦା ଓ ସ୍ୱାଭିମାନ ହେତୁ ବିଶେଷ ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରଚାର କରି ପାରି ନ ଥିଲେ । ସିନେଟ୍‌ରେ ସର୍ବାଧିକ ଭୋଟ ପାଇଥିବାରୁ ରାଜ୍ୟପାଳ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟଙ୍କୁ କୁଳପତି ରୂପେ ନିଯୁକ୍ତ କରିଥିଲେ ଏବଂ ୧୯୪୮ ମସିହା ଅକ୍ଟୋବର ମାସ ପହିଲା ତାରିଖରୁ ସେ ପଦରେ ଯୋଗ ଦେଇଥିଲେ । ପରିଜା ନିଜକୁ ଅପମାନିତ ବୋଧ କରି ମନଦୁଃଖ କରିଥିଲେ ଏବଂ ତା'ପରେ ସେ ତିନିବର୍ଷ ବନାରସ ବିଶ୍ୱବିଦ୍ୟାଳୟର ଉପକୁଳପତି (Pro-Vice-chancellor) ରୂପେ କାର୍ଯ୍ୟ କରିବାକୁ ବନାରସ ଚାଲି ଯାଇଥିଲେ ।

ଚିନ୍ତାମଣି ଆଚାର୍ଯ୍ୟ କଟକରେ ଜଣେ ନାମଜାଦା ଫୌଜଦାରୀ ଓକିଲ ଥିଲେ । ଜଣେ ଶିକ୍ଷାବିତ୍ ଭାବରେ ତାଙ୍କର ସୁନାମ ନ ଥିଲା । ମାତ୍ର ସେ କଟକର ଜଣେ ଧନୀ ଓ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ । ବିଶ୍ୱବିଦ୍ୟାଳୟର ଉନ୍ନତି କରିବାପାଇଁ ତାଙ୍କର ବିଶେଷ ଆଗ୍ରହ ଥିଲା । ସେତେବେଳେ ବିଶ୍ୱବିଦ୍ୟାଳୟର ସମ୍ବଳ ଅତି ସୀମିତ ଥିଲା ଏବଂ ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍ ଓ କୋଠାବାଡ଼ି କିଛି ନ ଥିଲା କିମ୍ବା କୌଣସି ଶିକ୍ଷାଦାନୀ ସ୍ନାତକ ଓ ସ୍ନାତକୋତ୍ତର ବିଭାଗ ବିଶ୍ୱବିଦ୍ୟାଳୟର ପରିଚାଳନା ଅଧୀନରେ ନ ଥିଲା । ସେତେବେଳେ ମଧ୍ୟ କେନ୍ଦ୍ର ସରକାରଙ୍କର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ନ ଥିଲା । ଚିନ୍ତାମଣି ଆଚାର୍ଯ୍ୟ ବିଶ୍ୱବିଦ୍ୟାଳୟର ସମ୍ବଳ ବୃଦ୍ଧି କରିବା ପାଇଁ ରାଜା, ମହାରାଜା,

ଜମିଦାର ଓ ସର୍ବସାଧାରଣରୁ ଚାନ୍ଦା ସଂଗ୍ରହ କରିବାକୁ ଯତ୍ନ କରିଥିଲେ । ତାଙ୍କରି ସମୟରେ ମୟୂରଭଞ୍ଜ ମହାରାଜାଙ୍କ ଠାରୁ ବିଶ୍ୱବିଦ୍ୟାଳୟ ଛାପାଖାନା ଦାନସ୍ୱରୂପ ମିଳିଥିଲା ଏବଂ ବିଶ୍ୱବିଦ୍ୟାଳୟ ତୁଳସୀପୁର ଠାରେ ଗୋଟିଏ ଜାଗା ଓ ଘର କିଣି ସେ ଛାପାଖାନା ସ୍ଥାପିତ କରିଥିଲେ । ସେ ପ୍ରେସ୍ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କ ନାମରେ ନାମିତ ହୋଇଥିଲା । ସେତେବେଳେ ସେ ଛାପାଖାନାର ମୂଲ୍ୟ ଆଠ ଲକ୍ଷ ଟଙ୍କା ଥିଲା । ତାଙ୍କରି ସମୟରେ ଆଇନ୍ କଲେଜ ସରକାରଙ୍କ ଅଧୀନରୁ ବିଶ୍ୱବିଦ୍ୟାଳୟର ପରିଚାଳନା ଅଧୀନକୁ ଆସିଥିଲା । ହରେକୃଷ୍ଣ ମହତାବ ସେ ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ଆସଫ୍ ଅଲି ରାଜ୍ୟପାଳ ଥିଲେ । ୧୯୪୯ ମସିହାରେ ମହତାବଙ୍କ ସୁବର୍ଣ୍ଣ ଜୟନ୍ତୀକମିଟିରେ ଚିନ୍ତାମଣି ଆଚାର୍ଯ୍ୟ ଅଧ୍ୟକ୍ଷ ଥିଲେ ଏବଂ ସାଧାରଣ ଲୋକଙ୍କ ଠାରୁ ଚାନ୍ଦା ସଂଗ୍ରହ କରାଯାଇ ମହତାବଙ୍କ ହାତରେ ଜନ୍ମ ଦିବସରେ ୫୧୦୦୦ ଟଙ୍କାର ଗୋଟିଏ ଥଳି ପ୍ରଦାନ କରାଯାଇଥିଲା । ମହତାବ ସେଥିରୁ ୨୫୦୦୦ ଟଙ୍କା ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାନ କରିଥିଲେ । ଚିନ୍ତାମଣି ଆଚାର୍ଯ୍ୟଙ୍କ ଉଦ୍ୟମରେ ମଧ୍ୟ କଟକ ମାଲଗୋଦାମ ଅଞ୍ଚଳରେ ଜଣେ ଅଟାକଳ ମାଲିକ ତାଙ୍କ ଘର ବିଶ୍ୱବିଦ୍ୟାଳୟକୁ ଦାନ ଦେଇଥିଲେ । ଆଚାର୍ଯ୍ୟଙ୍କ ସମୟରେ ତତ୍କାଳୀନ ଭାରତ ସରକାରଙ୍କ ଶିକ୍ଷାମନ୍ତ୍ରୀ ଆବୁଲ କାଲାମ ଆଜାଦ ଉତ୍କଳ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଦୀକ୍ଷାନ୍ତ ଭାଷଣ ଦେଇଥିଲେ । ଆଚାର୍ଯ୍ୟ ମଧ୍ୟ ଓଡ଼ିଶାର ସାଂସ୍କୃତିକ ଉନ୍ନତି ପାଇଁ ବିଭିନ୍ନ ପଦକ୍ଷେପ ନେଇଥିଲେ । ପ୍ରାୟ ଦୁଇବର୍ଷ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ରେଭେନ୍ସା କଲେଜ ହତାରେ ପାଲା ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ବିଭିନ୍ନ ଓଡ଼ିଆ ପୁସ୍ତକ ପ୍ରକାଶନ ପାଇଁ ମଧ୍ୟ ବିଶ୍ୱବିଦ୍ୟାଳୟ ସାହାଯ୍ୟ କରିଥିଲା । ଚିନ୍ତାମଣି ବାବୁ ୧୯୪୮ ମସିହା ଅକ୍ଟୋବର ପହିଲାରୁ ୧୯୫୧ ମସିହା ଡିସେମ୍ବର ପନ୍ଦର ତାରିଖ ପର୍ଯ୍ୟନ୍ତ ପ୍ରାୟ ତିନିବର୍ଷ ଦୁଇମାସ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ୧୯୫୧ ମସିହା ଅକ୍ଟୋବର ମାସ ପରେ ତାଙ୍କର ପୁନର୍ନିଯୁକ୍ତି ବିଷୟରେ ମତଭେଦ ହେଲା ।

ସେତେବେଳେ ମୁଖ୍ୟମନ୍ତ୍ରୀ ମହତାବ ଏବଂ ରାଜ୍ୟପାଳ ଆସଫ୍ ଅଲିଙ୍କ ମଧ୍ୟରେ ରାଜ୍ୟ ଶାସନର ବିଭିନ୍ନ ବିଷୟରେ ମତଭେଦ ହୋଇଥିଲା । ଚିନ୍ତାମଣି ଆଚାର୍ଯ୍ୟ ମହତାବଙ୍କର ଜଣେ ଦୃଢ଼ ସମର୍ଥକ ଥିଲେ ଏବଂ ସେଥିଯୋଗୁଁ ସେ ତାଙ୍କର ଜୟନ୍ତୀ ସମିତିରେ ଅଧ୍ୟକ୍ଷ ହୋଇଥିଲେ । ରାଜ୍ୟପାଳ କିନ୍ତୁ କୁଳପତିଙ୍କର ସେ ସବୁ କାର୍ଯ୍ୟକୁ ପସନ୍ଦ କରୁ ନ ଥିଲେ । ୧୯୫୧ ମସିହା ଶେଷରେ କୁଳପତି ନିଯୁକ୍ତି ପାଇଁ ସିନେଟ୍‌ରେ ଯେଉଁ ଭୋଟ ହେଲା ସେଥିରେ ଚିନ୍ତାମଣି ଆଚାର୍ଯ୍ୟ ସର୍ବାଧିକ ଭୋଟ ପାଇଥିଲେ ଏବଂ ଡକ୍ଟର ପରଶୁରାମ ମିଶ୍ର ଦ୍ୱିତୀୟ ସ୍ଥାନରେ ଥିଲେ । ରାଜ୍ୟପାଳ ଆଚାର୍ଯ୍ୟଙ୍କୁ ଦ୍ୱିତୀୟବାର ନିଯୁକ୍ତି ନ ଦେଇ ଡକ୍ଟର ପରଶୁରାମ ମିଶ୍ରଙ୍କୁ କୁଳପତି ରୂପେ ନିଯୁକ୍ତ କଲେ । ଡକ୍ଟର ପରଶୁରାମ ମିଶ୍ର ୧୯୫୨ ମସିହା ଫେବୃଆରୀ ମାସ ୧୭ ତାରିଖରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ଯୋଗ ଦେଇଥିଲେ । ସେତେବେଳେପର୍ଯ୍ୟନ୍ତ ମୁଁ ସମ୍ବଲପୁର କଲେଜରେ ଅଧ୍ୟାପକ ଥିଲି ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟର ସଭ୍ୟ ଥିଲି ।

ପରଶୁରାମବାବୁ ୧୯୫୨ ମସିହା ଫେବୃଆରୀ ମାସରୁ ୧୯୫୫ ମସିହା ଅଗଷ୍ଟ ମାସ ୧୫ ତାରିଖ ପର୍ଯ୍ୟନ୍ତ ସାଢ଼େ ତିନିବର୍ଷ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସେ ଜଣେ ସରଳ ଓ ଅମାୟିକ ବ୍ୟକ୍ତି ଥିଲେ ଏବଂ ବିଶ୍ୱବିଦ୍ୟାଳୟର କାର୍ଯ୍ୟ ସବୁ ନିୟମିତ ଭାବରେ କରାଇବାକୁ ଯତ୍ନ କରିଥିଲେ । ସେତେବେଳେ ବିଶ୍ୱବିଦ୍ୟାଳୟ ଅଧୀନରେ କୌଣସି ଶିକ୍ଷାଦାନୀ ବିଭାଗ ନ ଥିବାରୁ ଛାତ୍ର ଗୋଳମାଳର ସୁଯୋଗ ନ ଥିଲା । ପରଶୁରାମବାବୁଙ୍କ ସମୟରେ ବିଶ୍ୱବିଦ୍ୟାଳୟ ଅଫିସ ମଙ୍ଗଳାବାଗରେ ଥିବା ପୁରୁଣା ସର୍କିଟ ହାଉସକୁ ଉଠି ଯାଇଥିଲା ଏବଂ ବର୍ତ୍ତମାନ କୋଠିରେ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ ସ୍ଥାପିତ ହୋଇଥିଲା । ସେ ଘରର ଗୋଟିଏ ଅଂଶ ଏବଂ ହତା ମଧ୍ୟରେ ନିର୍ମିତ ହୋଇଥିବା ଆଉ କେତେକ ଆଜବେଷ୍ଟସ୍ ଛାତ ଘରେ ମଧୁସୂଦନ ଆଇନ୍ କଲେଜର କାର୍ଯ୍ୟ ଚାଲିଥିଲା । ପରଶୁରାମବାବୁ କୁଳପତି ଥିବାବେଳେ ଅଧିକାଂଶ ସମୟ ମୁଁ ଭାରତବର୍ଷରେ ନ ଥିଲି । ୧୯୫୨ ମସିହା ଡିସେମ୍ବର ମାସରୁ ମୁଁ ଲଣ୍ଡନ ଯାଇ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ୧୯୫୫ ମସିହା ମଇ ମାସ ପର୍ଯ୍ୟନ୍ତ ପିଏଚ.ଡ଼ି. ଡିଗ୍ରୀ ପାଇଁ ଗବେଷଣା କରୁଥିଲି । ମୁଁ ୧୯୫୫ ମସିହା ମଇ ମାସରେ କଟକ ଫେରିଲି । ତାହାର ତିନି ମାସ ପରେ ପରଶୁରାମବାବୁ ବିଶ୍ୱବିଦ୍ୟାଳୟରୁ ବିଦାୟ ନେଇଥିଲେ ଏବଂ ୧୯୫୫ ମସିହା ଅଗଷ୍ଟ ୧୬ ତାରିଖରୁ ଡକ୍ଟର ପରିଜା ପୁନର୍ବାର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ପରଶୁରାମବାବୁଙ୍କ ସମୟରେ ବିଶ୍ୱବିଦ୍ୟାଳୟର ଆୟ ସୀମିତ ଥିବାରୁ ଏବଂ ତାଙ୍କ କାର୍ଯ୍ୟକାଳ ଶେଷ ପର୍ଯ୍ୟନ୍ତ ଦିଲ୍ଲୀର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପ୍ରତିଷ୍ଠିତ ହୋଇ ନ ଥିବାରୁ ବିଶ୍ୱବିଦ୍ୟାଳୟର ନିୟମିତ କାର୍ଯ୍ୟ ବ୍ୟତୀତ ଉନ୍ନୟନ କାର୍ଯ୍ୟରେ କିଛି ପ୍ରଗତି ହୋଇ ପାରି ନ ଥିଲା ।

ପରିଜା ୧୯୪୮ ମସିହା ଅକ୍ଟୋବର ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ବିଦାୟ ନେବା ପରେ ବନାରସ ବିଶ୍ୱବିଦ୍ୟାଳୟରେ ୧୯୫୧ ମସିହା ପର୍ଯ୍ୟନ୍ତ ତିନିବର୍ଷ ଉପକୁଳପତି ହୋଇଥିଲେ । ତାହାପରେ ଓଡ଼ିଶା ଫେରିଆସି ସେ ୧୯୫୨ ମସିହା ଠାରୁ ୧୯୫୭ ମସିହା ପର୍ଯ୍ୟନ୍ତ ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଓଡ଼ିଶା ବିଧାନସଭାର ସଭ୍ୟ ଥିଲେ । ସେହି ସମୟରେ ୧୯୫୧ ମସିହା ଡିସେମ୍ବର ମାସରୁ ୧୯୫୫ ମସିହା ଅଗଷ୍ଟ ୧୫ ତାରିଖ ପର୍ଯ୍ୟନ୍ତ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଉପାଚାର୍ଯ୍ୟ ବା ପ୍ରୋ ଚାନ୍ସେଲର ହୋଇଥିଲେ । କେବଳ ସିନେଟ୍‌ରେ ଅଧ୍ୟକ୍ଷତା କରିବା ବ୍ୟତୀତ ଉପାଚାର୍ଯ୍ୟଙ୍କର ଅନ୍ୟ କୌଣସି କାର୍ଯ୍ୟ ନ ଥିଲା । ୧୯୫୫ ମସିହା ଅଗଷ୍ଟ ୧୬ ତାରିଖ ଠାରୁ ୧୯୫୬ ମସିହା ଫେବୃଆରୀ ୧୫ ତାରିଖ ପର୍ଯ୍ୟନ୍ତ ସେ ପ୍ରଥମେ ରାଜ୍ୟପାଳଙ୍କ ଦ୍ୱାରା ଅସ୍ଥାୟୀ କୁଳପତି ଭାବରେ ନିଯୁକ୍ତ ହୋଇଥିଲେ ଏବଂ ୧୯୫୬ ମସିହା ଫେବୃଆରୀ ୧୬ ତାରିଖରୁ କୁଳପତି ନିଯୁକ୍ତି ପ୍ରଣାଳୀରେ ପାଞ୍ଚ ବର୍ଷ ପାଇଁ ସ୍ଥାୟୀ କୁଳପତି ରୂପେ ନିଯୁକ୍ତ ହୋଇଥିଲେ । ୧୯୬୧ ମସିହା ଫେବୃଆରୀ ୧୫ ତାରିଖରେ ପାଞ୍ଚ ବର୍ଷ ପୂର୍ଣ୍ଣ ହେବା ପରେ ସେ ୧୯୬୧ ମସିହା ଫେବୃଆରୀ ମାସ ୧୬ ତାରିଖରୁ ୧୯୬୬ ମସିହା

ଫେବୃଆରୀ ୧୫ ତାରିଖ ପର୍ଯ୍ୟନ୍ତ ଦ୍ୱିତୀୟ ଟର୍ମ ପାଇଁ କୁଳପତି ନିଯୁକ୍ତ ହୋଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟରେ ପରିଜା ପ୍ରଥମ ଥର ପାଇଁ ୧୯୪୩ ମସିହା ଡିସେମ୍ବର ମାସ ୧୬ ତାରିଖରୁ ୧୯୪୮ ମସିହା ସେପ୍ଟେମ୍ବର ୩୦ ତାରିଖ ପର୍ଯ୍ୟନ୍ତ ଅବୈତନିକ କୁଳପତି ଏବଂ ୧୯୫୫ ମସିହା ଅଗଷ୍ଟ ମାସ ୧୬ ତାରିଖରୁ ୧୯୬୬ ମସିହା ଫେବୃଆରୀ ମାସ ୧୫ ତାରିଖ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟର ବେତନପ୍ରାପ୍ତ ପୂର୍ଣ୍ଣ ସମୟ କୁଳପତି ରୂପେ କାର୍ଯ୍ୟ କରିଥିଲେ । ମୋଟରେ ସେ ପ୍ରାୟ ୧୫ ବର୍ଷ ତିନିମାସ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ତାଙ୍କ ସମୟରେ ବିଶ୍ୱବିଦ୍ୟାଳୟର କୁଳପତି ପଦ ପାଇଁ ନିର୍ଦ୍ଧାରିତ ବୟସ ସୀମା ନ ଥିଲା । ଦ୍ୱିତୀୟଥର ପାଇଁ କୁଳପତି ପଦରୁ ଅବସର ନେବା ବେଳକୁ ତାଙ୍କୁ ପ୍ରାୟ ୭୬ ବର୍ଷ ବୟସ ହୋଇଥିଲା । ତାଙ୍କ ପରଠାରୁ ଆଜିପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦର ସର୍ବୋଚ୍ଚ ବୟସ ସୀମା ୬୫ ବର୍ଷ ହୋଇଛି । ପରିଜାଙ୍କ ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତି ତିନି ଟର୍ମ ପାଇଁ କିମ୍ୱା ଏତେ ବର୍ଷପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇ ନାହାନ୍ତି । ୧୯୭୧ ମସିହାରେ ସଦାଶିବବାବୁ ଦ୍ୱିତୀୟ ଟର୍ମ ପାଇଁ ନିଯୁକ୍ତି ପାଇଥିଲେ । ମାତ୍ର ପରିସ୍ଥିତି ଏପରି ହେଲା ଯେ ତିନିମାସ ପରେ କୁଳପତି ପଦରୁ ଇସ୍ତଫା ଦେଇଥିଲେ । ୧୯୫୬ ମସିହାରେ ପରିଜା ସ୍ଥାୟୀ କୁଳପତି ଭାବରେ ନିଯୁକ୍ତି ପାଇବା ସମୟ ଠାରୁ ୧୯୭୧ ମସିହାରେ ରମାନାଥବାବୁ କୁଳପତି ନିଯୁକ୍ତ ହେବା ପର୍ଯ୍ୟନ୍ତ କୁଳପତିଙ୍କର ନିଯୁକ୍ତି ସମୟ ପାଞ୍ଚ ବର୍ଷ ଥିଲା । ରମାନାଥବାବୁଙ୍କର ପାଞ୍ଚବର୍ଷ ନିଯୁକ୍ତି ସମୟ ପୂର୍ଣ୍ଣ ହେବା ପୂର୍ବରୁ ୧୯୭୪ ମସିହା ଜୁଲାଇ ମାସରେ ଓଡ଼ିଶା ସରକାର ବିଶ୍ୱବିଦ୍ୟାଳୟ ଶାସନ ନିଜ ହାତକୁ ନେଇଥିଲେ । ତାହାପରଠାରୁ କୁଳପତିଙ୍କର ନିଯୁକ୍ତି ସମୟ ତିନିବର୍ଷ ହୋଇଛି । ମୁଁ କୁଳପତି ଥିବାବେଳେ କୁଳପତି ନିଯୁକ୍ତି ସମୟ ୩ ବର୍ଷ ଥିଲା । ବର୍ତ୍ତମାନ ମଧ ତାହା ତିନିବର୍ଷ ଅଛି । ମୋ ବିଚାରରେ କୁଳପତି ନିଯୁକ୍ତି ସମୟ ପାଞ୍ଚବର୍ଷରୁ ତିନିବର୍ଷକୁ କମାଇଦେବା ଯୁକ୍ତିଯୁକ୍ତ ନୁହେଁ । କାରଣ ତିନି ବର୍ଷ ମଧରେ ଜଣେ କୁଳପତି ଯୋଜନାବଦ୍ଧ ଭାବରେ ବିଶ୍ୱବିଦ୍ୟାଳୟର ଉନ୍ନୟନ କାର୍ଯ୍ୟ କରିବା ସହଜ ନୁହେଁ । ତଥାପି ମୁଁ ଦେଖୁଛି ମୋ ପରଠାରୁ ଅନେକ କୁଳପତି ପୂରା ତିନିବର୍ଷ ପୂର୍ଣ୍ଣ କରି ନ ପାରି ବର୍ଷେ ଦୁଇବର୍ଷ ପରେ ବିଦାୟ ନେଇଛନ୍ତି । ବିଶ୍ୱବିଦ୍ୟାଳୟର ବାତାବରଣ ସ୍ଥାୟୀ ଶିକ୍ଷାର ଉନ୍ନତି ଏବଂ ଉନ୍ନୟନ କାର୍ଯ୍ୟ ପାଇଁ ଅନୁକୂଳ ହେଉ ନାହିଁ ।

ସେ ଯାହାହେଉ, ୧୯୫୬ ମସିହା ଫେବୃଆରୀ ମାସରେ ପରିଜା ପାଞ୍ଚବର୍ଷ ପାଇଁ ସ୍ଥାୟୀ କୁଳପତି ହେବା ସମୟରେ ବିଶ୍ୱବିଦ୍ୟାଳୟର ବାତାବରଣ ଉନ୍ନୟନ କାର୍ଯ୍ୟ ପାଇଁ ଅତ୍ୟନ୍ତ ଅନୁକୂଳ ଥିଲା । ୧୯୫୬ ମସିହା ଅପ୍ରେଲ ପହିଲା ଠାରୁ ଭାରତବର୍ଷରେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହୋଇଥିଲା । ସମଗ୍ର ଭାରତବର୍ଷରେ ଉନ୍ନୟନ କାର୍ଯ୍ୟ ପାଇଁ ଶାନ୍ତିପୂର୍ଣ୍ଣ ବାତାବରଣ ଥିଲା । ଭାରତବର୍ଷରେ ବିଭିନ୍ନ ରାଜ୍ୟରେ ଉଚ୍ଚଶିକ୍ଷାର ଉନ୍ନତି ପାଇଁ ଭାରତ ସରକାର ଗୋଟିଏ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C.) ପ୍ରତିଷ୍ଠା କରିଥିଲେ । ଚିନ୍ତାମଣି ଦେଶମୁଖ ସେ ଆୟୋଗର ପ୍ରଥମ

ଚେୟାରମ୍ୟାନ ହୋଇଥିଲେ । ସେ ପରିଜାଙ୍କର ଜଣେ ଅତ୍ୟନ୍ତ ପରିଚିତ ବନ୍ଧୁ ଥିଲେ । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଶିକ୍ଷାଦାନୀ ବିଭାଗମାନ ନ ଥିବାରୁ ଛାତ୍ର ଗୋଳମାଳ ମୋଟେ ନ ଥିଲା । ବିଶ୍ୱବିଦ୍ୟାଳୟ ଅଧୀନରେ କଲେଜ ସଂଖ୍ୟା ଅଳ୍ପ ଥିବାରୁ ପରୀକ୍ଷାକାର୍ଯ୍ୟ ସୁଚାରୁ ରୂପେ ଚାଲିଥିଲା । ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ସାଧାରଣତଃ କପି ହେଉ ନ ଥିଲା ଏବଂ ପରୀକ୍ଷାମାନ ନିର୍ଦ୍ଦିଷ୍ଟ ସମୟରେ ହୋଇ ପରୀକ୍ଷା ଫଳ ସବୁ ନିୟମିତ ସମୟରେ ପ୍ରକାଶ ପାଉଥିଲା । ପରିଜା ଦ୍ୱିତୀୟଥର କୁଳପତି ହୋଇଥିବା ସାଢ଼େ ଦଶ ବର୍ଷ ମଧ୍ୟରେ ପ୍ରଥମ ପାଞ୍ଚବର୍ଷରେ ଅଧିକ ଉନ୍ନୟନମୂଳକ କାର୍ଯ୍ୟ ହୋଇଥିଲା । ସେହି ପାଞ୍ଚ ବର୍ଷ ମଧ୍ୟରେ ବାଣୀବିହାରରେ ସରକାରଙ୍କ ଠାରୁ ମିଳିଥିବା ଚାରିଶହ ଏକର ଜମିରେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ ହେବା ସ୍ଥିର ହୋଇଥିଲା ଏବଂ ପ୍ରଥମ ପର୍ଯ୍ୟାୟରେ କ୍ୟାମ୍ପସରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସହାୟତାରେ ସବୁ ରାସ୍ତା ଏବଂ ଅଧିକାଂଶ କୋଠାବାଡ଼ି ନିର୍ମିତ ହୋଇଥିଲା । ପାଞ୍ଚ ବର୍ଷ ଶେଷରେ ୧୯୬୨ ମସିହା ଜୁଲାଇ ମାସରେ ବିଶ୍ୱବିଦ୍ୟାଳୟର କାର୍ଯ୍ୟାଳୟ ଏବଂ ଶିକ୍ଷାଦାନୀ ବିଭାଗମାନ ନୂତନ କ୍ୟାମ୍ପସକୁ ଉଠି ଆସିଥିଲା । ୧୯୬୨ ମସିହା ବେଳକୁ ବିଶ୍ୱବିଦ୍ୟାଳୟରେ ଗ୍ରାମ୍ୟ ଅର୍ଥନୀତି ଓ ସମାଜବିଜ୍ଞାନ ଗବେଷଣା ବିଭାଗ ସହ ନୃତତ୍ତ୍ୱ, ସଂସ୍କୃତ, ଦର୍ଶନ, ମନସ୍ତତ୍ତ୍ୱ, ପରିସଂଖ୍ୟାନ, ଇତିହାସ, ରାଜନୀତି ବିଜ୍ଞାନ, ଭୂତତ୍ତ୍ୱ, ପ୍ରାଣିବିଜ୍ଞାନ ଏବଂ ବାଣିଜ୍ୟ ବିଭାଗ ସମେତ ଏଗାରଗୋଟି ସ୍ନାତକୋତ୍ତର ଶିକ୍ଷାଦାନୀ ବିଭାଗ ହୋଇଥିଲା । ପରିଜାଙ୍କ ପରେ ୧୯୬୬ ମସିହାଠାରୁ ୧୯୭୧ ମସିହା ମଧ୍ୟରେ ସଦାଶିବବାବୁ କୁଳପତି ଥିବା ସମୟରେ ପଦାର୍ଥ ବିଜ୍ଞାନ, ରସାୟନ, ଗଣିତ, ଉଦ୍ଭିଦ ବିଜ୍ଞାନ, ଇଂରାଜୀ, ଓଡ଼ିଆ, ସମାଜ ବିଜ୍ଞାନ, ଶ୍ରମ ମଙ୍ଗଳ, ଭୂଗୋଳ, ପ୍ରୟୋଗାତ୍ମକ ଅର୍ଥନୀତି ଏବଂ ଆଇନ ବିଭାଗ ମାନ ମିଶି ଆଉ ଏଗାରଟି ଶିକ୍ଷାଦାନୀ ବିଭାଗ ପ୍ରତିଷ୍ଠିତ ହୋଇଥିଲା ଏବଂ ସେଗୁଡ଼ିକ ପାଇଁ ଗୃହମାନ ନିର୍ମିତ ହୋଇଥିଲା ।

(Orissa Secondary Education Act 1953 ଅନୁସାରେ) ୧୯୫୪ ମସିହାରେ ଓଡ଼ିଶାର ସେକେଣ୍ଡାରୀ ବୋର୍ଡ଼ ପ୍ରତିଷ୍ଠିତ ହୋଇଥିଲା ଏବଂ ବିଶ୍ୱବିଦ୍ୟାଳୟ ପରିବର୍ତ୍ତେ ସେକେଣ୍ଡାରୀ ବୋର୍ଡ଼ ମାଟ୍ରିକୁଲେସନ ପରୀକ୍ଷା ପରିଚାଳନା ଦାୟିତ୍ୱ ଗ୍ରହଣ କରିଥିଲେ । ପରୀକ୍ଷାର୍ଥୀଙ୍କ ସଂଖ୍ୟା ଖୁବ୍ ବେଶୀ ଥିବାରୁ ମାଟ୍ରିକୁଲେସନ ପରୀକ୍ଷା ସର୍ବଦା ବିଶ୍ୱବିଦ୍ୟାଳୟ ପାଇଁ ଲାଭଜନକ ଥିଲା । ସେ ପରୀକ୍ଷା ସେକେଣ୍ଡାରୀ ବୋର୍ଡ଼ ହାତକୁ ଦିଆଯାଇଥିବାରୁ ବିଶ୍ୱବିଦ୍ୟାଳୟର ଆୟ କମିଥିଲା । ସେ କ୍ଷତିପୂରଣ ପାଇଁ ବିଶ୍ୱବିଦ୍ୟାଳୟକୁ ସରକାର ଅଧିକ ଅନୁଦାନ ଦେଇଥିଲେ । ପରିଜାଙ୍କର ଦ୍ୱିତୀୟ ପାଞ୍ଚ ବର୍ଷ ଆରମ୍ଭରେ ୧୯୬୨ ମସିହାରେ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ଏବଂ କୃଷି ଓ ପଶୁ ଚିକିତ୍ସା କଲେଜମାନ ଉତ୍କଳ ବିଶ୍ୱବିଦ୍ୟାଳୟରୁ ନେଇ କୃଷି ବିଶ୍ୱବିଦ୍ୟାଳୟର ପ୍ରତ୍ୟକ୍ଷ ପରିଚାଳନା ଅଧୀନରେ ରଖା ଯାଇଥିଲା । ରାଜ୍ୟରେ ଉଚ୍ଚଶିକ୍ଷା ଓ ବୈଷୟିକ ଶିକ୍ଷାର ପ୍ରସାର ପାଇଁ କଳା ଓ ବିଜ୍ଞାନରେ ଅନେକ ଘରୋଇ

କଲେଜ ରାଜ୍ୟର ବିଭିନ୍ନ ସବ୍‌ଡିଭିଜନ ଓ ଅନ୍ୟ ପ୍ରଧାନ ସ୍ଥାନମାନଙ୍କରେ ସ୍ଥାପିତ ହୋଇଥିଲା । ୧୯୫୬ ମସିହା ଠାରୁ ୧୯୬୬ ମସିହା ମଧ୍ୟରେ ଜଗତ୍‌ସିଂହପୁର, କେନ୍ଦ୍ରାପଡ଼ା, ଯାଜପୁର, ବାଙ୍କୀ, ଆଠଗଡ଼, ବଡ଼ମ୍ବା, ବରଗଡ଼ ପ୍ରଭୃତି ସ୍ଥାନରେ ଘରୋଇ କଲେଜ ଏବଂ ଫୁଲବାଣୀ, ଅନୁଗୁଳ, ଭବାନୀପାଟଣା ପ୍ରଭୃତି ସ୍ଥାନରେ ସରକାରୀ କଲେଜ ପ୍ରତିଷ୍ଠିତ ହୋଇଥିଲା । ବୈଷୟିକ ଶିକ୍ଷା ପ୍ରସାର ପାଇଁ ବିଶ୍ୱବିଦ୍ୟାଳୟର ପ୍ରତ୍ୟକ୍ଷ ପରିଚାଳନା ଅଧୀନରେ ବୁର୍ଲାରେ ଇଞ୍ଜିନିଅରିଂ କଲେଜ ପ୍ରତିଷ୍ଠିତ ହୋଇଥିଲା । କେନ୍ଦ୍ର ସରକାରଙ୍କ ପରିଚାଳନା ଅଧୀନରେ ରାଉରକେଲାରେ ରିଜିଓନାଲ ଇଞ୍ଜିନିଅରିଂ କଲେଜ ଏବଂ ଭୁବନେଶ୍ୱରରେ ରିଜିଓନାଲ କଲେଜ ଅଫ୍ ଏଜୁକେଶନ୍ ପ୍ରତିଷ୍ଠିତ ହୋଇଥିଲା ।

ବିଶ୍ୱବିଦ୍ୟାଳୟ ବାଣୀବିହାର କ୍ୟାମ୍ପସକୁ ସ୍ଥାନାନ୍ତରିତ ହେବା ପରେ, ବାଣୀବିହାର କ୍ୟାମ୍ପସର ଏବଂ ସ୍ନାତକୋତ୍ତର ଶିକ୍ଷାର ଉନ୍ନତି ବାଣୀବିହାର ଉପରେ ଲିଖିତ ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି । ସ୍ଥୂଳତଃ ୧୯୫୫ ମସିହା ଅଗଷ୍ଟ ମାସରୁ ୧୯୬୬ ମସିହା ଫେବୃଆରୀ ମାସ ପର୍ଯ୍ୟନ୍ତ ସାଢ଼େ ଦଶବର୍ଷ ସମୟ ପରିଜା ଦ୍ୱିତୀୟ ଥର କୁଳପତି ଥିବା ସମୟରେ ବିଶ୍ୱବିଦ୍ୟାଳୟର ସର୍ବାଙ୍ଗୀଣ ଉନ୍ନତି ହୋଇଥିଲା । ବିଶ୍ୱବିଦ୍ୟାଳୟର କ୍ୟାମ୍ପସ ନିର୍ମିତ ହୋଇଥିଲା, ଅନେକ ବିଷୟରେ ସ୍ନାତକୋତ୍ତର ଶିକ୍ଷାଦାନ ବିଭାଗମାନ ପ୍ରତିଷ୍ଠିତ ହୋଇଥିଲା ଏବଂ ଓଡ଼ିଶାରେ ଶୃଙ୍ଖଳିତ ଭାବରେ କଳା, ବିଜ୍ଞାନ ଓ ବାଣିଜ୍ୟରେ ଉଚ୍ଚଶିକ୍ଷା ଏବଂ ବୈଷୟିକ ଶିକ୍ଷାର ପ୍ରସାର ହୋଇଥିଲା । ୧୯୪୩ ମସିହାରୁ ୧୯୪୮ ମସିହା ମଧ୍ୟରେ ପରିଜା ପ୍ରଥମେ କୁଳପତି ଥିବା ସମୟରେ ବିଶ୍ୱବିଦ୍ୟାଳୟ ଆରମ୍ଭ ହୋଇ ତାହାର ଭିତ୍ତି ଦୃଢ଼ ହୋଇଥିଲା । ପରିଜା ବିଶ୍ୱବିଦ୍ୟାଳୟର ଆଇନକାନୁନ କରାଇ ରାଜ୍ୟରେ ବିଶ୍ୱବିଦ୍ୟାଳୟ ଶିକ୍ଷାକୁ ଆଧୁନିକ ରୀତିରେ ଚଳାଇଥିଲେ । ଦ୍ୱିତୀୟଥର ଦଶବର୍ଷ କୁଳପତି ଭାବରେ କାର୍ଯ୍ୟ କରି ସେ ବିଶ୍ୱବିଦ୍ୟାଳୟର ସର୍ବାଙ୍ଗୀଣ ପ୍ରଗତି କରାଇ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଭାରତବର୍ଷରେ ଗୋଟିଏ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟ ରୂପେ ଠିଆ କରାଇଥିଲେ ।

ପରିଜାଙ୍କ ପରେ ୧୯୬୬ ମସିହା ଠାରୁ ୧୯୭୧ ମସିହା ପର୍ଯ୍ୟନ୍ତ ସଦାଶିବବାବୁ କୁଳପତି ଥିବା ସମୟରେ, ବିଶ୍ୱବିଦ୍ୟାଳୟର ପ୍ରଗତି ଅବ୍ୟାହତ ରହିଥିଲା । ତାଙ୍କ ସମୟରେ ବିଶ୍ୱବିଦ୍ୟାଳୟରେ ଆଉ ଏଗାରଗୋଟି ସ୍ନାତକୋତ୍ତର ବିଭାଗ ସ୍ଥାପିତ ହୋଇଥିଲା ଏବଂ କ୍ୟାମ୍ପସ୍‌ରେ ସେଗୁଡ଼ିକ ପାଇଁ ଗୃହ ଏବଂ ଅଧିକ ଛାତ୍ରାବାସ ନିର୍ମିତ ହୋଇଥିଲା । ସେ ପାଞ୍ଚବର୍ଷରେ ଭାରତବର୍ଷରେ ଚତୁର୍ଥ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହେଉଥିଲା । ୧୯୬୬ ମସିହାରେ ଉଚ୍ଚଶିକ୍ଷାର ଉନ୍ନତି ପାଇଁ କୋଠାରୀ କମିସନ୍ ରିପୋର୍ଟ ପ୍ରକାଶିତ ହୋଇଥିଲା । କୋଠାରୀ କମିସନ ଉଚ୍ଚଶିକ୍ଷା କ୍ଷେତ୍ରରେ ଗୁଣାତ୍ମକ ଅଭିବୃଦ୍ଧି ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ବିଭିନ୍ନ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶିକ୍ଷାଦାନ ଏବଂ ଗବେଷଣା କରୁଥିବା ସ୍ନାତକୋତ୍ତର ବିଭାଗମାନଙ୍କୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଅଧିକ ଅର୍ଥ ସାହାଯ୍ୟ ଦେଇ ସେଗୁଡ଼ିକୁ

ଉଚ୍ଚତର ଶିକ୍ଷା ଏବଂ ଗବେଷଣା କେନ୍ଦ୍ରରେ ପରିଣତ କରିବାକୁ କମିସନ ସୁପାରିସ କରିଥିଲେ । ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ବିଭିନ୍ନ ସରକାରୀ ଏବଂ ବେସରକାରୀ କଲେଜମାନଙ୍କରେ ଉଚ୍ଚମାନର ଶିକ୍ଷାପାଇଁ ସୁବିଧା କରିବା ନିମିତ୍ତ ମଧ୍ୟ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଅର୍ଥ ସାହାଯ୍ୟ ଦେବାକୁ ସେମାନେ ସୁପାରିସ କରିଥିଲେ । ପରୀକ୍ଷା ପଦ୍ଧତିର ସଂସ୍କାର ଏବଂ ଶିକ୍ଷକମାନଙ୍କର ମାନବୃଦ୍ଧି ଏବଂ ସେମାନଙ୍କର ଦରମା ପ୍ରଭୃତି ବୃଦ୍ଧି ପାଇଁ କମିସନ ସୁପାରିସ କରିଥିଲେ । ୧୯୬୬ ମସିହା ଠାରୁ ୧୯୭୧ ମସିହା ମଧ୍ୟରେ ଭାରତବର୍ଷର ବିଭିନ୍ନ ବିଶ୍ୱବିଦ୍ୟାଳୟମାନ କୋଠାରୀ କମିସନର ସୁପାରିସଗୁଡ଼ିକୁ କାର୍ଯ୍ୟକାରୀ କରିବାପାଇଁ ଉଦ୍ୟମ କରୁଥିଲେ ।

କମିସନର ରିପୋର୍ଟ ପ୍ରକାଶିତ ହେବା ପରେ ସେ ରିପୋର୍ଟ ଉପରେ ଗୋଟିଏ ଆଲୋଚନାଚକ୍ର ଆମ ବିଶ୍ୱବିଦ୍ୟାଳୟରେ ଆୟୋଜନ କରିବା ଦାୟିତ୍ୱ ସଦାଶିବବାବୁ ମୋତେ ଦେଇଥିଲେ । ବାଣୀବିହାର ଠାରେ ସେ ରିପୋର୍ଟ ଗୋଟିଏ ଆଲୋଚନା ଚକ୍ରରେ ଆଲୋଚିତ ହୋଇଥିଲା । ବିଶ୍ୱବିଦ୍ୟାଳୟର ଏବଂ ରେଭେନ୍ସା କଲେଜର ସ୍ନାତକୋତ୍ତର ବିଭାଗମାନଙ୍କର ମୁଖ୍ୟ ଅଧ୍ୟାପକମାନେ ସେ ଆଲୋଚନା ଚକ୍ରରେ ଭାଗ ନେଇଥିଲେ । କୋଠାରୀ କମିସନ୍‌ର ସୁପାରିସମାନଙ୍କର ଉପାଦେୟତା ଏବଂ ଭାରତବର୍ଷରେ ସେତେବେଳେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷାର ମାନବୃଦ୍ଧି ପାଇଁ କିପରି ଉଦ୍ୟମ ହେଉଛି ଏବଂ ସେଥିପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଆଭିମୁଖ୍ୟ କଣ, ଏ ସବୁ ବିଷୟ ଆମ ବିଶ୍ୱବିଦ୍ୟାଳୟର ଶିକ୍ଷକମାନଙ୍କୁ ଅବଗତ କରାଇବା ଏବଂ ସେ ସବୁ ବିଷୟ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ବିଭିନ୍ନ କଲେଜରେ ବିସ୍ତୃତ ଭାବରେ ଆଲୋଚିତ କରାଇବା ସେ ଆଲୋଚନାଚକ୍ରର ଉଦ୍ଦେଶ୍ୟ ଥିଲା ।

ସେହି ସମୟରେ ବିଭିନ୍ନ କଲେଜମାନଙ୍କରେ ଶିକ୍ଷାଦାନର ଉନ୍ନତି ନିମିତ୍ତ ସେମାନଙ୍କର ଆବଶ୍ୟକତା ଜାଣିବା ଏବଂ ସେଥିପାଇଁ ସାହାଯ୍ୟ ସୁପାରିସ କରିବା ନିମିତ୍ତ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଆମ ବିଶ୍ୱବିଦ୍ୟାଳୟକୁ କେତେଜଣ ପରିଦର୍ଶକଙ୍କୁ ପଠାଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଥିବା କଲେଜମାନଙ୍କୁ ସେମାନଙ୍କୁ ବୁଲାଇ ଦେଖାଇବା ଦାୟିତ୍ୱ ସଦାଶିବବାବୁ ମୋତେ ଦେଇଥିଲେ ଏବଂ ପଶ୍ଚିମ ଓଡ଼ିଶାର କଲେଜମାନଙ୍କୁ ଦେଖାଇବା ଦାୟିତ୍ୱ ରସାୟନ ଶାସ୍ତ୍ର ଅଧ୍ୟାପକ ଶିବରାମ ମହାନ୍ତିଙ୍କୁ ଦେଇଥିଲେ । ମୁଁ ସେ ପରିଦର୍ଶକମାନଙ୍କୁ କଟକ, ପୁରୀ ଓ ଭୁବନେଶ୍ୱରର ବଡ଼ ବଡ଼ ସରକାରୀ କଲେଜମାନ ଏବଂ ଆଠଗଡ଼, ବଡ଼ମ୍ବା ପ୍ରଭୃତି ସ୍ଥାନରେ ଥିବା କେତେକ ଦୁର୍ବଳ ଘରୋଇ କଲେଜମାନ ବୁଲାଇ ଦେଖାଇଥିଲି ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ସରକାରୀ ଏବଂ ବେସରକାରୀ କଲେଜମାନଙ୍କର ଆବଶ୍ୟକତା ସେମାନଙ୍କୁ ବୁଝାଇଥିଲି ।

ଉତ୍କଳ ବିଶ୍ୱବିଦ୍ୟାଳୟର ପରିସର, କଲେଜ ଓ ଛାତ୍ରଛାତ୍ରୀ ସଂଖ୍ୟା ଅଧିକ ହୋଇଯାଇଥିବାରୁ ସମ୍ବଲପୁର ଏବଂ ବ୍ରହ୍ମପୁର ଠାରେ ଯଥାକ୍ରମେ ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ

ଓଡ଼ିଶା ନିମିତ୍ତ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟମାନ କରିବା ପାଇଁ ଓଡ଼ିଶା ସରକାର ପ୍ରସ୍ତାବ କଲେ । ତାହା ଅନୁସନ୍ଧାନ କରି ରିପୋର୍ଟ ଦେବାକୁ ପରିଜାଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଟି ଗଠିତ ହୋଇଥିଲା । ସେ କମିଟିର ସୁପାରିସ୍ ଅନୁସାରେ ୧୯୬୭ ମସିହା ଜାନୁଆରୀ ମାସ ପହିଲାଠାରୁ ସମ୍ବଲପୁର ଏବଂ ବ୍ରହ୍ମପୁରଠାରେ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଥିଲା । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ପଶ୍ଚିମାଞ୍ଚଳ ଜିଲ୍ଲାମାନଙ୍କର କଲେଜମାନ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ଏବଂ ଦକ୍ଷିଣାଞ୍ଚଳ ଜିଲ୍ଲାମାନଙ୍କର କଲେଜମାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନକୁ ସ୍ଥାନାନ୍ତରିତ କରାଯାଇଥିଲା ।

ସଦାଶିବବାବୁଙ୍କ କୁଳପତି ହେବାର ପ୍ରଥମ ପାଞ୍ଚବର୍ଷ ୧୯୭୧ ମସିହା ଫେବୃଆରୀ ମାସ ୧୫ ତାରିଖରେ ଶେଷ ହେବା ପରେ ସେ ଆଉ ଗୋଟିଏ ଟର୍ମ ପାଇଁ ନିଯୁକ୍ତି ପାଇଥିଲେ । ସେତେବେଳକୁ ତାଙ୍କୁ କୁଳପତିଙ୍କ ପାଇଁ ସର୍ବୋଚ୍ଚ ବୟସସୀମା ପହଞ୍ଚିବାକୁ ସାଢ଼େ ତିନି ବର୍ଷ ବାକୀ ଥିଲା । ମାତ୍ର କିପରି ପରିସ୍ଥିତିରେ ସେ ସେ ପଦବୀରୁ ଇସ୍ତଫା ଦେଇ ଅବ୍ୟାହତି ନେଇଥିଲେ ତାହା ପୂର୍ବବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ସେ ବିଶ୍ୱବିଦ୍ୟାଳୟରୁ ବିଦାୟ ନେବା ପରେ ୧୯୭୧ ମସିହା ଠାରୁ ୧୯୮୦ ମସିହା ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟର ପରିସ୍ଥିତି ଶାନ୍ତିପୂର୍ଣ୍ଣ ନ ଥିଲା । ସେଥିଯୋଗୁଁ ବିଶ୍ୱବିଦ୍ୟାଳୟର ପ୍ରଗତି ବାଧାପ୍ରାପ୍ତ ହୋଇଥିଲା । ସେ ଦଶନ୍ଧିରେ ବିଦ୍ୟାଳୟର ଅଶାନ୍ତ ପରିବେଶ, କଲେଜ ଓ ସ୍କୁଲ ପରୀକ୍ଷାମାନଙ୍କରେ ବ୍ୟାପକ କପି ଏବଂ ଶିକ୍ଷାର ମାନ ହ୍ରାସ କେବଳ ଆମ ବିଶ୍ୱବିଦ୍ୟାଳୟର ସ୍ୱତନ୍ତ୍ର ସମସ୍ୟା ନ ଥିଲା । ସମଗ୍ର ଭାରତବର୍ଷରେ ସେ ଦଶକରେ ଅସ୍ଥିର ରାଜନୈତିକ ପରିସ୍ଥିତି, ଶିଳ୍ପ ଉଦ୍ୟୋଗମାନଙ୍କରେ ବ୍ୟାପକ ଧର୍ମଘଟ, ଗୁଜରାଟ ଏବଂ ବିହାର ପ୍ରଭୃତି ଅନେକ ରାଜ୍ୟରେ ଗଣ ଆନ୍ଦୋଳନ ପ୍ରଭୃତି ହେତୁ ସମଗ୍ର ଦେଶରେ ଅଶାନ୍ତ ପରିବେଶ ସୃଷ୍ଟି ହୋଇଥିଲା । ଇନ୍ଦିରାଗାନ୍ଧୀ ୧୯୭୫ ମସିହାରେ ଦେଶରେ ଜରୁରୀ ପରିସ୍ଥିତି ଘୋଷଣା କରି ଦେଶର ରାଜନୈତିକ ଏବଂ ଅର୍ଥନୈତିକ କ୍ଷେତ୍ରରେ କଠୋର ଆଇନ ମାନ ଜାରି କରିଥିଲେ । ଏ ସବୁର ପ୍ରଭାବ ସବୁ ରାଜ୍ୟର ସ୍କୁଲ କଲେଜ ଏବଂ ବିଶ୍ୱବିଦ୍ୟାଳୟମାନଙ୍କ ଉପରେ ପଡ଼ିଥିଲା । ପଶ୍ଚିମବଙ୍ଗ, ବିହାର, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ପ୍ରଭୃତି ରାଜ୍ୟମାନଙ୍କରେ ବ୍ୟାପକ କପି ହେଉଥିଲା । ସେ ସବୁର ପ୍ରଭାବ ଆମ ରାଜ୍ୟର ସ୍କୁଲ କଲେଜମାନଙ୍କରେ ପଡ଼ିଥିଲା । ଆମ ରାଜ୍ୟରେ ମଧ୍ୟ ସ୍ଥିର ସରକାର ନ ଥିଲା । ୧୯୭୧ ମସିହା ଠାରୁ ୧୯୭୪ ମସିହା ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟରେ ରମାନାଥ ବାବୁ କୁଳପତି ଥିବା ସମୟରେ ପରୀକ୍ଷା ତାରିଖ ଘୁଞ୍ଚାଇବା, ପରୀକ୍ଷା ବାତିଲ ନ କରିବା ପ୍ରଭୃତି ବିଷୟରେ କୁଳପତି ଏବଂ ସିଣ୍ଡିକେଟକୁ ବିଭିନ୍ନ କଲେଜର ଛାତ୍ରମାନେ ବହୁବାର ଘେରାଉ କରୁଥିଲେ ।

୧୯୭୪ ମସିହା ଜୁଲାଇ ମାସରେ ରାଜ୍ୟ ସରକାର ବିଶ୍ୱବିଦ୍ୟାଳୟ ପରିଚାଳନା ହାତକୁ ନେଇଥିଲେ । ସରକାରଙ୍କର କମିସନର ପଦବୀର ଅଫିସର ଜ୍ଞାନଚାନ୍ଦ ଦୁଇ ବର୍ଷ

ପ୍ରଶାସକ ହେବା ପରେ ଗୌତମ ମାଥୁର ଛଅ ମାସ ପ୍ରଶାସକ ଏବଂ ଅନ୍ୟ ପ୍ରାୟ ଛଅ ମାସ କୁଳପତି ହୋଇଥିଲେ । ମାତ୍ର ବିଶ୍ୱବିଦ୍ୟାଳୟର ବାତାବରଣ ଶାନ୍ତିପୂର୍ଣ୍ଣ ନ ଥିଲା । ପ୍ରଶାସକମାନଙ୍କୁ ମଧ୍ୟ ଛାତ୍ରମାନେ ଅନେକ ଥର ଘେରାଉ କରୁଥିଲେ ଏବଂ କଲେଜ ପରୀକ୍ଷାମାନଙ୍କରେ ବ୍ୟାପକ କପି ହେଉଥିଲା । ମାଥୁରଙ୍କ ସମୟରେ ଅଧ୍ୟାପକମାନେ ମଧ୍ୟ ତାଙ୍କ ବିରୋଧରେ ଆନ୍ଦୋଳନ କରୁଥିଲେ । ମାଥୁରଙ୍କ ପରେ ଉଚ୍ଚ ଶିକ୍ଷା ନିର୍ଦ୍ଦେଶକ ବିଧୁଭୂଷଣ ଦାସ ଦୁଇ ମାସ ନିଜ କାର୍ଯ୍ୟ ସହ ବିଶ୍ୱବିଦ୍ୟାଳୟର ପରିଚାଳନା ଦାୟିତ୍ୱ ବହନ କରିଥିଲେ । ତାହା ବିରୋଧରେ ମଧ୍ୟ କେତେକ ଲୋକ ହାଇକୋର୍ଟରେ ମକଦ୍ଦମା କରିଥିଲେ । ଏହିପରି ପରିସ୍ଥିତିରେ ୧୯୭୭ ମସିହା ସେପ୍ଟେମ୍ବର ମାସରୁ ୧୯୮୦ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ମୁଁ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲି । ମୋ ସମୟରେ ମଧ୍ୟ ସ୍ନାତକୋତ୍ତର ସ୍ତରରେ ସେମେଷ୍ଟର ପ୍ରଣାଳୀ ବନ୍ଦ କରିବା, ବିଭିନ୍ନ ପରୀକ୍ଷା ତାରିଖ ଘୁଞ୍ଚାଇବା ଏବଂ ପରୀକ୍ଷାମାନ ବାତିଲ ନ କରିବା ପ୍ରଭୃତି ବିଷୟରେ ଅନେକଥର ଆନ୍ଦୋଳନ ଓ ଘେରାଉ ପ୍ରଭୃତି ହୋଇଥିଲା । ୧୯୭୧ ମସିହା ଠାରୁ ୧୯୮୦ ମସିହା ମଧ୍ୟରେ ଏହି ଅଶାନ୍ତ ପରିବେଶ ଯୋଗୁଁ ସୀମିତ ପ୍ରଗତି ହୋଇଥିଲା । ୧୯୮୦ ମସିହା ଠାରୁ ଆଜିପର୍ଯ୍ୟନ୍ତ ପ୍ରାୟ ଅଠର ବର୍ଷର ପରିସ୍ଥିତି ଅନୁଶୀଳନ କରି ମୁଁ ଦେଖିପାରୁଛି ଯେ ବିଶ୍ୱବିଦ୍ୟାଳୟ ସ୍ତରରେ ପ୍ରଗତି ଆହୁରି ଶିଥିଳ ହୋଇଛି ଏବଂ କଲେଜମାନଙ୍କ ସ୍ତରରେ ନିଶ୍ଚିତ ଭାବରେ ଅଧୋଗତି ହୋଇଛି । ୧୯୮୦ ମସିହା ପରେ କଲେଜମାନଙ୍କ ସଂଖ୍ୟା ଅଭୂତପୂର୍ବ ଭାବରେ ବଢ଼ିଯାଇଛି ଏବଂ ସେଗୁଡ଼ିକରେ ପରିଚାଳନା, ଶିକ୍ଷାଦାନ ଏବଂ ଶୃଙ୍ଖଳା ଅତି ନିମ୍ନମାନକୁ ଖସି ଆସିଛି । ସେଥିପାଇଁ ଆମର ରାଜନୈତିକ, ଅର୍ଥନୈତିକ ଏବଂ ସାମାଜିକ ପରିସ୍ଥିତି ବହୁ ପରିମାଣରେ ଦାୟୀ ।

୧୯୪୩ ମସିହା ଠାରୁ ୧୯୯୮ ମସିହା ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାୟ ୫୫ ବର୍ଷର ଇତିହାସ ପର୍ଯ୍ୟାଲୋଚନା କରି ମୁଁ ବିଚାର କରୁଛି ଯେ ବିଶ୍ୱବିଦ୍ୟାଳୟ ଏବଂ ରାଜ୍ୟର ଉଚ୍ଚଶିକ୍ଷାର ଏହି ୫୫ ବର୍ଷର ଉନ୍ନୟନ ଓ ପ୍ରଗତି ସାଧାରଣତଃ ତିନି ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ପର୍ଯ୍ୟାୟରେ ୧୯୪୩ ମସିହାରେ ବିଶ୍ୱବିଦ୍ୟାଳୟ ଆରମ୍ଭ ହେବା ସମୟରେ ଏହା ଅଧୀନରେ ସ୍ନାତକ ବା ସ୍ନାତକୋତ୍ତର ସ୍ତରରେ ପ୍ରତ୍ୟକ୍ଷ ଶିକ୍ଷାଦାନର କୌଣସି ବ୍ୟବସ୍ଥା ନ ଥିଲା । ପାଠ୍ୟକ୍ରମ ନିର୍ଦ୍ଧାରଣ ଓ ପରୀକ୍ଷା ପରିଚାଳନା ଏହାର ମୁଖ୍ୟ କାର୍ଯ୍ୟ ଥିଲା । ପ୍ରଥମରୁ ଏହା ଅଧୀନରେ ମାତ୍ର ପାଞ୍ଚଗୋଟି କଲେଜ ଥିଲା । ସେଥିମଧ୍ୟରୁ ଦୁଇଟି ଇଣ୍ଟରମେଡ଼ିଏଟ୍ କଲେଜ, ଦୁଇଟି ଡିଗ୍ରୀ କଲେଜ ଏବଂ ଗୋଟିଏ ଟ୍ରେନିଂ କଲେଜ ଥିଲା । ରେଭେନ୍ସା କଲେଜ ଏକମାତ୍ର ବୃହତ୍ କଲେଜ ଥିଲା । ସୁତରାଂ ବିଶ୍ୱବିଦ୍ୟାଳୟ ଅଧୀନରେ ଉଚ୍ଚ ଶିକ୍ଷା ପାଉଥିବା ଛାତ୍ର ଛାତ୍ରୀମାନଙ୍କ ସଂଖ୍ୟା ଅତି ଅଳ୍ପ ଥିଲା । ପ୍ରଥମ ପନ୍ଦର ବର୍ଷରେ ବିଶ୍ୱବିଦ୍ୟାଳୟକୁ ସଂଗଠିତ କରିବା, ସୁଚାରୁରୂପେ ପରୀକ୍ଷା ପରିଚାଳନା କରିବା ଏବଂ କଲେଜ ସଂଖ୍ୟା ବଢ଼ାଇବା ବିଶ୍ୱବିଦ୍ୟାଳୟର ପ୍ରଧାନ ସମସ୍ୟା ଥିଲା । ଅଧିକ କଲେଜ ପ୍ରତିଷ୍ଠା କରିବା ଦିଗରେ ରାଜ୍ୟସରକାର ଅଧିକ ଭୂମିକା

ଗ୍ରହଣ କରିଥିଲେ । ସେହି ସମୟରେ ପ୍ରତିଷ୍ଠିତ ହୋଇଥିବା ବେସରକାରୀ କଲେଜମାନଙ୍କର ସଂଖ୍ୟା ଅଳ୍ପ ଥିଲା । ସେହି ସମୟରେ ପୂର୍ବରୁ ପ୍ରଚଳିତ ଶିକ୍ଷା ଓ ପରୀକ୍ଷାର ମାନ ଅବ୍ୟାହତ ରହିଥିଲା ।

ରାଜ୍ୟରେ ଉଚ୍ଚଶିକ୍ଷାର ପ୍ରସାର ଏବଂ ବିଶ୍ୱବିଦ୍ୟାଳୟର ଉନ୍ନୟନ ଓ ପୁନର୍ଗଠନର ଦ୍ୱିତୀୟ ପର୍ଯ୍ୟାୟ କାର୍ଯ୍ୟ ୧୯୫୬ ମସିହାଠାରୁ ୧୯୮୦ ମସିହା ମଧ୍ୟରେ ହୋଇଥିଲା । କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସାହାଯ୍ୟରେ ଆମ ବିଶ୍ୱବିଦ୍ୟାଳୟ ଅଧୀନରେ ସ୍ନାତକୋତ୍ତର ବିଭାଗମାନ ଆରମ୍ଭ ହୋଇଥିଲା ଏବଂ ପ୍ରତି ପଞ୍ଚବାର୍ଷିକ ଯୋଜନା ସମୟରେ, ସେ ବିଭାଗମାନଙ୍କର ସଂଖ୍ୟା ବୃଦ୍ଧି ପାଇଥିଲା । ୧୯୮୦ ମସିହା ସମୟକୁ ଆମ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶିକ୍ଷାଦାନୀ ବିଭାଗ ସଂଖ୍ୟା ଏକୋଇଶ ହୋଇଥିଲା । ୧୯୫୪ ମସିହାରେ ମାଧ୍ୟମିକ ଶିକ୍ଷା ବୋର୍ଡ଼ ପ୍ରତିଷ୍ଠିତ ହୋଇ ମାଧ୍ୟମିକ ଶିକ୍ଷା ପରୀକ୍ଷା ଦାୟିତ୍ୱ ବହନ କରିଥିଲା । ବିଶ୍ୱବିଦ୍ୟାଳୟ ଉଚ୍ଚ ଶିକ୍ଷା ଓ ଗବେଷଣାର ଦାୟିତ୍ୱରେ ରହିଥିଲା । ୧୯୬୨ ମସିହାରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ତାହାକୁ କୃଷି, ପଶୁଚିକିତ୍ସା, ଗୃହବିଜ୍ଞାନ ପ୍ରଭୃତି ବୈଷୟିକ ବିଜ୍ଞାନ ଶିକ୍ଷାର ଦାୟିତ୍ୱ ପ୍ରଦାନ କରାଯାଇଥିଲା । ୧୯୫୮ ମସିହାଠାରୁ ୧୯୬୨ ମସିହା ମଧ୍ୟରେ ବାଣୀବିହାରଠାରେ ବିଶ୍ୱବିଦ୍ୟାଳୟର ନୂତନ କ୍ୟାମ୍ପସ୍ ନିର୍ମାଣ କରାଯାଇ ୧୯୬୨ ମସିହାରେ ବିଶ୍ୱବିଦ୍ୟାଳୟର ଶିକ୍ଷାଦାନୀ ବିଭାଗମାନ ଏବଂ ପ୍ରଶାସନିକ କାର୍ଯ୍ୟାଳୟ କଟକରୁ ବାଣୀବିହାରକୁ ସ୍ଥାନାନ୍ତରିତ ହୋଇଥିଲା । ୧୯୬୦ ରୁ ୧୯୭୦ ମସିହା ମଧ୍ୟରେ କେନ୍ଦ୍ର ଓ ରାଜ୍ୟ ସରକାର ଅନେକ ବୈଷୟିକ କଲେଜ ପ୍ରତିଷ୍ଠା କରିଥିଲେ । ରାଉରକେଲାରେ ଆଞ୍ଚଳିକ ଇଞ୍ଜିନିଅରିଂ କଲେଜ, ବୁର୍ଲାରେ ମେଡ଼ିକାଲ ଓ ଇଞ୍ଜିନିଅରିଂ କଲେଜ, ଭୁବନେଶ୍ୱରରେ ଆଞ୍ଚଳିକ ଶିକ୍ଷା କଲେଜ, ସମ୍ବଲପୁର ଏବଂ ବ୍ରହ୍ମପୁରରେ ଟ୍ରେନିଂ କଲେଜ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ।

୧୯୬୦ ମସିହା ପରେ ସମଗ୍ର ରାଜ୍ୟରେ ଘରୋଇ ଉଦ୍ୟମରେ କଳା, ବିଜ୍ଞାନ ଓ ବାଣିଜ୍ୟ ବିଷୟରେ ବହୁ କଲେଜ ପ୍ରତିଷ୍ଠିତ ହୋଇଥିଲା । ମାତ୍ର ସେ କଲେଜମାନଙ୍କରେ ଶିକ୍ଷାଦାନର ବିଭିନ୍ନ ସୁବିଧା ଯୋଗାଇ ଦିଆଯାଇ ନ ଥିବାରୁ ସେ କଲେଜଗୁଡ଼ିକ ଦୁର୍ବଳ ଥିଲା । ରାଜ୍ୟ ସରକାର ମଧ୍ୟ ଫୁଲବାଣୀ, ଭବାନୀପାଟଣା ପ୍ରଭୃତି ଅନୁନ୍ନତ ଅଞ୍ଚଳରେ କଳା, ବିଜ୍ଞାନ ଓ ବାଣିଜ୍ୟରେ ସରକାରୀ କଲେଜମାନ ପ୍ରତିଷ୍ଠା କରିଥିଲେ । ୧୯୬୭ ମସିହା ସୁଦ୍ଧା ରାଜ୍ୟରେ କଲେଜ ଓ ଛାତ୍ର ଛାତ୍ରୀ ସଂଖ୍ୟା ବିଶେଷ ବୃଦ୍ଧି ପାଇବାରୁ ରାଜ୍ୟ ସରକାର ରାଜ୍ୟର ପଶ୍ଚିମାଞ୍ଚଳ ଓ ଦକ୍ଷିଣାଞ୍ଚଳ ପାଇଁ ଯଥାକ୍ରମେ ସମ୍ବଲପୁର ଓ ବ୍ରହ୍ମପୁର ଠାରେ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠା କଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ କେବଳ କଟକ, ପୁରୀ, ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର ଓ ଢେଙ୍କାନାଳ ଜିଲ୍ଲାମାନଙ୍କର ଉଚ୍ଚ ଶିକ୍ଷା ଅନୁଷ୍ଠାନମାନ ରହିଥିଲା । ସୁତରାଂ ୧୯୫୬ ମସିହା ଠାରୁ ୧୯ ୦ ମସିହା ମଧ୍ୟରେ ରାଜ୍ୟରେ ଉଚ୍ଚ ଶିକ୍ଷାର ପ୍ରସାର ହୋଇଥିଲା ଏବଂ ଉଚ୍ଚଶିକ୍ଷା ୧ ଷ୍ଠାନମାନ

ପୁନର୍ଗଠିତ ହୋଇଥିଲା । ମାତ୍ର ବେସରକାରୀ ଅନୁଷ୍ଠାନମାନ ବହୁତ ଦୁର୍ବଳ କଲେଜ ପ୍ରତିଷ୍ଠା କରିଥିବା ହେତୁ ଶିକ୍ଷା ଓ ପରୀକ୍ଷାର ମାନ ଅନେକ ପରିମାଣରେ ହ୍ରାସ ପାଇଥିଲା । ତଥାପି କଲେଜ ପ୍ରତିଷ୍ଠା ପ୍ରଣାଳୀ ଏବଂ କଲେଜ ସଂଖ୍ୟା ରାଜ୍ୟ ସରକାର ଏବଂ ବିଶ୍ୱବିଦ୍ୟାଳୟର ନିୟନ୍ତ୍ରଣ ବାହାରକୁ ଯାଇ ନ ଥିଲା । ରାଜ୍ୟ ସରକାରଙ୍କ ଠାରୁ ସମ୍ମତି ନ ପାଇଲେ ବେସରକାରୀ ଅନୁଷ୍ଠାନମାନ କଲେଜ ପ୍ରତିଷ୍ଠା କରି ପାରୁ ନ ଥିଲେ ଏବଂ ବିଶ୍ୱବିଦ୍ୟାଳୟ ମଧ୍ୟ ସହବନ୍ଧନ ଆଦେଶ ଦେଉ ନ ଥିଲା । ସାଧାରଣ ଭାବରେ ଦେଖିବାକୁ ଗଲେ ୧୯୬୦ ମସିହା ଠାରୁ ୧୯୮୦ ମସିହା ପର୍ଯ୍ୟନ୍ତ ସମୟ ଓଡ଼ିଶାରେ ଉଚ୍ଚଶିକ୍ଷା ଓ ବିଶ୍ୱବିଦ୍ୟାଳୟମାନଙ୍କର ପୁନର୍ଗଠନ ଓ ସୁନିୟନ୍ତ୍ରଣର ସମୟ ଥିଲା । ବହୁ ଉଦ୍ୟମ ସତ୍ତ୍ୱେ ରାଜ୍ୟ ସରକାର ଓ ବିଶ୍ୱବିଦ୍ୟାଳୟମାନ ରାଜ୍ୟରେ ପ୍ରତିଷ୍ଠିତ ଦୁର୍ବଳ ଘରୋଇ କଲେଜମାନଙ୍କୁ ସୁନିୟନ୍ତ୍ରିତ କରିପାରି ନ ଥିଲେ ।

୧୯୮୦ ମସିହା ପରେ ରାଜ୍ୟରେ ଉଚ୍ଚ ଶିକ୍ଷା ପ୍ରସାର ଓ ଶିକ୍ଷାର ମାନ ହ୍ରାସର ତୃତୀୟ ପର୍ଯ୍ୟାୟ ଆରମ୍ଭ ହେଲା । ୧୯୮୦ ମସିହାରେ ସମଗ୍ର ରାଜ୍ୟରେ ଉଚ୍ଚ ମାଧ୍ୟମିକ ଏବଂ ଯୁକ୍ତ ଦୁଇ ପରୀକ୍ଷା ପରିଚାଳନା ନିମିତ୍ତ ଉଚ୍ଚ ମାଧ୍ୟମିକ ଶିକ୍ଷା ବୋର୍ଡ଼ ପ୍ରତିଷ୍ଠିତ ହେଲା ଏବଂ ରାଜ୍ୟରେ କଳା, ବିଜ୍ଞାନ ଏବଂ ବାଣିଜ୍ୟ ପ୍ରଭୃତି ବିଷୟରେ ପରୀକ୍ଷା ପରିଚାଳନା ଦାୟିତ୍ୱ ତାହାକୁ ଦିଆଯାଇଥିଲା । ବିଶ୍ୱବିଦ୍ୟାଳୟମାନଙ୍କ ହାତରେ କେବଳ ସ୍ନାତକ ଓ ସ୍ନାତକୋତ୍ତର ପରୀକ୍ଷା ପରିଚାଳନା ଏବଂ ଗବେଷଣା ପ୍ରଭୃତି ନ୍ୟସ୍ତ ଥିଲା । ବାସ୍ତବ କ୍ଷେତ୍ରରେ ଦେଖିବାକୁ ଗଲେ ମୁଖ୍ୟତଃ ରାଜନୈତିକ କାରଣ ହେତୁ ରାଜ୍ୟରେ ଅଣଯୋଜନାବଦ୍ଧ ଭାବରେ ଅତି ଦୁର୍ବଳ କଲେଜମାନ ସ୍ଥାପନ ପ୍ରକ୍ରିୟା ରାଜ୍ୟ ସରକାରଙ୍କ ନିୟନ୍ତ୍ରଣ ବାହାରକୁ ଚାଲିଯାଇଛି । ରାଜନୈତିକ ନେତା ଓ ଲୋକଙ୍କ ଦାବିର ପ୍ରତିରୋଧ କରି ନ ପାରି ରାଜ୍ୟ ସରକାର ବହୁ ଅଞ୍ଚଳରେ ଉଚ୍ଚ ଶିକ୍ଷା ପାଇଁ କୌଣସି ସୁବିଧା ନ ଥାଇ ଦୁର୍ବଳ କଲେଜ ସ୍ଥାପନ ପାଇଁ ସମ୍ମତି ଦେଉଛନ୍ତି । ରାଜ୍ୟ ସରକାରଙ୍କର ସମ୍ମତି ହେତୁ ବିଶ୍ୱବିଦ୍ୟାଳୟମାନ ତାହାର ପ୍ରତିରୋଧ କରି ପାରୁ ନାହାନ୍ତି । ୧୯୯୫-୯୬ ମସିହା ସୁଦ୍ଧା ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ୩୭୩ଟି ଆଫିଲିଏଟେଡ୍ କଲେଜ ଥିଲା । ସେଥିମଧ୍ୟରୁ ୩୨୩ ଟି କଳା, ବିଜ୍ଞାନ ଓ ବାଣିଜ୍ୟରେ ସାଧାରଣ ଡିଗ୍ରୀ କଲେଜ ଏବଂ ୫୦ ଗୋଟି ବୈଷୟିକ କଲେଜ । ଏ କଲେଜଗୁଡ଼ିକ ମଧ୍ୟରୁ ସରକାରୀ କଲେଜମାନଙ୍କ ସଂଖ୍ୟା ଅତି ଅଳ୍ପ । ଅଧିକାଂଶ କଳା, ବିଜ୍ଞାନ ଓ ବାଣିଜ୍ୟ ଡିଗ୍ରୀ କଲେଜ ଘରୋଇ କଲେଜ । ସ୍ନାତକୋତ୍ତର ଶ୍ରେଣୀମାନଙ୍କର ପ୍ରାୟ ତିନି ହଜାର ଛାତ୍ରଙ୍କ ସମେତ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ପ୍ରାୟ ଦୁଇ ଲକ୍ଷ ଛାତ୍ରଛାତ୍ରୀ ଅଧ୍ୟୟନ କରୁଛନ୍ତି । ତାହା ବ୍ୟତୀତ ବର୍ତ୍ତମାନ ବହୁ ଘରୋଇ କଲେଜ ସରକାର ଓ ବିଶ୍ୱବିଦ୍ୟାଳୟ ଅନୁମତି ବିନା ସ୍ଥାପିତ ହୋଇଛି । ସେମାନେ ସରକାରୀ ଅନୁମୋଦନ ପାଇଁ ଦାବି କରୁଛନ୍ତି ଏବଂ ଅନୁମୋଦନ ଅପେକ୍ଷାରେ ଅଛନ୍ତି । ସେଥିରେ ପଢୁଥିବା ପିଲାମାନେ ଘରୋଇ ଭାବରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେଉଛନ୍ତି । ରାଜନୈତିକ ଚାପରେ ରାଜ୍ୟ ସରକାର, ବିଶ୍ୱବିଦ୍ୟାଳୟ ଏବଂ

ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ବିରୋଧ ସତ୍ତ୍ୱେ ଏହି ବିଶାଳ ସଂଖ୍ୟାରେ ଅତି ଦୁର୍ବଳ କଲେଜମାନ ରାଜ୍ୟରେ ପ୍ରତିଷ୍ଠିତ ହେଉଛି । ସେ କଲେଜମାନଙ୍କରେ ଘର, ଦ୍ୱାର, ଫର୍ନିଚର, ଲାଇବ୍ରେରୀ, ଲାବୋରେଟରୀ, ହଷ୍ଟେଲ ଓ ଖେଳପଡ଼ିଆ ପ୍ରଭୃତି ଶିକ୍ଷାଦାନର କୌଣସି ସୁବିଧା ନାହିଁ । ଶିକ୍ଷକମାନେ ଅତି ଅଳ୍ପ ହାରରେ ଦରମା ପାଉଛନ୍ତି ଏବଂ ନିୟମିତ ଦରମା ଓ ଚାକିରି ସର୍ତ୍ତ ପାଇଁ ବରାବର ଆନ୍ଦୋଳନ କରୁଛନ୍ତି, କଲେଜ ମାନଙ୍କରେ ନିୟମିତ ଭାବରେ ପଢ଼ାପଢ଼ି ହେଉ ନାହିଁ, ପିଲାମାନେ ଟ୍ୟୁସନ ଉପରେ ନିର୍ଭର କରୁଛନ୍ତି ଏବଂ ପରୀକ୍ଷାମାନଙ୍କରେ ବ୍ୟାପକ କପି ହେଉଛି । କପି ହେତୁ ପରୀକ୍ଷା ବାତିଲ କଲେ ଛାତ୍ରଛାତ୍ରୀମାନେ ଆନ୍ଦୋଳନ କରୁଛନ୍ତି । ଫଳରେ ଶିକ୍ଷାର ମାନ ନିମ୍ନତମ ସ୍ଥାନକୁ ଖସିଯାଇଛି । ସ୍ନାତକ ସ୍ତରରେ ବିଶ୍ୱବିଦ୍ୟାଳୟ ଅଧୀନରେ ଚାଲିଥିବା ଉଚ୍ଚଶିକ୍ଷାର ଏହି ଶୋଚନୀୟ ପରିସ୍ଥିତି, ରାଜ୍ୟ ସରକାର ଏବଂ ବିଶ୍ୱବିଦ୍ୟାଳୟମାନଙ୍କର ନିୟନ୍ତ୍ରଣ ବାହାରକୁ ଚାଲିଯାଉଛି । ସ୍ଥୂଳତଃ କଲେଜ ସ୍ଥାପନ, ସେଗୁଡ଼ିକର ପରିଚାଳନା ଏବଂ ତହିଁରେ ଶିକ୍ଷାଦାନ ଓ ପରୀକ୍ଷା ପରିଚାଳନାରେ ଅରାଜକତା ପରିସ୍ଥିତି ଉପୁଜିଛି ।

ବିଶ୍ୱବିଦ୍ୟାଳୟର ପ୍ରଶାସନ କ୍ଷେତ୍ରରେ ମଧ୍ୟ ବିଗତ ପଚିଶ ବର୍ଷ ମଧ୍ୟରେ ଅତିମାତ୍ରାରେ ଅସ୍ଥିରତା ସୃଷ୍ଟି ହୋଇଛି ଏବଂ ସେଥିଯୋଗୁଁ ଉନ୍ନୟନ କାର୍ଯ୍ୟରେ ପ୍ରଗତି ହୋଇପାରି ନାହିଁ । ମୁଁ ଅନୁଶୀଳନ କରି ଦେଖୁଛି, ୧୯୪୩ ମସିହାରେ ବିଶ୍ୱବିଦ୍ୟାଳୟ ଆରମ୍ଭରୁ ୧୯୭୧ ମସିହାରେ ସଦାଶିବବାବୁ ଇସ୍ତଫା ଦେବା ପର୍ଯ୍ୟନ୍ତ ୨୮ ବର୍ଷ ମଧ୍ୟରେ ବିଶ୍ୱବିଦ୍ୟାଳୟରେ ମାତ୍ର ଚାରିଜଣ କୁଳପତି ଥିଲେ । ସେମାନଙ୍କ ମଧ୍ୟରୁ ପରିଜା ପନ୍ଦରବର୍ଷ ଅଧେ, ସଦାଶିବବାବୁ ପାଞ୍ଚବର୍ଷ ଚାରିମାସ, ଚିନ୍ତାମଣି ଆଚାର୍ଯ୍ୟ ତିନିବର୍ଷ ଦୁଇମାସ ଏବଂ ପରଶୁରାମବାବୁ ସାଢ଼େ ତିନିବର୍ଷ କୁଳପତି ଥିଲେ । କୁଳପତିମାନେ ସ୍ଥାୟୀ ଭାବରେ ଅଧିକ ସମୟ କୁଳପତି ହୋଇଥିବାରୁ ବିଶ୍ୱବିଦ୍ୟାଳୟର ପ୍ରଗତି ଏବଂ ଅଧିକ ଉନ୍ନୟନମୂଳକ କାର୍ଯ୍ୟ ହୋଇପାରିଥିଲା । ମାତ୍ର ୧୯୭୧ ମସିହାରୁ ୧୯୯୮ ମସିହା ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟରେ ନିୟମିତ ପ୍ରଣାଳୀରେ ନିଯୁକ୍ତ ୯ ଜଣ ସ୍ଥାୟୀ କୁଳପତି, ୬ ଜଣ ଅସ୍ଥାୟୀ କୁଳପତି, ଚାରିଜଣ ସରକାରୀ ପ୍ରଶାସକ ଏବଂ ତିନି ଚାରି ଜଣ କାମଚଳା କୁଳପତି ହୋଇଛନ୍ତି । ଅର୍ଥାତ୍ ୨୭ ବର୍ଷ ମଧ୍ୟରେ ପ୍ରାୟ କୋଡ଼ିଏ ଜଣ କୁଳପତି ହୋଇଛନ୍ତି । ସ୍ଥାୟୀ କୁଳପତିଙ୍କର ସମୟ ସୀମା ତିନିବର୍ଷ ହୋଇଛି ଏବଂ ୯ ଜଣ ସ୍ଥାୟୀ କୁଳପତିଙ୍କ ମଧ୍ୟରୁ ମାତ୍ର ଚାରିଜଣ ପୂର୍ଣ୍ଣ ସମୟ ରହି ପାରିଛନ୍ତି । ଅନ୍ୟମାନେ ବାଧ୍ୟ ହୋଇ ଅଧାସମୟରୁ ଚାଲିଯାଇଛନ୍ତି । ଏଥି ମଧ୍ୟରେ ବିଶ୍ୱବିଦ୍ୟାଳୟ ଶାସନ ଦୁଇଥର ବେଶୀ ସମୟ ଏବଂ ଆଉ ଦୁଇଥର ଅଳ୍ପ ସମୟ ପାଇଁ ରାଜ୍ୟ ସରକାରଙ୍କ ଦ୍ୱାରା ନିଯୁକ୍ତ ପ୍ରଶାସକଙ୍କ ହାତକୁ ଯାଇଛି । ବହୁ କୁଳପତି ଓ ପ୍ରଶାସକ ବର୍ଷେ ଦେଢ଼ବର୍ଷ ପରେ ବିଶ୍ୱବିଦ୍ୟାଳୟରୁ ବିଦାୟ ନେଇଛନ୍ତି । ଏପରି ଅସ୍ଥିର ଶାସନ ଏବଂ ଅସ୍ଥାୟୀ ଶାସନକର୍ତ୍ତା ହେତୁ ବିଶ୍ୱବିଦ୍ୟାଳୟର ପ୍ରଗତି ବାଧାପ୍ରାପ୍ତ ହେବା ସ୍ୱାଭାବିକ । ସେଥିଯୋଗୁଁ ବିଶ୍ୱବିଦ୍ୟାଳୟର ଶିକ୍ଷାଦାନ, ସ୍ଥିର ଶିକ୍ଷାନୀତି ଏବଂ ଯୋଜନାବ ଭାବରେ

ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍, କୋଠାବାଡ଼ି, ଲାଇବ୍ରେରୀ, ଲାବୋରେଟରୀ ଏବଂ ଅନ୍ୟ ଛାତ୍ର ଓ ଶିକ୍ଷକ କଲ୍ୟାଣ କାର୍ଯ୍ୟରେ ଉନ୍ନତି ହୋଇପାରି ନାହିଁ । ରାଜ୍ୟରେ ରାଜନୈତିକ ପରିସ୍ଥିତି, ରାଜନୈତିକ ନେତାମାନଙ୍କର କାର୍ଯ୍ୟ ଓ ଛାତ୍ରଛାତ୍ରୀମାନଙ୍କର ବିଶୃଙ୍ଖଳା ହେତୁ ଏପରି ଅବସ୍ଥା ଉପୁଜିଛି ।

ବିଶ୍ୱବିଦ୍ୟାଳୟମାନଙ୍କର ସ୍ୱତନ୍ତ୍ରତା ବୋଲି ଯାହା କୁହାଯାଉଛି ତାହା କେବଳ କାଗଜପତ୍ରରେ କାର୍ଯ୍ୟ କରୁଛି । ବିଶ୍ୱବିଦ୍ୟାଳୟମାନଙ୍କର ନିଜର ଆୟ ଅଳ୍ପ । ସେମାନଙ୍କର ପରିଚାଳନାଗତ ଖର୍ଚ୍ଚ ପାଇ ସେମାନେ ରାଜ୍ୟ ସରକାରଙ୍କ ଅନୁଦାନ ଉପରେ ନିର୍ଭର କରୁଛନ୍ତି ଏବଂ ଉନ୍ନୟନ କାର୍ଯ୍ୟ ପାଇଁ ରାଜ୍ୟ ସରକାର ଏବଂ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଅନୁଦାନ ଉପରେ ନିର୍ଭର କରୁଛନ୍ତି । ଅନେକ ସମୟରେ ରାଜ୍ୟ ସରକାରଙ୍କର ଅଂଶର ଅଭାବରୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଅନୁଦାନ ମଧ୍ୟ ଉପଯୋଗ କରିହୁଏ ନାହିଁ । ବିଶ୍ୱବିଦ୍ୟାଳୟମାନଙ୍କର ଆୟ ବ୍ୟୟ ପ୍ରଭୃତି ଆର୍ଥିକ କାରବାର ଉପରେ ରାଜ୍ୟ ସରକାରଙ୍କର ଦୃଢ଼ ନିୟନ୍ତ୍ରଣ କ୍ଷମତା ରହିଛି । ବିଶ୍ୱବିଦ୍ୟାଳୟମାନଙ୍କରେ କୁଳପତି ନିଯୁକ୍ତି ପାଇଁ ନିର୍ଦ୍ଦିଷ୍ଟ ପ୍ରଣାଳୀ ଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ରାଜ୍ୟ ସରକାରଙ୍କ ଦ୍ୱାରା କୁଳପତି ନିଯୁକ୍ତି ହେଉଛନ୍ତି । ସ୍ୱାଧୀନତା ପୂର୍ବରୁ ବ୍ରିଟିଶ ସରକାର ଶିକ୍ଷା କ୍ଷେତ୍ରରେ ଏବଂ ସମାଜରେ ଲବ୍ଧପ୍ରତିଷ୍ଠ ବ୍ୟକ୍ତିମାନଙ୍କୁ କୁଳପତି ରୂପେ ନିଯୁକ୍ତି କରୁଥିଲେ । କୁଳପତିମାନଙ୍କର ଜ୍ଞାନ, ବିରାଟ ବ୍ୟକ୍ତିତ୍ୱ ସମାଜରେ ପ୍ରତିଷ୍ଠା ହେତୁ ସରକାର ସେମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରୁ ନ ଥିଲେ । ବ୍ରିଟିଶ ରାଜତ୍ୱ ସମୟରେ ସାର ସର୍ବପଲ୍ଲୀ ରାଧାକ୍ରିଷ୍ଣନ, ଆଶୁତୋଷ ମୁଖାର୍ଜୀ, ସାର୍ ଗଙ୍ଗାନାଥ ଝା, ଲକ୍ଷ୍ମଣ ସ୍ୱାମୀ ମୁଦାଲିଅର ଏବଂ ସଚ୍ଚିଦାନନ୍ଦ ସିହ୍ନାଙ୍କ ପରି ଯଶସ୍ୱୀ ବିରାଟ ବ୍ୟକ୍ତିମାନେ କୁଳପତି ଥିଲେ । ଆମ ବିଶ୍ୱବିଦ୍ୟାଳୟରେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କର ସେହିପରି ଯଶ ଓ ବ୍ୟକ୍ତିତ୍ୱ ଥିଲା । ସ୍ୱାଧୀନତା ପରେ ବିଶେଷତଃ ବିଗତ ତିରିଶ ବର୍ଷ ମଧ୍ୟରେ ରାଜନୈତିକ ବ୍ୟକ୍ତିମାନେ ନିଜକୁ ସର୍ବ ଶକ୍ତିମାନ ବୋଲି ମନେ କରୁଛନ୍ତି । ରାଜନୈତିକ କ୍ଷେତ୍ରରେ ସଫଳତା ଅର୍ଜନ କଲେ ସେମାନେ ସବୁ ବିଷୟରେ ଜ୍ଞାନୀ ଏବଂ ସବୁ କ୍ଷେତ୍ରରେ ସର୍ବୋଚ୍ଚ ସମ୍ମାନର ଅଧିକାରୀ ହୋଇଗଲେ ବୋଲି ମନେ କରୁଛନ୍ତି । ଆମ ଅନୁନ୍ନତ ସମାଜରେ ଲୋକମାନେ ମଧ୍ୟ ସେମାନଙ୍କୁ ସେପରି ସମ୍ମାନ ଓ ଅଧିକାର ଦେଉଛନ୍ତି । ସେମାନେ ସୁବିଧାଜନକ ବ୍ୟକ୍ତିମାନଙ୍କୁ ବିଶ୍ୱବିଦ୍ୟାଳୟମାନଙ୍କର କୁଳପତି ରୂପେ ନିଯୁକ୍ତ କରୁଛନ୍ତି । ସେ କୁଳପତିମାନେ ନିଜର ସ୍ୱାଧୀନ ମତ ଓ ସ୍ୱାଭିମାନ ପ୍ରକାଶ ନ କରି ସେମାନଙ୍କୁ ନିଯୁକ୍ତ କରିଥିବା ରାଜନୈତିକ ନେତାମାନଙ୍କର ସ୍ତାବକ ହୋଇ ଯାଉଛନ୍ତି । ସେଥିଯୋଗୁଁ ସେମାନଙ୍କର ସମାଜରେ ପ୍ରତିଷ୍ଠା ଓ ସମ୍ମାନ ହ୍ରାସ ପାଉଛି । ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍, ଗଙ୍ଗାନାଥ ଝା ଏବଂ ଲକ୍ଷ୍ମଣ ସ୍ୱାମୀ ମୁଦାଲିଅର୍ ପ୍ରଭୃତିଙ୍କର ପ୍ରତିଷ୍ଠା ଆମ ସମୟରେ ନିଯୁକ୍ତ କୁଳପତିମାନଙ୍କର ନ ଥିଲା । ଦିନକୁ ଦିନ ଏ ଅବସ୍ଥାରେ ମଧ୍ୟ ଅବନତି ଘଟୁଛି । କୁଳପତିମାନଙ୍କର ବ୍ୟକ୍ତିତ୍ୱ ଏବଂ ବିଶ୍ୱବିଦ୍ୟାଳୟମାନଙ୍କର ସ୍ୱାତନ୍ତ୍ର୍ୟ ରାଜନୈତିକ

ବ୍ୟକ୍ତିମାନଙ୍କର କ୍ଷମତା ଆଗରେ ମ୍ଳାନ ହୋଇ ଯାଉଛି । ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଜ୍ଞାନ ଅର୍ଜନରେ ମନୋଯୋଗ ନ ଦେଇ ଅଧ୍ୟାପକ ଓ କୁଳପତିଙ୍କର ନେତୃତ୍ୱକୁ ଅବଜ୍ଞା କରି କ୍ଷମତା ପାଇଁ ବିଭିନ୍ନ ରାଜନୈତିକ ନେତାଙ୍କ ପଛରେ ଧାବମାନ ହେଉଛନ୍ତି । ବିଶ୍ୱବିଦ୍ୟାଳୟମାନ ଜ୍ଞାନ ଅର୍ଜନ ଓ ଗବେଷଣାର କେନ୍ଦ୍ର ନ ହୋଇ ରାଜନୈତିକ ଦଳାଦଳିର କେନ୍ଦ୍ର ହେଉଛି । ଏହା ଆମ ଦେଶରେ ଶିକ୍ଷା କ୍ଷେତ୍ରରେ ପ୍ରଗତିର ଶୁଭ ସୂଚନା ନୁହେଁ । ଏପରି ଅବସ୍ଥା ଆମ ଗୁରୁକୁଳ ଆଶ୍ରମମାନଙ୍କରେ ନ ଥିଲା କିମ୍ୱା ବର୍ତ୍ତମାନ ପାଶ୍ଚାତ୍ୟ ଦେଶମାନଙ୍କରେ କେମ୍ବ୍ରିଜ, ଅକ୍ସଫୋର୍ଡ଼, ହାରଭାର୍ଡ଼ ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କରେ ନାହିଁ ।

# ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରାମ୍ୟ ଅର୍ଥନୀତି ଓ ସମାଜବିଜ୍ଞାନ ବିଭାଗ

ବିଲାତରୁ ଫେରି, ୧୯୫୫ ମସିହାର ଗ୍ରୀଷ୍ମ ଛୁଟି ପରେ ମୁଁ ରେଭେନ୍ସା କଲେଜର ଅର୍ଥନୀତି ବିଭାଗରେ ଜଣେ ଲେକ୍‌ଚରର ରୂପେ ଯୋଗ ଦେଇଥିଲି । ସେତେବେଳେ ଡକ୍ଟର ବଳଭଦ୍ର ପ୍ରସାଦ ଡି.ପି.ଆଇ. ଏବଂ ପ୍ରଫେସର ବାମାଚରଣ ଦାସ ରେଭେନ୍ସା କଲେଜର ପ୍ରିନ୍ସିପାଲ୍ ଥିଲେ । ଡକ୍ଟର ସଦାଶିବ ମିଶ୍ର ରେଭେନ୍ସା କଲେଜର ଅର୍ଥନୀତି ବିଭାଗର ମୁଖ୍ୟ ଅଧ୍ୟାପକ ଏବଂ ଡକ୍ଟର ପରଶୁରାମ ମିଶ୍ର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସେହି ବର୍ଷ ଆମେରିକାର ଫୋର୍ଡ଼ ଫାଉଣ୍ଡେସନ୍ ଗ୍ରାମ୍ୟ ଅର୍ଥନୀତି ଏବଂ ସମାଜ ବିଜ୍ଞାନରେ ଗବେଷଣା ପାଇଁ ଭାରତବର୍ଷର ଦିଲ୍ଲୀ, ବମ୍ବେ, ମାନ୍ଦ୍ରାଜ, ପୁନା ଏବଂ ଉତ୍କଳ ଏହି ପାଞ୍ଚଗୋଟି ବିଶ୍ୱବିଦ୍ୟାଳୟକୁ ଚାରିବର୍ଷ ପାଇଁ ଗୋଟିଏ ଲେଖାଏଁ ଅନୁଦାନ ଦେଇଥିଲେ । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର ଭାରତ ବର୍ଷରେ ଦିଲ୍ଲୀ, ବମ୍ବେ, ମାନ୍ଦ୍ରାଜ ଓ ପୁନା ସହିତ ସମାନ ସୁନାମ ନ ଥିଲା । ମାତ୍ର ଡକ୍ଟର ସଦାଶିବ ମିଶ୍ରଙ୍କର ପୁନାର ଗୋଖଲେ ଅର୍ଥନୀତି ଏବଂ ରାଜନୀତି ଇନ୍‌ଷ୍ଟିଚ୍ୟୁଟ୍‌ର ଡିରେକ୍ଟର ଡି.ଆର୍. ଗାଡ଼୍‌ଗିଲଙ୍କ ସହିତ ଘନିଷ୍ଠତା ଥିଲା ଏବଂ ଗାଡ଼୍‌ଗିଲଙ୍କର ତାଙ୍କ ପ୍ରତି ଉଚ୍ଚ ଧାରଣା ଥିଲା । ଗାଡ଼୍‌ଗିଲଙ୍କ ପରାମର୍ଶରେ ଫୋର୍ଡ଼ ଫାଉଣ୍ଡେସନ୍ ଭାରତର ନିର୍ଦ୍ଦିଷ୍ଟ ପାଞ୍ଚଗୋଟି ବିଶ୍ୱବିଦ୍ୟାଳୟକୁ ଅନୁଦାନ ଦେଇଥିବାରୁ, ଉତ୍କଳ ବିଶ୍ୱବିଦ୍ୟାଳୟ ପାଞ୍ଚଗୋଟି ବିଶ୍ୱବିଦ୍ୟାଳୟ ମଧ୍ୟରେ ସ୍ଥାନ ପାଇଥିଲା । ସୁତରାଂ ଡକ୍ଟର ସଦାଶିବ ମିଶ୍ରଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ସେ ଫୋର୍ଡ଼ ଫାଉଣ୍ଡେସନ୍ ଅନୁଦାନ ମିଳିଥିଲା ।

ସେହି ପରିକଳ୍ପନା ଅନୁସାରେ ଫୋର୍ଡ଼ ଫାଉଣ୍ଡେସନ୍ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଚାରିବର୍ଷ ପାଇଁ ଗ୍ରାମ୍ୟ ଅର୍ଥନୀତି ଓ ସମାଜବିଜ୍ଞାନରେ ଗବେଷଣା ପାଇଁ ବାଉନ ହଜାର ଡଲାର ଅନୁଦାନ ଦେଇଥିଲେ । ସେଥିରେ ଯୋଜନା ଥିଲା ଯେ ସେ ଅନୁଦାନରେ ଉତ୍କଳ ବିଶ୍ୱବିଦ୍ୟାଳୟ ଗ୍ରାମ୍ୟ ଅର୍ଥନୀତି ଓ ସମାଜ ବିଜ୍ଞାନ ବିଷୟରେ ଗୋଟିଏ ଗବେଷଣା ବିଭାଗ ଖୋଲିବ । ସେଥିରେ ଆଠ ଜଣ ରିସର୍ଚ୍ଚ ସ୍କଲାର ଏବଂ ତିନିଜଣ ରିସର୍ଚ୍ଚ ଫେଲୋ ଉପରୋକ୍ତ ବିଷୟମାନଙ୍କରେ ଗବେଷଣା କରିବେ । ବିଭାଗରେ ଗବେଷଣା ଛାତ୍ରମାନଙ୍କର ଗବେଷଣା ପରିଚାଳନା କରିବା ଏବଂ ନିଜେ ଗବେଷଣା କରିବା ପାଇଁ ଜଣେ ଡିରେକ୍ଟର, ଦୁଇଜଣ ରିଡ଼ର ଏବଂ ଦୁଇଜଣ ଲେକ୍‌ଚରର ଏବଂ ଆବଶ୍ୟକତା ଅନୁସାରେ ରିସର୍ଚ୍ଚ ଆସିଷ୍ଟାଣ୍ଟ ଓ ଅଫିସ କର୍ମଚାରୀ ରହିବେ । ସେମାନଙ୍କ ବ୍ୟତୀତ ଫୋର୍ଡ଼

ଫାଉଣ୍ଡେସନ୍ ନିଜ ଖର୍ଚ୍ଚରେ ଆମେରିକାରୁ ଜଣେ ଭିଜିଟିଂ ପ୍ରଫେସର ପଠାଇବେ । ଫୋର୍ଡ଼ ଫାଉଣ୍ଡେସନର ସର୍ତ୍ତ ଥିଲା ଯେ ଯେଉଁ ବିଶ୍ୱବିଦ୍ୟାଳୟ ଏ ଅନୁଦାନ ଗ୍ରହଣ କରିବ, ତାହା ଚାରି ବର୍ଷ ପରେ ନିଜ ଖର୍ଚ୍ଚରେ ଗବେଷଣା ବିଭାଗଟିକୁ ସ୍ଥାୟୀ ଭାବରେ ଚଳାଇବ ।

ଉତ୍କଳ ବିଶ୍ୱବିଦ୍ୟାଳୟ ଅନୁଦାନ ଗ୍ରହଣ କରି ଗବେଷଣା ବିଭାଗ ଆରମ୍ଭ କରିବାବେଳକୁ ୧୯୫୬ ମସିହା ଫେବୃୟାରୀ ମାର୍ଚ୍ଚ ମାସ ହୋଇଯାଇଥିଲା । ସେତେବେଳକୁ ପରଶୁରାମ ମିଶ୍ରଙ୍କ ପରେ ପରିଜା ବିଶ୍ୱବିଦ୍ୟାଳୟର କୁଳପତି ହୋଇ ସାରିଥିଲେ । ଏ ପ୍ରକଳ୍ପ ଅନୁମୋଦନ ପାଇଁ ବିଶ୍ୱବିଦ୍ୟାଳୟର ସିନେଟ୍ ମିଟିଂରେ ଉପସ୍ଥାପିତ କରାଗଲା । ସେ ପ୍ରକଳ୍ପରେ ପ୍ରସ୍ତାବ ଥିଲା ଯେ ଡକ୍ଟର ସଦାଶିବ ମିଶ୍ର ରେଭେନ୍ସା କଲେଜରେ ତାଙ୍କର ଅର୍ଥନୀତିରେ ମୁଖ୍ୟ ଅଧ୍ୟାପକ ପଦ ସହିତ ବିଶ୍ୱବିଦ୍ୟାଳୟର ସେ ଗ୍ରାମ୍ୟ ଅର୍ଥନୀତି ଏବଂ ସମାଜବିଜ୍ଞାନ ବିଭାଗର ଡିରେକ୍ଟର ହେବେ ।

ଏ ପ୍ରସ୍ତାବକୁ ସିନେଟର ବହୁ ସଭ୍ୟ ବିରୋଧ କଲେ । ସେତେବେଳେ ରେଭେନ୍ସା କଲେଜର ମାଥିମେଟିକ୍ସ, ଫିଜିକ୍ସ ଓ ବଟାନୀ ବିଭାଗର ମୁଖ୍ୟମାନେ ସଦାଶିବବାବୁଙ୍କ ଉପରେ ବିଶେଷ କ୍ଷୁବ୍ଧ ଥିଲେ । ତାହାର କାରଣ ହେଲା, ସେମାନେ ସମସ୍ତେ ସଦାଶିବବାବୁଙ୍କଠାରୁ ଆଗରୁ କଲେଜରେ ଲେକ୍‌ଚରର ହିସାବରେ ଯୋଗ ଦେଇଥିଲେ ଏବଂ ତାଙ୍କଠାରୁ ସିନିଅର ବା ବରିଷ୍ଠ ଥିଲେ । ମାତ୍ର ସଦାଶିବବାବୁ ଚେଷ୍ଟା କରି ଆଗ ପ୍ରଫେସର ହୋଇଯିବାରୁ ସେମାନଙ୍କଠାରୁ ବରିଷ୍ଠ ହୋଇଗଲେ ଏବଂ ତାହାଦ୍ୱାରା ତାଙ୍କର ସେମାନଙ୍କଠାରୁ ଆଗ ରେଭେନ୍ସା କଲେଜର ପ୍ରିନ୍ସିପାଲ ଏବଂ ଓଡ଼ିଶାର ଡି.ପି.ଆଇ. ହେବାର ପଥ ସୁଗମ ହେଲା । ସେଥିପାଇଁ ସେମାନେ ସଦାଶିବବାବୁଙ୍କ ଉପରେ କ୍ଷୁବ୍ଧ ଥିଲେ । ସେତେବେଳର ରେଭେନ୍ସା କଲେଜ ପ୍ରିନ୍ସିପାଲ ପ୍ରଫେସର ବାମାଚରଣ ଦାସଙ୍କର ମଧ୍ୟ ସଦାଶିବବାବୁଙ୍କ ସହିତ ବହୁ ବିଷୟରେ ମତଭେଦ ଥିଲା । ଉପରୋକ୍ତ ସମସ୍ତ ବ୍ୟକ୍ତି ବିଶ୍ୱବିଦ୍ୟାଳୟ ସିନେଟ୍‌ର ସଭ୍ୟ ଥିଲେ । ସେମାନେ ସମସ୍ତେ ଫୋର୍ଡ଼ ଫାଉଣ୍ଡେସନ ବିଭାଗ ବିଷୟରେ ଉପରୋକ୍ତ ପ୍ରସ୍ତାବର ବିରୋଧ କଲେ । ସେମାନେ ତର୍କ କଲେ ଯେ ସଦାଶିବବାବୁ ପ୍ରସ୍ତାବିତ ନୂତନ ବିଭାଗର ଡିରେକ୍ଟର ହୁଅନ୍ତୁ କିମ୍ବା ରେଭେନ୍ସା କଲେଜର ଅର୍ଥନୀତି ପ୍ରଫେସର ହୁଅନ୍ତୁ । ମାତ୍ର ଉଭୟ ବିଭାଗର କର୍ତ୍ତା ନ ହୁଅନ୍ତୁ । ସଦାଶିବବାବୁ କିନ୍ତୁ ରେଭେନ୍ସା କଲେଜ ଅର୍ଥନୀତି ବିଭାଗର ମୁଖ୍ୟ ଅଧ୍ୟାପକ ପଦ ଛାଡ଼ିବାକୁ ଇଚ୍ଛା କରୁ ନ ଥିଲେ । କୁଳପତି ପରିଜା ଏବଂ ଡି.ପି.ଆଇ. ଡକ୍ଟର ବଳଭଦ୍ର ପ୍ରସାଦ ସଦାଶିବବାବୁଙ୍କର ପ୍ରଶଂସକ ଓ ସମର୍ଥକ ଥିଲେ । ସେମାନେ କହୁଥିଲେ ଦିଲ୍ଲୀରେ ଭି.କେ. ଆର୍. ଭି. ରାଓ, ବମ୍ବେରେ ଦାନ୍ତୱାଲା ଏବଂ ପୁନାରେ ଗାଡ଼ଗିଲଙ୍କ ସୁନାମ ହେତୁ ଫୋର୍ଡ଼ ଫାଉଣ୍ଡେସନ୍ ସେ ସବୁ ବିଶ୍ୱବିଦ୍ୟାଳୟମାନଙ୍କୁ ଅନୁଦାନ ଦେଇଛି । ସେହିପରି ଉତ୍କଳରେ ସଦାଶିବବାବୁଙ୍କ ସୁନାମ ଯୋଗୁଁ, ଫୋର୍ଡ଼ ଫାଉଣ୍ଡେସନ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଅନୁଦାନ ଦେଇଛି । ଭାରତରୁ ବଛାଯାଇଥିବା ପାଞ୍ଚଗୋଟି ବିଶ୍ୱବିଦ୍ୟାଳୟ ମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାନ

ପାଇଥିବା ହେତୁ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ବଢ଼ିଛି । ସେଥିଯୋଗୁଁ ସେ ବିଭାଗରୁ ସଦାଶିବବାବୁଙ୍କୁ ବାଦ ଦେଇ ହେବ ନାହିଁ । ବହୁ ବାଦାନୁବାଦ ପରେ ସଦାଶିବବାବୁ କହିଲେ ଯେ ସେ ରେଭେନ୍ସା କଲେଜର ଅର୍ଥନୀତି ବିଭାଗର ମୁଖ୍ୟ ଅଧ୍ୟାପକ ରହିବେ । ସେଥି ସଙ୍ଗେ ସଙ୍ଗେ ବିଶ୍ୱବିଦ୍ୟାଳୟର ଫୋର୍ଡ଼ ଫାଉଣ୍ଡେସନ୍ ବିଭାଗର ଅନରାରୀ ବା କିଛି ଅର୍ଥ ନ ନେଇ ଡିରେକ୍ଟର ହେବାକୁ ରାଜି ଅଛନ୍ତି । ତାଙ୍କର ଏହି ଉକ୍ତି ଗୃହୀତ ହେଲା ଏବଂ ଉପରୋକ୍ତ ପ୍ରସ୍ତାବ ଅନୁସାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଫୋର୍ଡ଼ ଫାଉଣ୍ଡେସନ୍‌ର ଅନୁଦାନ ଗ୍ରହଣ କରି ଗ୍ରାମ୍ୟ ଅର୍ଥନୀତି ଏବଂ ସମାଜବିଜ୍ଞାନ ଗବେଷଣା ବିଭାଗ ପ୍ରତିଷ୍ଠା କରିବା ପାଇଁ ସିନେଟ୍ ଅନୁମୋଦନ କଲା । ଏ ପ୍ରସ୍ତାବ ପାସ୍ ହେବା ପରେ ରେଭେନ୍ସା କଲେଜର ଅନ୍ୟ ଅଧ୍ୟାପକମାନେ ଆହୁରି ଉତ୍କ୍ଷିପ୍ତ ହେଲେ ଏବଂ ସେହିଦିନଠାରୁ ଫୋର୍ଡ଼ ଫାଉଣ୍ଡେସନ୍ ବିଭାଗ ଉପରେ ସେମାନଙ୍କର ବିଷଦୃଷ୍ଟି ପଡ଼ିଲା ଓ ସେମାନେ ଚାକିରିରେ ଥିବା ପର୍ଯ୍ୟନ୍ତ ସେ ବିଭାଗକୁ ବିରୋଧ କରୁଥିଲେ ।

୧୯୫୬ ମସିହା ଅପ୍ରେଲ ମାସ ପରେ, ଫୋର୍ଡ଼ ଫାଉଣ୍ଡେସନର ଅନୁଦାନରେ ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରାମ୍ୟ ଅର୍ଥନୀତି ଓ ସମାଜବିଜ୍ଞାନ ବିଭାଗ ଆରମ୍ଭ ହେଲା । ଡକ୍ଟର ସଦାଶିବ ମିଶ୍ର ତାହାର ଅନରାରୀ ଡିରେକ୍ଟର ହେଲେ । ସେ ବିଭାଗ ବିଷୟ ଫୋର୍ଡ଼ ଫାଉଣ୍ଡେସନକୁ ପ୍ରସ୍ତାବ ଦେବା ସମୟରେ ସଦାଶିବବାବୁ ପ୍ରଥମରୁ ମୋ କଥା ମନେ ରଖିଥିଲେ । ସେ ଜାଣିଥିଲେ ଯେ ମୁଁ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ କୃଷି ଅର୍ଥନୀତି ବିଷୟରେ ଗବେଷଣା କରି ଡକ୍ଟରେଟ୍ ଡିଗ୍ରୀ ଲାଭ କରିଛି । ତେଣୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଗ୍ରାମ୍ୟ ଅର୍ଥନୀତି ବିଭାଗ ପ୍ରତିଷ୍ଠିତ ହେଲେ ମୋତେ ସେ ବିଭାଗର କାର୍ଯ୍ୟରେ ନିୟୋଜିତ କରାଯାଇପାରିବ । ବିଭାଗ ପ୍ରତିଷ୍ଠିତ ହେବା ପରେ ଅଧ୍ୟାପକ, ସ୍କଲାର ଓ ଫେଲୋମାନଙ୍କ ନିଯୁକ୍ତି ନିମିତ୍ତ ବିଜ୍ଞାପନ ଦିଆଯାଇ ବିଶ୍ୱବିଦ୍ୟାଳୟ ନିଯୁକ୍ତି ପ୍ରଣାଳୀରେ ସେମାନଙ୍କୁ ନିଯୁକ୍ତି ଦିଆଗଲା । ମୁଁ ଗ୍ରାମ୍ୟ ଅର୍ଥନୀତିରେ ରିଡ଼ର୍ ନିଯୁକ୍ତ ହୋଇ ୧୯୫୬ ମସିହା ସେପ୍ଟେମ୍ବର ମାସରେ ସେ ବିଭାଗରେ ଯୋଗ ଦେଲି । ବିଭାଗଟି ଅତି ବିବାଦୀୟ ପରିସ୍ଥିତିରେ ପ୍ରତିଷ୍ଠିତ ହୋଇଥିବାରୁ ମୁଁ ସେ ବିବାଦରେ ପ୍ରବେଶ କଲି ଏବଂ ସେ ବିବାଦରେ ମୋତେ ଚାକିରି ଶେଷ ପର୍ଯ୍ୟନ୍ତ ଘାଣ୍ଟି ହେବାକୁ ପଡ଼ିଥିଲା ।

ଗ୍ରାମ୍ୟ ଅର୍ଥନୀତି ଏବଂ ସମାଜବିଜ୍ଞାନ ବିଭାଗ ପ୍ରତିଷ୍ଠିତ ହେବା ପୂର୍ବରୁ ବିଶ୍ୱବିଦ୍ୟାଳୟ ଗୋଟିଏ ପରୀକ୍ଷାକାରୀ ଆଫିଲିଏଟିଂ ବିଶ୍ୱବିଦ୍ୟାଳୟ ଥିଲା । ଏହାର ପ୍ରତ୍ୟକ୍ଷ ଶାସନାଧୀନରେ କୌଣସି ଶିକ୍ଷାଦାନୀ ବା ଗବେଷଣା ବିଭାଗ ନ ଥିଲା । ଗ୍ରାମ୍ୟ ଅର୍ଥନୀତି ବିଭାଗ ବିଶ୍ୱବିଦ୍ୟାଳୟର ପ୍ରଥମ ପ୍ରତ୍ୟକ୍ଷ ଶାସନାଧୀନ ବିଭାଗ ହୋଇଥିଲା । ୧୯୪୩ ମସିହା ନଭେମ୍ବର ମାସରେ ବିଶ୍ୱବିଦ୍ୟାଳୟ ପ୍ରଥମ କାର୍ଯ୍ୟ ଆରମ୍ଭ କରିବା ସମୟରେ ଏହାର କାର୍ଯ୍ୟାଳୟ ରେଭେନ୍ସା କଲେଜର ପଶ୍ଚିମ ଛାତ୍ରାବାସର ଓ୍ୟାଡ଼େନ୍‌ଙ୍କ ପାଇଁ ଥିବା ବାସଗୃହରେ ଆରମ୍ଭ ହୋଇଥିଲା । ମୁଁ ୧୯୪୪-୪୫ ମସିହାରେ ସମ୍ବଲପୁର କଲେଜର ଲେକ୍‌ଚରର ଥିବାବେଳେ ସେ ଅଫିସକୁ କେତେଥର ଆସିଥିଲି । ବର୍ଷେ ଦେଢ଼ବର୍ଷ ପରେ

ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ ସମେତ ସମସ୍ତ କାର୍ଯ୍ୟାଳୟ କଟକ ଷ୍ଟେସନ ପାଖ ବର୍ଦ୍ଧମାନ କୋଠିକୁ ଉଠି ଆସିଥିଲା । ୧୯୫୨ ମସିହା ଡିସେମ୍ବର ମାସ ଶେଷରେ ମୁଁ ଲଣ୍ଡନ ଯିବା ପୂର୍ବରୁ ବିଶ୍ୱବିଦ୍ୟାଳୟ ଅଫିସ ସେଠାରେ ଥିଲା । ସେତେବେଳକୁ ପରଶୁରାମବାବୁ କୁଳପତି ଥିଲେ । ତାହା ପରେ ବିଶ୍ୱବିଦ୍ୟାଳୟ ଅଫିସ ମଙ୍ଗଳାବାଗର ପୁରୁଣା ସର୍କିଟ ହାଉସକୁ ଉଠି ଆସିଲା ଏବଂ ବର୍ଦ୍ଧମାନ କୋଠିରେ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ ଅବସ୍ଥାପିତ ହେଲା । ୧୯୬୨ ମସିହାରେ ବିଶ୍ୱବିଦ୍ୟାଳୟର ଅଫିସ ଏବଂ ଶିକ୍ଷାଦାନୀ ବିଭାଗ ସବୁ ବାଣୀବିହାରକୁ ସ୍ଥାନାନ୍ତର ହେବା ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ଅଫିସ ସେହି ପୁରୁଣା ସର୍କିଟ ହାଉସରେ ଥିଲା । ୧୯୫୬ ମସିହାରେ ଗ୍ରାମ୍ୟ ଅର୍ଥନୀତି ବିଭାଗ ପ୍ରତିଷ୍ଠିତ ହେବାବେଳକୁ ବିଶ୍ୱବିଦ୍ୟାଳୟର ଶିକ୍ଷାଦାନୀ କିମ୍ବା ଗବେଷଣା ବିଭାଗମାନଙ୍କ ପାଇଁ କୌଣସି ଘର ନ ଥିଲା । ଆମେ ସମସ୍ତେ ପ୍ରଥମେ ପ୍ରାୟ ଦୁଇ ମାସ ଲାଇବ୍ରେରୀର ଗୋଟିଏ ରୁମ୍‌ରେ ବସୁଥିଲୁ । ଦୁଇ ମାସ ପରେ ବର୍ଦ୍ଧମାନ କୋଠି ହତାରେ ଆଜବେଷ୍ଟସ୍ ଛାତ ଥିବା ପାଞ୍ଚଗୋଟି କୋଠରି ନିର୍ମିତ ହୋଇଥିଲା । ସେହିଥିରୁ ଗ୍ରାମ୍ୟ ଅର୍ଥନୀତି ବିଭାଗକୁ ତିନିଗୋଟି ରୁମ ଦିଆଯାଇଥିଲା । ୧୯୫୬ ମସିହାରେ ଭାରତରେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହେଲା ଏବଂ ସେ ଯୋଜନାରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଗଠିତ ହୋଇଥିଲା । ସି.ଡି. ଦେଶମୁଖ୍ ତାହାର ପ୍ରଥମ ଚେୟାରମାନ୍ ହୋଇଥିଲେ । ସେହି ଯୋଜନା କାଳରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସାହାଯ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ନୃତତ୍ତ୍ୱ, ସଂସ୍କୃତ ଏବଂ ଦର୍ଶନଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷାଦାନୀ ବିଭାଗ ଆରମ୍ଭ ହୋଇଥିଲା । ସେ ବିଭାଗମାନଙ୍କ ପାଇଁ କୌଣସି ଘର ନ ଥିବାରୁ ନୃତତ୍ତ୍ୱ ବିଭାଗ ଭୁବନେଶ୍ୱରରେ ଏବଂ ସଂସ୍କୃତ ଏବଂ ଦର୍ଶନବିଭାଗ ସେହି ବର୍ଦ୍ଧମାନ ହତାରେ ଅବସ୍ଥାପିତ ହୋଇଥିଲା । ସେ ବିଭାଗମାନଙ୍କର ଅଧ୍ୟାପକମାନଙ୍କ ବସିବା ନିମିତ୍ତ ଆଜ୍‌ବେସ୍‌ଟସ୍ ରୁମମାନଙ୍କରୁ ଗୋଟିଏ ଲେଖାଏଁ ଦିଆ ହୋଇଥିଲା ଏବଂ ସେମାନଙ୍କର କ୍ଲାସ ସବୁ ଲାଇବ୍ରେରୀର ଗୋଟିଏ ରୁମ୍‌ରେ ହେଉଥିଲା । ସେତେବେଳେ ସେ ବିଭାଗମାନଙ୍କରେ ଦୁଇ ଶ୍ରେଣୀ ମିଶି ବାର ତେରରୁ ବେଶୀ ଛାତ୍ରଛାତ୍ରୀ ନ ଥିଲେ । ସେଥିଯୋଗୁଁ ଲାଇବ୍ରେରୀ ଘରେ ପଢ଼ାପଢ଼ି କାର୍ଯ୍ୟ ଚଳି ଯାଉଥିଲା । ଏହା ପରେ ବର୍ଷେ ଦୁଇବର୍ଷ ମଧ୍ୟରେ ପରିସଂଖ୍ୟାନ, ମନସ୍ତତ୍ତ୍ୱ, ରାଜନୀତି, ପ୍ରାଣିବିଜ୍ଞାନ ପ୍ରଭୃତି ସ୍ନାତକୋତ୍ତର ବିଭାଗମାନ ପ୍ରତିଷ୍ଠିତ ହୋଇଥିଲା । ସେ ସବୁ ବିଭାଗ ରେଭେନ୍ସା କଲେଜରେ କାର୍ଯ୍ୟ କଲେ । ସେତେବେଳେ ନୀତିଗତ ଭାବରେ ସ୍ଥିର ହୋଇଥିଲା ଯେ, ଯେଉଁ ବିଷୟମାନଙ୍କରେ ରେଭେନ୍ସା କଲେଜରେ ସ୍ନାତକୋତ୍ତର ଶ୍ରେଣୀମାନ ଅଛି, ସେସବୁ ବିଷୟରେ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶିକ୍ଷାଦାନୀ ବିଭାଗ ଆରମ୍ଭ ନ କରି ନୂତନ ବିଷୟମାନଙ୍କରେ ସ୍ନାତକୋତ୍ତର ଶିକ୍ଷା ଆରମ୍ଭ କରାଯିବ । ସେଥିଯୋଗୁଁ ରେଭେନ୍ସା କଲେଜରେ ଥିବା ସବୁ ବିଜ୍ଞାନ ବିଭାଗ ଏବଂ କଳା ବିଭାଗ ବିଷୟରେ ୧୯୬୨ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ଏହି ବ୍ୟବସ୍ଥା ହୋଇଥିଲା । ଏଥି ମଧ୍ୟରେ ସେହି ଯୋଜନା

କାଳରେ, ଅର୍ଥାତ୍ ୧୯୫୬ ମସିହା ଅପ୍ରେଲ ମାସରୁ ୧୯୬୧ ମସିହା ମାର୍ଚ୍ଚ ମଧ୍ୟରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସାହାଯ୍ୟରେ ବିଶ୍ୱବିଦ୍ୟାଳୟ ପାଇଁ ସ୍ଥାୟୀ କ୍ୟାମ୍ପସ ସ୍ଥିର କରି ସେଥିରେ ଅନ୍ୟ ବିଶ୍ୱବିଦ୍ୟାଳୟମାନଙ୍କ ପରି, ଅଫିସ ଶିକ୍ଷାଦାନୀ ଓ ଗବେଷଣା ବିଭାଗ, ଅଧ୍ୟାପକ ଓ ଅଣଶିକ୍ଷକ କର୍ମଚାରୀମାନଙ୍କ ପାଇଁ ବାସଗୃହ, ଛାତ୍ରଛାତ୍ରୀମାନଙ୍କ ନିମିତ୍ତ ଛାତ୍ରାବାସ, ଲାଇବ୍ରେରୀ, ଡାକ୍ତରଖାନା ଓ କାଣ୍ଟିନ୍ ପ୍ରଭୃତି ବିଶ୍ୱବିଦ୍ୟାଳୟର ସମସ୍ତ ଆବଶ୍ୟକ ଗୃହ ନିର୍ମାଣ କରିବା ପାଇଁ ଉଦ୍ୟମ ହୋଇଥିଲା । ବିଶ୍ୱବିଦ୍ୟାଳୟ କାମ୍ପସ୍ କେଉଁଠାରେ ହେବ ସେଥିପାଇଁ ବାଦାନୁବାଦ ଚାଲିଲା । ଓଡ଼ିଶାର ରାଜଧାନୀ ପ୍ରତିଷ୍ଠାବେଳେ ଯେପରି ବାଦବିବାଦ ଲାଗିଥିଲା, ବିଶ୍ୱବିଦ୍ୟାଳୟ କ୍ୟାମ୍ପସ ସ୍ଥାପନ ପାଇଁ ମଧ୍ୟ ସେହିପରି ବାଦବିବାଦ ଲାଗିଗଲା । ବହୁ ଶିକ୍ଷାବିତ୍ ଏବଂ ନେତୃସ୍ଥାନୀୟ ବ୍ୟକ୍ତି ମତ ଦେଲେ ଯେ କଟକର ରେଭେନ୍ସା କଲେଜ ନିକଟରେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ଅବସ୍ଥାପିତ ହେଉ । କେତେକ କହିଲେ ରେଭେନ୍ସା କଲେଜ ହତା ଏବଂ ବର୍ଦ୍ଧମାନ କୋଠି ହତାରେ ବିଶ୍ୱବିଦ୍ୟାଳୟର ଘରଦ୍ୱାର ସବୁ ତିଆରି ହେଉ, କିନ୍ତୁ ଏତେ ସଂକୀର୍ଣ୍ଣ ସ୍ଥାନରେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ଧାରଣାକୁ ବହୁଲୋକ ବିରୋଧ କଲେ । କେତେକ ତହୁଁ କହିଲେ ମହାନଦୀ କୂଳେ କୁଷ୍ଠାଶ୍ରମ ପଡ଼ିଆରେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ ହେଉ । ଅନ୍ୟମାନେ ସେ ଧାରଣାକୁ ନାପସନ୍ଦ କଲେ । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ପରିଦର୍ଶକମାନେ ଆସି କଟକରେ ଦେଖାଯାଇଥିବା ସ୍ଥାନସବୁ ସଂକୀର୍ଣ୍ଣ ବୋଲି ପସନ୍ଦ କଲେ ନାହିଁ । ସେତେବେଳକୁ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେଣି । ତାଙ୍କର ପରାମର୍ଶରେ ଓଡ଼ିଶା ସରକାର ଜାତୀୟ ରାଜପଥ କଡ଼ରେ ବାଣୀବିହାରରେ ଥିବା ବିସ୍ତୀର୍ଣ୍ଣ ଜନବସତିରହିତ ସ୍ଥାନରେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ କରିବାକୁ ସ୍ଥିର କଲେ । ସେଥିପାଇଁ ଓଡ଼ିଶା ସରକାର ୪୦୦ ଏକର ଜମି ଦେଲେ । ଜମିର ସୀମା ନିର୍ଦ୍ଧାରିତ ହେଲା । ପରେ ୧୯୫୮ ମସିହା ଜାନୁଆରୀ ମାସ ପହିଲାରେ ଭାରତର ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ କ୍ୟାମ୍ପସର ଶିଳାନ୍ୟାସ କଲେ । ସେ କ୍ୟାମ୍ପସରେ ମାଷ୍ଟରପ୍ଲାନ ଅନୁସାରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସାହାଯ୍ୟରେ ବିଶ୍ୱବିଦ୍ୟାଳୟର କୋଠାବାଡ଼ି ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ୧୯୬୨ ମସିହା ଜୁଲାଇ ମାସରେ କଟକରୁ ବିଶ୍ୱବିଦ୍ୟାଳୟ ଅଫିସ, ଶିକ୍ଷାଦାନୀ ଓ ଗବେଷଣା ବିଭାଗମାନ ନୂତନ କ୍ୟାମ୍ପସକୁ ଉଠିଆସିଲା । ମାତ୍ର ବିଚିତ୍ର କଥା ଯେ ୧୯୭୫ ମସିହା ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ପାଇଁ ଦିଆଯାଇଥିବା ସେ ଜମି ରେଜିଷ୍ଟ୍ରି ହୋଇ ନ ଥିଲା । ସେ ଜମିରୁ ଡାକ ତାର ଏବଂ ଆୟକର ବିଭାଗମାନ କେତେକ ଅଂଶ ଅଧିକାର କରିନେଇ ସେଥିରେ ସେମାନଙ୍କର କେତେକ ଅଫିସ ଏବଂ କର୍ମଚାରୀମାନଙ୍କର ବାସଗୃହ ନିର୍ମାଣ କରିଗଲେ । ଶେଷରେ ୧୯୭୫ ମସିହାରେ ସରକାର ଯେତେବେଳେ ବିଶ୍ୱବିଦ୍ୟାଳୟର ଶାସନ ହାତକୁ ନେଇଥିଲେ, ସେତେବେଳେ ପ୍ରଶାସକ ଥିବା ଜ୍ଞାନଚାନ୍ଦଙ୍କୁ ବିଶ୍ୱବିଦ୍ୟାଳୟକୁ ପ୍ରଦତ୍ତ ଜମିକୁ ଶୀଘ୍ର ରେଜିଷ୍ଟ୍ରି କରିବାକୁ ଆମ୍ଭେମାନେ ଅନୁରୋଧ କଲୁ । ସେ ବିଶ୍ୱବିଦ୍ୟାଳୟର ଯେଉଁ ଜମିସବୁ ଅନ୍ୟ ବିଭାଗମାନ ନେଇ ଯାଇଥିଲେ, ସେଗୁଡ଼ିକୁ

ବାଦ ଦେଇ ନନ୍ଦନକାନନ ରାସ୍ତା ପାଖରେ ଆଉ କିଛି ଜମି ମିଶାଇ ପ୍ରାୟ ୩୯୮ ଏକର ଜମି ରେଜିଷ୍ଟ୍ରି କରିଥିଲେ । ତଥାପି ପରେ କେତେକ ଘରୋଇ ଲୋକ, ବିଶ୍ୱବିଦ୍ୟାଳୟର କିଛି ଜମି ବେଆଇନ୍ ଭାବରେ ଅଧିକାର କରିନେଇଛନ୍ତି ଏବଂ କ୍ୟାମ୍ପସ୍ ପାର୍ଶ୍ୱବର୍ତ୍ତୀ କେତେକ ଗାଁଲୋକ କ୍ୟାମ୍ପସ୍ ମଧ୍ୟରେ ଥିବା କେତେକ ଜମି ଦାବି କରି କଚେରିରେ ମକଦ୍ଦମା କରିଛନ୍ତି ।

୧୯୫୬ ମସିହା ସେପ୍ଟେମ୍ବର ମାସରୁ ବର୍ତ୍ତମାନ କୋଠି ପଡ଼ିଆରେ ଉପରୋକ୍ତ ତିନିଗୋଟି ଆଜବେଷ୍ଟସ୍ ଛାତ ଥିବା ରୁମ୍‌ରେ ଗ୍ରାମ୍ୟ ଅର୍ଥନୀତି ଏବଂ ସମାଜବିଜ୍ଞାନ ଗବେଷଣା ବିଭାଗ କାର୍ଯ୍ୟ ଆରମ୍ଭ କଲା । ରିସର୍ଚ୍ଚ ସ୍କଲାର ଓ ଫେଲୋମାନେ ବିଭାଗରେ ଯୋଗ ଦେଲେ । ମୁଁ ରେଭେନ୍ସା କଲେଜ ହତାରେ ରସାୟନ ବିଭାଗର ଲେକ୍‌ଚରର ରାଜକିଶୋର ମିଶ୍ରଙ୍କୁ ମିଳିଥିବା ଘରର ଗୋଟିଏ ଭାଗରେ ସପରିବାର ରହି ସେ ବିଭାଗରେ ଯୋଗ ଦେଲି । ଦୁଇ ତିନି ମାସ ପରେ ହ୍ୟୁଜ ନାମକ ଜଣେ ଆମେରିକାର ଯୁବକ ପ୍ରଫେସର ସେ ବିଭାଗକୁ ଭିଜିଟିଂ ପ୍ରଫେସର ହୋଇ ଆସିଲେ । ତାଙ୍କୁ ରେଭେନ୍ସା କଲେଜ ହତାରେ ବର୍ତ୍ତମାନ ଯେଉଁ ଘରେ ପ୍ରିନ୍ସିପାଲ ରହୁଛନ୍ତି, ସେ ଘରେ ରହିବାକୁ ଦିଆ ଯାଇଥିଲା ଏବଂ ଫୋର୍ଡ଼ ଫାଉଣ୍ଡେସନର ସ୍ୱତନ୍ତ୍ର ବ୍ୟବସ୍ଥା ଅନୁସାରେ ତାଙ୍କୁ ଗାଡ଼ି ଏବଂ ଯିବାଆସିବା ପ୍ରଭୃତି ସମସ୍ତ ଖର୍ଚ୍ଚ ଫୋର୍ଡ଼ ଫାଉଣ୍ଡେସନ୍‌ରୁ ମିଳୁଥିଲା । ଫୋର୍ଡ଼ ଫାଉଣ୍ଡେସନ୍ ବିଭାଗରେ ମୁଁ ଯୋଗ ଦେବାର ପ୍ରାୟ ଦୁଇମାସ ପରେ ଡକ୍ଟର ବଳଭଦ୍ର ପ୍ରସାଦ ଅବସର ଗ୍ରହଣ କରିବାରୁ ପ୍ରଫେସର ବାମାଚରଣ ଦାସ ଡି.ପି.ଆଇ. ଏବଂ ସଦାଶିବ ବାବୁ ରେଭେନ୍ସା କଲେଜ ପ୍ରିନ୍ସିପାଲ ହେଲେ । ପ୍ରିନ୍ସିପାଲଙ୍କ କାର୍ଯ୍ୟରେ ସର୍ବଦା ବ୍ୟସ୍ତ ରହୁଥିବାରୁ, ଫୋର୍ଡ଼ ଫାଉଣ୍ଡେସନ୍ ବିଭାଗ ପ୍ରତି ସେ କୌଣସି ଦୃଷ୍ଟି ଦେଇପାରିଲେ ନାହିଁ । ସୁତରାଂ ଯଦିଓ ସେ ସେ ବିଭାଗର ଅନରାରୀ ଡିରେକ୍ଟର ଥିଲେ, ତାହାର ଦୈନନ୍ଦିନ କାର୍ଯ୍ୟ ସବୁ ମୋତେ କରିବାକୁ ହେଲା । ସେତେବେଳେ ଯେଉଁ ଆଠ ଦଶ ଜଣ ରିସର୍ଚ୍ଚ ସ୍କଲାର ଏବଂ ରିସର୍ଚ୍ଚ ଫେଲୋ ସେ ବିଭାଗରେ ଯୋଗ ଦେଇଥିଲେ, ସେମାନଙ୍କର ଗବେଷଣା ବିଷୟ ସ୍ଥିର କରି ଦିଆଗଲା ଏବଂ ସେମାନଙ୍କୁ ବିଶ୍ୱବିଦ୍ୟାଳୟର ଡକ୍ଟରେଟ୍ ଡିଗ୍ରୀ ପାଇଁ ରେଜିଷ୍ଟ୍ରେସନ୍ କରାଇ ଦିଆଗଲା । ବିଭାଗରେ ସାମାଜିକ ବିଜ୍ଞାନମାନଙ୍କରେ ଗବେଷଣା ପ୍ରଣାଳୀ ବିଷୟରେ ଗୋଟିଏ ଡିପ୍ଲୋମା କୋର୍ସ ଖୋଲାହେଲା । ସେଥିରେ ନିୟମିତ ଭାବରେ କ୍ଲାସ ହେଲା । ସେ କ୍ଲାସ୍‌ରେ ବିଭାଗରେ ଯୋଗ ଦେଇଥିବା ସବୁ ରିସର୍ଚ୍ଚ ସ୍କଲାର ଓ ଫେଲୋ ଏବଂ ବାହାରୁ ଅର୍ଥନୀତି, ମନସ୍ତତ୍ତ୍ୱ, ନୃତତ୍ତ୍ୱ, ରାଜନୀତିବିଜ୍ଞାନ ପ୍ରଭୃତି ସାମାଜିକ ବିଜ୍ଞାନମାନଙ୍କରେ ଏମ୍.ଏ. ପାସ୍ କରିଥିବା ପିଲାମାନେ ନାମ ଲେଖାଇ କ୍ଲାସରେ ଯୋଗ ଦେଉଥିଲେ । ଡିପ୍ଲୋମା କୋର୍ସରେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଗୋଟିଏ ଥିସିସ୍ ଦାଖଲ କରିବା ନିୟମ ଥିଲା । ପିଲାମାନଙ୍କୁ ସେ ଥିସିସ୍ କାର୍ଯ୍ୟରେ ନିୟମିତ ଭାବରେ ପରାମର୍ଶ ଦେବା ଭିଜିଟିଂ ଆମେରିକାର ଅଧ୍ୟାପକଙ୍କ ସମେତ ଅନ୍ୟ ଅଧ୍ୟାପକମାନଙ୍କର କାର୍ଯ୍ୟ ଥିଲା । ବିଭାଗରେ ନିୟମିତ ଭାବରେ ସେମିନାର ମାନ

କରାଯାଉଥିଲା ଏବଂ ଅଧ୍ୟାପକମାନେ ନିଜେ ବିଭିନ୍ନ ଗବେଷଣା ପ୍ରକଳ୍ପରେ ଗବେଷଣା କରୁଥିଲେ । ସେହି କାର୍ଯ୍ୟକ୍ରମରେ ଆମେ କଟକ ସହରରେ ଭିକାରି ସମସ୍ୟା ଉପରେ ଗବେଷଣା କରି ଗୋଟିଏ ରିପୋର୍ଟ ବାହାର କରିଥିଲୁ । ସଦାଶିବବାବୁ ଭାରତର ଯୋଜନା କମିସନରୁ ଅର୍ଥ ସାହାଯ୍ୟ ପାଇ କଟକ ସହରର ଅର୍ଥନୈତିକ ଓ ସାମାଜିକ ସର୍ଭେ କରାଇଥିଲେ । ମୁଁ ମଧ୍ୟ ଯୋଜନା କମିସନ୍‌ରୁ ଅର୍ଥ ସାହାଯ୍ୟ ପାଇ ଓଡ଼ିଶାର କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ ଓ ସମ୍ବଲପୁର, ଏହି ପାଞ୍ଚଗୋଟି ଜିଲ୍ଲାରେ ଓଡ଼ିଶା ସରକାରଙ୍କ ଭୂସଂସ୍କାର ଆଇନମାନ କିପରି କାର୍ଯ୍ୟକାରୀ ହୋଇଛି ତାହାର ସର୍ଭେ କରାଇଥିଲି । ସେ ରିପୋର୍ଟ ୧୯୭୦ ମସିହାରେ ପ୍ରକାଶିତ ହୋଇଥିଲା । ସୁତରାଂ ଡିପ୍ଲୋମା କୋର୍ସ ପାଇଁ ପାଠ ପଢ଼ା ଏବଂ ଛାତ୍ର ଏବଂ ଅଧ୍ୟାପକମାନଙ୍କର ଗବେଷଣା ପ୍ରକଳ୍ପ ଉପରେ କାର୍ଯ୍ୟ ବିଭାଗର ନିୟମିତ ମୁଖ୍ୟ ଦୈନନ୍ଦିନ କାର୍ଯ୍ୟ ଥିଲା ।

ମୁଁ ଦେଖିଲି ଯେ ଆମେରିକାରୁ ଯେଉଁ ଭିଜିଟିଂ ଅଧ୍ୟାପକ ଆସିଥିଲେ, ସେ ଅଳ୍ପବୟସ୍କ ଲୋକ । ଆଗରୁ ଆମେରିକାର କୌଣସି ଶିକ୍ଷାନୁଷ୍ଠାନରେ ଅଧ୍ୟାପନା କରି ନ ଥିଲେ । ଚିକାଗୋ ବିଶ୍ୱବିଦ୍ୟାଳୟରେ ନିଜର ପିଏଚ.ଡି. ଡିଗ୍ରୀ ପାଇଁ ପରୀକ୍ଷା ଦେଇ ଥିସିସ୍ ଦାଖଲ କରିଥିଲେ । ମାତ୍ର ତାର ଫଳ ବାହାରି ନ ଥିଲା । ସୁତରାଂ ଲଣ୍ଡନ ସ୍କୁଲ୍ ଅଫ ଇକନମିକ୍ସରୁ ଡକ୍ଟରେଟ୍ ପାଇଥିବା ସଦାଶିବବାବୁ କିମ୍ବା ମୋ ଠାରୁ ତାଙ୍କର ଜ୍ଞାନ ଅଧିକ ନ ଥିଲା । ତା'ପରେ ସେ ଭାରତର ସାମାଜିକ ଏବଂ ଅର୍ଥନୈତିକ ସମସ୍ୟାମାନଙ୍କ ବିଷୟରେ ଅନଭିଜ୍ଞ ଥିଲେ । ତଥାପି ଫୋର୍ଡ଼ ଫାଉଣ୍ଡେସନ୍ ତାଙ୍କୁ ଭିଜିଟିଂ ପ୍ରଫେସର କରି ପଠାଇଥିବାରୁ ଆମେ ତାଙ୍କୁ ଯଥୋଚିତ ସମ୍ମାନ ଦେଉଥିଲୁ । ଓଡ଼ିଶାର ଗ୍ରାମମାନଙ୍କର ଅର୍ଥନୈତିକ ଏବଂ ସାମାଜିକ ସମସ୍ୟାମାନଙ୍କ ବିଷୟରେ ତାଙ୍କୁ ପ୍ରତ୍ୟକ୍ଷ ଜ୍ଞାନ ଏବଂ ଅନୁଭୂତି ଦେବାପାଇଁ ମୁଁ ତାଙ୍କୁ ପୁରୀ ଏବଂ କଟକ ଜିଲ୍ଲାର ବହୁ ଗ୍ରାମକୁ ନେଇ ଗାଁରେ ଲୋକମାନେ କିପରି ରହୁଛନ୍ତି ଏବଂ ସେମାନେ କିପରି ଚାଷବାସ ପ୍ରଭୃତି କରି ଦୈନନ୍ଦିନ ଜୀବିକା ନିର୍ବାହ କରୁଛନ୍ତି ତାହା ଦେଖାଇଥିଲି । ମୋ ମାଧ୍ୟମରେ ସେ ବହୁ ଗ୍ରାମବାସୀଙ୍କ ସହିତ କଥାବାର୍ତ୍ତା କରି ସେମାନଙ୍କ ଦୈନନ୍ଦିନ ସମସ୍ୟା ବିଷୟରେ ଜ୍ଞାନ ଅର୍ଜନ କରିବାକୁ ଚେଷ୍ଟା କରିଥିଲେ । ତାଙ୍କର ପରିବାର କିନ୍ତୁ କଟକରେ ରହିବା ସୁଖକର ମନେ କରି ନ ଥିଲେ । ସେମାନେ ଏଠାରେ କାହା ସଙ୍ଗରେ ମିଶିପାରିଲେ ନାହିଁ । କଟକର ଅପରିଷ୍କାର ଓ ଅପରିଚ୍ଛନ୍ନ ପରିବେଶ ତାଙ୍କୁ ଭଲ ଲାଗିଲା ନାହିଁ । ତାଙ୍କର ପିଲାମାନେ ମଧ୍ୟ କୌଣସି ଭଲ ସ୍କୁଲରେ ପଢ଼ିପାରିଲେ ନାହିଁ । ତେଣୁ ବର୍ଷକ ପରେ ସେ କଟକରୁ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଫୋର୍ଡ଼ ଫାଉଣ୍ଡେସନ୍ ବିଭାଗକୁ ଚାଲିଗଲେ ।

ସଦାଶିବବାବୁ ସେ ବିଭାଗର ଅନରାରୀ ଡିରେକ୍ଟର ରହିଥାନ୍ତି ମାତ୍ର ସେ ବିଭାଗକୁ କୌଣସି ସମୟ ଦେଇପାରୁ ନ ଥାନ୍ତି । ସେ ବିଭାଗର ସମସ୍ତ ଦାୟିତ୍ୱ ମୋ ଉପରେ ଥିଲା ବୋଲି କହିଲେ ଚଳେ । ବିଭାଗର ଉପରୋକ୍ତ କାର୍ଯ୍ୟମାନ କରି ମୁଁ ପ୍ରଥମଥର ସେଥିରେ ଅଢ଼େଇ ବର୍ଷ ଥିଲି । ମୁଁ ଦେଖିଲି ଯେ ଯେଉଁ ଦୁଇ ତିନି ଜଣ ରିସର୍ଚ୍ଚ ଫେଲୋ ସେ

ବିଭାଗରେ କାର୍ଯ୍ୟ କରୁଥିଲେ ସେମାନଙ୍କ ଗବେଷଣା କାର୍ଯ୍ୟରେ ପ୍ରଗତି ହେଉଥାଏ । କାରଣ ସେମାନେ ସେ ବିଭାଗରେ ଯୋଗ ଦେବା ପୂର୍ବରୁ ବିଭିନ୍ନ କଲେଜରେ ଶିକ୍ଷକ ଥିଲେ ଏବଂ ଆନ୍ତରିକ ଭାବେ ଡକ୍ଟରେଟ୍ ଡିଗ୍ରୀ ପାଇଁ ଚେଷ୍ଟା କରୁଥିଲେ । ମାତ୍ର ଯେଉଁ ସାତ ଆଠ ଜଣ ରିସର୍ଚ୍ଚ ସ୍କଲାର ଥିଲେ ସେମାନଙ୍କର ସେ କାମରେ ମନ ନ ଥିଲା । କାରଣ ସେମାନେ ଉଚ୍ଚ ଶ୍ରେଣୀରେ ଏମ୍.ଏ. ପାସ୍ କରିଥିଲେ ଏବଂ ବିଭିନ୍ନ ଚାକିରିରେ ଯୋଗ ଦେବାକୁ ଉଦ୍ୟମ କରୁଥିଲେ । କେବଳ ସାମୟିକ ଭାବରେ ସେ ବିଭାଗରେ ଗବେଷଣା କରିବାକୁ ଯୋଗ ଦେଇଥିଲେ । ତା'ପରେ ପୁଣି ସାମାଜିକ ବିଜ୍ଞାନମାନଙ୍କରେ ଗବେଷଣା ପ୍ରଣାଳୀ ଉପରେ ଡିପ୍ଲୋମା ଡିଗ୍ରୀ ପାଇଲେ ସ୍ୱତନ୍ତ୍ର ଭାବରେ କୌଣସି ବିଭାଗରେ ଚାକିରି ପାଇବା ସୁଯୋଗ ନ ଥିଲା । କାରଣ ଆମ ସରକାରୀ କିମ୍ବା ବେସରକାରୀ ସଂସ୍ଥାମାନ ସେ ତାଲିମର ମୂଲ୍ୟ ବୁଝି ପାରି ନ ଥିଲେ । ସେଥିଯୋଗୁଁ ସେ ବିଭାଗର ମୁଖ୍ୟ କାମ, ଛାତ୍ରମାନଙ୍କୁ ଗବେଷଣା କାର୍ଯ୍ୟରେ ତାଲିମ ଦେବା କାର୍ଯ୍ୟରେ ବିଶେଷ ପ୍ରଗତି ହୋଇ ପାରୁ ନ ଥିଲା ଏବଂ ବିଭାଗର ବିରୋଧରେ ଥିବା ଲୋକମାନେ ତାକୁ ସର୍ବଦା ଗୋଟିଏ ବ୍ୟର୍ଥ ଓ ଅନାବଶ୍ୟକ ବିଭାଗ ବୋଲି କହୁଥିଲେ । ଏହିପରି ଅବସ୍ଥାରେ ରେଭେନ୍ସା କଲେଜରେ ମୋର ମୂଳ ଚାକିରିରେ ରିଡ଼ର ପଦକୁ ପଦୋନ୍ନତି ହେଲା । ମୁଁ ଦେଖିଲି ଯେ ବିଶ୍ୱବିଦ୍ୟାଳୟର ସେ ବିଭାଗରେ ସରକାରୀ ରିଡ଼ର ପଦର ଦରମା ଠାରୁ ମୁଁ କିଛି ଅଧିକ ପାଉ ନ ଥିଲି । ରେଭେନ୍ସା କଲେଜରେ ରିଡ଼ର ହେଲେ ଅନ୍ତତଃପକ୍ଷେ ଭଲ ଘରଟିଏ ରହିବାକୁ ମିଳିବ ଏବଂ ପିଲାମାନଙ୍କୁ ପଢ଼ାଇବା କାର୍ଯ୍ୟରେ ନିଜକୁ ସନ୍ତୋଷ ମିଳିବ । ସେଥିଯୋଗୁଁ ମୁଁ ଅଢ଼େଇବର୍ଷ ପରେ ୧୯୫୯ ମସିହା ମାର୍ଚ୍ଚ ମାସରେ ସେ ଗବେଷଣା ବିଭାଗ ଛାଡ଼ି ରେଭେନ୍ସା କଲେଜରେ ଅର୍ଥନୀତି ବିଭାଗରେ ରିଡ଼ର ରୂପେ ଯୋଗ ଦେଲି । ସେତେବେଳେ ରେଭେନ୍ସା କଲେଜର ଅର୍ଥନୀତି ବିଭାଗରେ ଗୋଟିଏ ମାତ୍ର ରିଡର ପଦ ଥିଲା ।

ମୁଁ ଚାଲିଆସିବା ପରେ ଫୋର୍ଡ୍ ଫାଉଣ୍ଡେସନ ବିଭାଗ ପ୍ରାୟ ସ୍ଥାଣୁ ଅବସ୍ଥାରେ ରହି ଯାଇଥିଲା । ଅଳ୍ପକାଳ ପାଇଁ କେରଳର ଜଣେ ଅବସରପ୍ରାପ୍ତ ଅଧ୍ୟାପକ ଆସି ମୋ ସ୍ଥାନରେ କାମ କରୁଥିଲେ । ସେ ମଧ୍ୟ ଅଳ୍ପକାଳ ପରେ ସେ ବିଭାଗ ଛାଡ଼ି ଚାଲିଯାଇଥିଲେ । ସେ ବିଭାଗର ସ୍ଥାୟିତ୍ୱ ବଜାୟ ରଖିବା ପାଇଁ ବିଶ୍ୱବିଦ୍ୟାଳୟ ସେ ବିଭାଗରେ କେତେକ ପରିବର୍ତ୍ତନ ଆଣିଲେ । ସେ ପରିବର୍ତ୍ତନରେ ଅନରାରୀ ଡିରେକ୍ଟର ପଦ ଉଠିଗଲା ଏବଂ ସେ ସ୍ଥାନରେ ଗୋଟିଏ ପ୍ରଫେସର ପଦ ସୃଷ୍ଟି କରାଗଲା । ସେ ପ୍ରଫେସର ସେ ବିଭାଗର ପୂର୍ଣ୍ଣ ଦାୟିତ୍ୱରେ ରହି ସେ ବିଭାଗରେ ଶିକ୍ଷାଦାନ ଏବଂ ଗବେଷଣା କରାଇବାର ବ୍ୟବସ୍ଥା କରାଗଲା । ବିଶ୍ୱବିଦ୍ୟାଳୟ ପ୍ରଫେସର ପଦ ପାଇଁ ବିଜ୍ଞାପନ ଦେଲା । ମୁଁ ସେଥିପାଇଁ ଦରଖାସ୍ତ କରି ନିଯୁକ୍ତି ପାଇଲି ଏବଂ ୧୯୬୦ ମସିହା ମାର୍ଚ୍ଚ ମାସରେ ପୁଣି ସେହି ବିଭାଗରେ ପ୍ରଫେସର ରୂପେ ଯୋଗ ଦେଲି ଏବଂ ସେହି ପଦବୀରେ ୧୯୭୭ ମସିହା ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ରହିଥିଲି । ତାହାଦ୍ୱାରା ସେ

ବିଭାଗର ସଫଳତା ଓ ବିଫଳତାର ପୂର୍ଣ୍ଣ ଦାୟିତ୍ୱ ମୋ ଉପରେ ପଡ଼ିଥିଲା । ସଦାଶିବବାବୁ ସେ ବିଭାଗର ଡିରେକ୍ଟର ପଦରୁ ଯିବାପରେ ମଧ୍ୟ ସେ ବିଭାଗର ସଫଳତା ପାଇଁ ଇଚ୍ଛା କରୁଥିଲେ ଏବଂ ମୋତେ ସବୁ ପରିସ୍ଥିତିରେ ସାହାଯ୍ୟ କରୁଥିଲେ । ଅନ୍ୟ ଦିଗରେ ରେଭେନ୍ସା କଲେଜର ଅନ୍ୟ ବିଭାଗର ଅଧ୍ୟାପକମାନେ ସର୍ବଦା ସେ ବିଭାଗ ପ୍ରତି ବିରୋଧ ଭାବ ପୋଷଣ କରୁଥିଲେ । ଏହିପରି ଭାବରେ ଦୁଇବର୍ଷ କଟିଯିବା ପରେ ୧୯୬୨ ମସିହା ଜୁଲାଇ ମାସରେ ବିଶ୍ୱବିଦ୍ୟାଳୟର ପ୍ରଶାସନିକ ଅଫିସ, ଲାଇବ୍ରେରୀ ଓ ଶିକ୍ଷାଦାନୀ ବିଭାଗ ସବୁ ବାଣୀବିହାରକୁ ଉଠିଆସିଲା । ସେଥି ସଙ୍ଗେ ସଙ୍ଗେ ଫୋର୍ଡ଼ ଫାଉଣ୍ଡେସନ୍ ବିଭାଗ ମଧ୍ୟ ବାଣୀବିହାରକୁ ଉଠିଆସିଲା । ମାତ୍ର ସେତେବେଳଯାଏ ସେ ବିଭାଗ ବିଶ୍ୱବିଦ୍ୟାଳୟର ସ୍ଥାୟୀ ବିଭାଗ ହୋଇ ନ ଥିଲା । ଫୋର୍ଡ଼ ଫାଉଣ୍ଡେସନ୍ ଚାରିବର୍ଷ ପାଇଁ ସେ ବିଭାଗକୁ ଅନୁଦାନ ଦେଇଥିଲେ । ସେଥିରେ ସର୍ତ୍ତ ଥିଲା ଯେ ଚାରିବର୍ଷ ପରେ ବିଶ୍ୱବିଦ୍ୟାଳୟ ସ୍ଥାୟୀ ଭାବରେ ବିଭାଗ ଚଳାଇବେ । ମାତ୍ର ୧୯୬୦ ମସିହାରେ ଫୋର୍ଡ଼ ଫାଉଣ୍ଡେସନ ଟଙ୍କା ଶେଷ ହେବା ପରେ ବିଶ୍ୱବିଦ୍ୟାଳୟ ଥରକୁ ଥର ବର୍ଷକ ପାଇଁ ସେ ବିଭାଗର କାର୍ଯ୍ୟକାଳ ବଢ଼ାଇ ଦେଉଥିଲେ । ସେଥିପାଇଁ ସେ ବିଭାଗ ଅନ୍ୟ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ବିଭାଗମାନଙ୍କ ପରି ସ୍ଥାୟୀ ହୋଇ ନ ଥିଲା । ଏ ପରିସ୍ଥିତି ଆମ୍ଭମାନଙ୍କୁ ବିଶେଷ ଅସୁବିଧାରେ ପକାଉଥିଲା । କାରଣ ପ୍ରତିବର୍ଷ ବିଭାଗର କାର୍ଯ୍ୟକାଳ ବଢ଼ାଇବା ବେଳେ ସିଣ୍ଡିକେଟ୍‌ରେ ଥିବା ରେଭେନ୍ସା କଲେଜର ଅଧ୍ୟାପକ ଏବଂ ତାଙ୍କ ସହିତ ସହମତ ହେଉଥିବା ଅନ୍ୟ ସଭ୍ୟମାନେ ବିଭାଗର କାର୍ଯ୍ୟକୁ ସମାଲୋଚନା କରୁଥିଲେ । ମାତ୍ର ସେତେବେଳେ ଡି.ପି.ଆଇ. ଥିବା ସଦାଶିବବାବୁ ଏବଂ କୁଳପତି ପରିଜା ବିଭାଗର କାର୍ଯ୍ୟକୁ ସମର୍ଥନ କରୁଥିଲେ । ୧୯୬୩ ମସିହାରେ ଶ୍ରୀରାମବାବୁ ଏବଂ ତାଙ୍କର ସହଯୋଗୀମାନେ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍‌ର ସଭ୍ୟ ହେଲେ । ସେମାନେ ସେ ବିଭାଗ ଓ ମୋତେ ଅସୁବିଧାରେ ପକାଇବାକୁ ଉଦ୍ୟମ କଲେ । ୧୯୬୩ ମସିହାରେ ସିଣ୍ଡିକେଟ୍‌ରେ ବିଭାଗର କାର୍ଯ୍ୟକାଳ ବୃଦ୍ଧି ବିଚାରକୁ ଆସିବାବେଳେ ସେମାନେ ବିଭାଗର କାର୍ଯ୍ୟ ବିଷୟରେ ରିପୋର୍ଟ ମାଗି ପ୍ରସ୍ତାବକୁ ଫେରାଇଦେଲେ । ଫଳରେ ୧୯୬୩ ମସିହା ଅପ୍ରେଲ ମାସରେ ବିଭାଗର ଶିକ୍ଷକ ଓ ଅଣଶିକ୍ଷକ କର୍ମଚାରୀମାନଙ୍କ ଦରମା ଦିଆ ହୋଇ ପାରିଲା ନାହିଁ । ମୁଁ କୁଳପତି ପରିଜାଙ୍କୁ ଭେଟି ବିଭାଗର ଅସୁବିଧାମାନ ବୁଝାଇଲି ଏବଂ ବିଭାଗର କର୍ମଚାରୀମାନଙ୍କୁ ଦରମା ଦେଇଦେବା ପାଇଁ ଅନୁରୋଧ କଲି । ସେଥି ସଙ୍ଗେ ସଙ୍ଗେ ବିଭାଗ ବିଷୟରେ ସିଣ୍ଡିକେଟରେ ସ୍ଥାୟୀ ନିଷ୍ପତ୍ତି ନେବାକୁ ମଧ୍ୟ ଅନୁରୋଧ କଲି । ତାହାପରେ ପରିଜା ଓ ସଦାଶିବବାବୁଙ୍କ ଉଦ୍ୟମରେ ସିଣ୍ଡିକେଟ୍ ବିଭାଗକୁ ସ୍ଥାୟୀ କରିବାକୁ ନିଷ୍ପତ୍ତି କଲା ଏବଂ ଆଉ ପ୍ରତିବର୍ଷ କାର୍ଯ୍ୟକାଳ ବଢ଼ାଇବା ଆବଶ୍ୟକ ହେଲା ନାହିଁ ।

ତଥାପି ମୁଁ ଅନୁଭବ କଲି ଯେ ଡିପ୍ଲୋମା କୋର୍ସ ପାସ୍ କରି ପିଲାମାନଙ୍କର ଚାକିରିରେ କିଛି ବିଶେଷ ସୁବିଧା ନ ଥିବାରୁ ଏବଂ ରିସର୍ଚ୍ଚ ସ୍କଲାରମାନେ ସାଧାରଣତଃ ଗବେଷଣାରେ ମନ ନ ଦେଇ ଅନ୍ୟ ଆଡ଼େ ଚାକିରି ଖୋଜୁଥିବାରୁ ସେ ବିଭାଗର କାର୍ଯ୍ୟ ବିଶେଷ ଲୋକପ୍ରିୟ ହେବ ନାହିଁ ଏବଂ ତାହା ବିଶ୍ୱବିଦ୍ୟାଳୟର ଅନ୍ୟ ସ୍ନାତକୋତ୍ତର ବିଭାଗମାନଙ୍କ

ପରି ମର୍ଯ୍ୟାଦା ପାଇବ ନାହିଁ, ତେଣୁ ମୁଁ ପ୍ରସ୍ତାବ ଦେଲି ଯେ ବିଭାଗରେ ଉଚ୍ଚ ଡିଗ୍ରୀ ପ୍ରାପ୍ତ ଅଧ୍ୟାପକମାନେ ଥିବାରୁ ଏଥିରେ ଅର୍ଥନୀତିରେ ଗବେଷଣା ସହିତ ଏମ୍.ଏ. ଡିଗ୍ରୀ ପାଇଁ ପାଠ ପଢ଼ାଯାଉ । ଗବେଷଣା ଏବଂ ଶିକ୍ଷାଦାନ ଏକାସାଙ୍ଗରେ ରହିଲେ ଉଭୟ ଅଧିକ ଫଳପ୍ରଦ ହେବ । ମାତ୍ର ସେତେବେଳଯାଏ ବିଶ୍ୱବିଦ୍ୟାଳୟର ନୀତି ଥିଲା ଯେ ରେଭେନ୍ସା କଲେଜରେ ଯେଉଁସବୁ ବିଷୟମାନଙ୍କରେ ଏମ୍.ଏ. ପଢ଼ାଯାଉଛି, ସେ ସବୁ ବିଷୟରେ ବିଶ୍ୱବିଦ୍ୟାଳୟ ବିଭାଗମାନଙ୍କରେ ଏମ୍.ଏ. ପଢ଼ା ହେବ ନାହିଁ । ରେଭେନ୍ସା କଲେଜରେ ଅର୍ଥନୀତିରେ ଏମ୍.ଏ. ପଢ଼ାଯାଉଥିବାରୁ ଗ୍ରାମ୍ୟ ଅର୍ଥନୀତି ବିଭାଗରେ ଅର୍ଥନୀତିରେ ଏମ୍.ଏ. ପଢ଼ା ଆରମ୍ଭ କରିବାକୁ ଇଉନିଭର୍ସିଟି ରାଜି ହେଲା ନାହିଁ । ଆନ୍ଧ୍ର ଇଉନିଭର୍ସିଟିରେ ସେତେବେଳେ ପ୍ରୟୋଗାତ୍ମକ ଅର୍ଥନୀତିରେ ଏମ୍.ଏ. ଶିକ୍ଷା ଦେବାପାଇଁ ଗୋଟିଏ ବିଭାଗ ଥିଲା । ମୁଁ ସେଥିଯୋଗୁଁ ପ୍ରସ୍ତାବ କଲି ଯେ ଆମ ବିଭାଗରେ ପ୍ରୟୋଗାତ୍ମକ ଅର୍ଥନୀତିରେ ଏମ୍.ଏ. ପଢ଼ାଯାଉ । ସେଥିପାଇଁ ଗୋଟିଏ କମିଟି ହୋଇ ସିଲାବସ୍ ତିଆରି କରାଗଲା । ସେ କମିଟିରେ ସଦାଶିବବାବୁ ଓ ମୁଁ ଥିଲୁ । ଆନ୍ଧ୍ର ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସରଙ୍କୁ ସେ କମିଟିରେ ନିଆଯାଇଥିଲା । ସେ ସିଲାବସ୍ ଦେଖି ପରିଜା ସଦାଶିବବାବୁଙ୍କୁ ପଚାରିଲେ ଯେ ଏଥିରେ ଏମ୍.ଏ. ପାସ୍ କରିଥିବା ପିଲାମାନେ ଓଡ଼ିଶାର ସରକାରୀ ଏବଂ ବେସରକାରୀ କଲେଜମାନଙ୍କରେ ଅଧ୍ୟାପକ ହେବାକୁ ଯୋଗ୍ୟ ବିବେଚିତ ହେବେ କି ନାହିଁ । ସଦାଶିବବାବୁ ସେତେବେଳେ ଡି.ପି.ଆଇ. ଥିଲେ । ସେ ହଁ ଭରିଲେ । ସେ ସିଲାବସ୍ ଅନୁମୋଦନ ନିମିତ୍ତ ଏକାଡେମିକ୍ କାଉନ୍‌ସିଲରେ ଏବଂ ସିନେଟରେ ଉପସ୍ଥାପିତ ହେଲା । କାରଣ ସେମାନଙ୍କ ଅନୁମୋଦନ ବିନା ବିଶ୍ୱବିଦ୍ୟାଳୟରେ କୌଣସି ଏମ୍.ଏ. କୋର୍ସ ପଢ଼ାଯାଇପାରିବ ନାହିଁ । ସେଥିରେ ଫୋର୍ଡ ଫାଉଣ୍ଡେସନ୍ ବିଭାଗକୁ ଏବଂ ମୋତେ ବିରୋଧ କରୁଥିବା ସଭ୍ୟମାନେ ସେ କୋର୍ସକୁ ବିରୋଧ କଲେ । ମାତ୍ର ସେମାନଙ୍କର ସଂଖ୍ୟା କମ୍ ଥିବାରୁ ସେ ସିଲାବସ୍ ଓ ପ୍ରସ୍ତାବ ସିନେଟ୍ ଓ ଏକାଡେମିକ୍ କାଉନସିଲରେ ଅନୁମୋଦନ ଲାଭ କଲା । ସାଧାରଣତଃ ଆମ ଇଉନିଭର୍ସିଟିମାନଙ୍କରେ ଅର୍ଥନୀତି ଏମ୍.ଏ.କୋର୍ସରେ ଆଠଗୋଟି ପତ୍ର ମଧ୍ୟରେ ଛଅଗୋଟି ପତ୍ର ଅର୍ଥନୀତିର ମୌଳିକ ତତ୍ତ୍ୱ ଏବଂ ଆଉ ଦୁଇଗୋଟି ପତ୍ରରେ ବିଭିନ୍ନ ବିଷୟରେ ବିଶେଷ ଜ୍ଞାନଲାଭ ପାଇଁ ସିଲାବସ ହୋଇଥାଏ । ଆମେ ପ୍ରୟୋଗାତ୍ମକ ଅର୍ଥନୀତି ପାଇଁ ଯେଉଁ ସିଲାବସ କରିଥିଲୁ ସେଥିରେ ପାଞ୍ଚଗୋଟି ପତ୍ରରେ ଅର୍ଥନୀତିର ମୌଳିକ ତତ୍ତ୍ୱମାନ ପଢ଼ାହେବାର ବ୍ୟବସ୍ଥା ଥିଲା । ଆଉ ଗୋଟିଏ ପତ୍ରରେ ପରିସଂଖ୍ୟାନ ବିଜ୍ଞାନ ପଢ଼ାହେବାର ଆବଶ୍ୟକତା ଥିଲା । ଅନ୍ୟ ଦୁଇ ବିଜ୍ଞାନ ପତ୍ରରେ କୃଷି, ଶିଳ୍ପ, ଶ୍ରମ, ଅର୍ଥନୀତି ଏବଂ ସମାଜବିଜ୍ଞାନ ବିଷୟମାନଙ୍କ ମଧ୍ୟରୁ ଗୋଟିକରେ ବିଶେଷ ଜ୍ଞାନ ଅର୍ଜନ ପାଇଁ ବରାଦ କରା ହୋଇଥିଲା । ଆମ ବିଚାରରେ ସେ କୋର୍ସ ଆମ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟ ଏବଂ ଇଂଲାଣ୍ଡ ଆମେରିକା ପ୍ରଭୃତି ଦେଶମାନଙ୍କ ବିଶ୍ୱବିଦ୍ୟାଳୟମାନଙ୍କର ଅର୍ଥନୀତି ଏମ୍.ଏ. ସିଲାବସମାନଙ୍କର ସମକକ୍ଷ ଥିଲା ।

ସେହି ସିଲାବସ ଅନୁସାରେ ୧୯୬୩ ମସିହା ଜୁଲାଇ ମାସରୁ ଗ୍ରାମ୍ୟ ଅର୍ଥନୀତି ବିଭାଗରେ ପ୍ରୟୋଗାତ୍ମକ ଅର୍ଥନୀତିରେ ଏମ୍.ଏ. ପଢ଼ା ଆରମ୍ଭ ହେଲା ଏବଂ ବିଭାଗର ନାମରେ ''ପ୍ରୟୋଗାତ୍ମକ ଅର୍ଥନୀତି'' ଶବ୍ଦମାନ ଯୋଡ଼ି ଦିଆଗଲା । ବିଭାଗରେ ଅର୍ଥନୀତି, ପରିସଂଖ୍ୟାନ ବିଜ୍ଞାନ ଓ ସମାଜବିଜ୍ଞାନରେ ଏମ୍.ଏ. କିମ୍ବା ତତୋଽଧିକ ଡିଗ୍ରୀ ଲାଭ କରିଥିବା ଅଧ୍ୟାପକମାନେ ଆଗରୁ ଥିଲେ । ଆବଶ୍ୟକସ୍ଥଳେ ଆଉ କେତେଜଣ ଅଧ୍ୟାପକ ମଧ୍ୟ ନିଯୁକ୍ତ ହୋଇଥିଲେ । ଏହି ବ୍ୟବସ୍ଥା ଦ୍ୱାରା ସେ ବିଭାଗର କର୍ମଚାରୀ ଏବଂ ଅଧ୍ୟାପକ ସଂଖ୍ୟା ବିଶ୍ୱବିଦ୍ୟାଳୟର ଅନ୍ୟ ସ୍ନାତକୋତ୍ତର ବିଭାଗମାନଙ୍କଠାରୁ ଅଧିକ ହେଲା । ଗବେଷଣା କରିବା ନିମିତ୍ତ ମଧ୍ୟ ରିସର୍ଚ୍ଚ ସ୍କଲାର ଓ ଫେଲୋମାନଙ୍କର ସଂଖ୍ୟା ଅଧିକ ହେଲା । ଫଳରେ ଏ ବିଭାଗ ଅନ୍ୟ ବିଭାଗମାନଙ୍କଠାରୁ ଅଧିକ ସୁବିଧା ପାଇଲା । ଅନ୍ୟ ବିଭାଗମାନେ ସେସବୁ ସୁବିଧା ପାଇବାକୁ ଆପତ୍ତି କଲେ । ପ୍ରୟୋଗାତ୍ମକ ଅର୍ଥନୀତିରେ ପ୍ରଥମ ବ୍ୟାଚ ପିଲା ୧୯୬୫ ମସିହାରେ ଏମ୍.ଏ. ପାସ କଲେ । କୃଷି, ଶିଳ୍ପ, ପରିସଂଖ୍ୟାନ, ଶ୍ରମ ଓ ସମାଜ କଲ୍ୟାଣ ବିଷୟରେ ସରକାରୀ ଏବଂ ବେସରକାରୀ ସଂସ୍ଥାମାନଙ୍କରେ କର୍ମସଂସ୍ଥାନ ପାଇଁ ସେମାନଙ୍କର ଯୋଗ୍ୟତା ଥିଲା । ବିଭିନ୍ନ ସରକାରୀ ଓ ବେସରକାରୀ କଲେଜରେ ସେମାନେ ଅର୍ଥନୀତି ଅଧ୍ୟାପକ ଭାବରେ ନିଯୁକ୍ତ ହେବାପାଇଁ ଆବଶ୍ୟକ ଯୋଗ୍ୟତା ଅର୍ଜନ କରିଛନ୍ତି ବୋଲି ସରକାର ଏବଂ ପବ୍ଲିକ ସର୍ଭିସ୍ କମିସନଙ୍କୁ ଇଉନିଭର୍ସିଟି ତରଫରୁ ଲେଖାହେଲା ଏବଂ ସେମାନେ ତାହା ଗ୍ରହଣ କରି ସେମାନଙ୍କର ନିଯୁକ୍ତି ପାଇଁ ବିଭିନ୍ନ ବିଜ୍ଞାପନ ପତ୍ରମାନଙ୍କରେ ଯୋଗ କଲେ । ତାହାଦ୍ୱାରା ସେ ବିଭାଗରୁ ଏମ୍.ଏ. ପାସ୍ କରୁଥିବା ଛାତ୍ରମାନଙ୍କର ବିଭିନ୍ନ କଲେଜମାନଙ୍କରେ ଅଧ୍ୟାପକ ରୂପେ ନିଯୁକ୍ତି ପାଇବାରେ କୌଣସି ପ୍ରତିବନ୍ଧକ ରହିଲା ନାହିଁ । ବିଭାଗର ସ୍ଥିତି ସୁଦୃଢ଼ ହୋଇ ତାହାର ସୁନାମ ବଢ଼ୁଥିବା ବେଳେ ଶ୍ରୀରାମବାବୁ ୧୯୬୮ ମସିହାରେ ସିଣ୍ଡିକେଟ୍‌ରେ ଗୋଟିଏ ପ୍ରସ୍ତାବ ଆଗତ କଲେ ଯେ ଗ୍ରାମ୍ୟ ଅର୍ଥନୀତି ଗବେଷଣା ବିଭାଗକୁ ପ୍ରୟୋଗାତ୍ମକ ଶିକ୍ଷାଦାନୀ ବିଭାଗରୁ ଅଲଗା କରାଯାଉ ଏବଂ ପୂର୍ବପରି ଗୋଟିଏ ଗବେଷଣା ବିଭାଗ କରାଯାଉ । ସେତେବେଳେ ସଦାଶିବବାବୁ କୁଳପତି ଥିଲେ । ଏପରି ଏକ ପ୍ରସ୍ତାବର ଉଦ୍ଦେଶ୍ୟ ମୁଁ ବୁଝିପାରିଲି । କାରଣ ମୋର ମୂଳ ନିଯୁକ୍ତି ଗ୍ରାମ୍ୟ ଅର୍ଥନୀତି ବିଭାଗର ମୁଖ୍ୟ ଅଧ୍ୟାପକ ପଦରେ ହୋଇଥିଲା । ତାହାପରେ ସେ ବିଭାଗରେ ପ୍ରୟୋଗାତ୍ମକ ଅର୍ଥନୀତିରେ ଏମ୍.ଏ. ଶ୍ରେଣୀ ଖୋଲା ଯାଇଥିଲା । ସେଥିପାଇଁ ଅନ୍ୟ କୌଣସି ପ୍ରଫେସର ନିଯୁକ୍ତ ହୋଇ ନ ଥିଲେ । ପ୍ରସ୍ତାବ ଗୃହୀତ ହୋଇଥିଲେ ପ୍ରୟୋଗାତ୍ମକ ଅର୍ଥନୀତି ଶିକ୍ଷାରୁ ମୋତେ ନିବୃତ୍ତ କରାଯାଇ ପାରିଥାନ୍ତା । ମୁଁ ଏ କଥା ବୁଝି ବିଚାର କଲି ଯେ ମୋର ସ୍ଥିତି ଏବଂ ବିଭାଗର ସ୍ଥିତି ପାଇଁ ମୋତେ ସିଣ୍ଡିକେଟର ସଭ୍ୟ ହେବାକୁ ପଡ଼ିବ । ସେତେବେଳଯାଏ ମୁଁ ବିଶ୍ୱବିଦ୍ୟାଳୟର ପ୍ରଫେସର ହିସାବରେ ସିନେଟ୍ ଏବଂ ଏକାଡେମିକ କାଉନସିଲ୍‌ର ସଭ୍ୟ ଥିଲି ଏବଂ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ପରେ ସର୍ବବରିଷ୍ଠ ଅଧ୍ୟାପକ ହିସାବରେ ସ୍ନାତକୋତ୍ତର ବିଭାଗମାନଙ୍କର ସାଧାରଣ ବିଷୟମାନଙ୍କରେ ପରିଚାଳନା ଦାୟିତ୍ୱରେ

ଥିଲି । ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟ ହେବାପାଇଁ ମୁଁ ନିର୍ବାଚନରେ ପ୍ରାର୍ଥୀ ହେଉ ନ ଥିଲି; କାରଣ ମୁଁ ଭାବୁଥିଲି ଯେ ସିଣ୍ଡିକେଟ୍‌ରେ ସଭ୍ୟ ହେଲେ ଆଉ ଶିକ୍ଷାଦାନ ଏବଂ ଗବେଷଣା କରିବାକୁ ସମୟ ମିଳିବ ନାହିଁ । ତାହା ବ୍ୟତୀତ ବିଶ୍ୱବିଦ୍ୟାଳୟ ପରିଚାଳନାର ବହୁ ବାଦବିବାଦରେ ପଶିବାକୁ ପଡ଼ିବ । ମାତ୍ର ମୋ ବିଭାଗର ସ୍ଥିତି ଏବଂ ହିତ ଦୃଷ୍ଟିରୁ ମୁଁ ସିଣ୍ଡିକେଟର ସଭ୍ୟ ହେବାକୁ ବାଧ ହେଲି ।

୧୯୬୮ ମସିହାରୁ ୧୯୭୪ ମସିହାରେ ଇଉନିଭର୍ସିଟି ପରିଚାଳନା ରାଜ୍ୟ ସରକାରଙ୍କ ହାତକୁ ଯିବା ପର୍ଯ୍ୟନ୍ତ ମୁଁ ଏକାଡେମିକ୍ କାଉନସିଲ୍ ନିର୍ବାଚନ ମଣ୍ଡଳୀରୁ ତିନିଥର ନିର୍ବାଚିତ ହୋଇ ସିଣ୍ଡିକେଟର ସଭ୍ୟ ହୋଇଥିଲି । ମୁଁ ସେତେବେଳେ ଗ୍ରାମ୍ୟ ଅର୍ଥନୀତି, ସମାଜବିଜ୍ଞାନ ଏବଂ ପ୍ରୟୋଗାତ୍ମକ ଅର୍ଥନୀତି ବିଭାଗର ମୁଖ୍ୟ ଏବଂ ସର୍ବବରିଷ୍ଠ ଅଧ୍ୟାପକ ରୂପେ ସବୁ ସ୍ନାତକୋତ୍ତର ବିଭାଗମାନଙ୍କର ପରିଚାଳନାର ସମନ୍ୱୟ ଦାୟିତ୍ୱରେ ଥିବାରୁ ମୋର ସିନେଟ, ସିଣ୍ଡିକେଟ ଏବଂ ବିଶ୍ୱବିଦ୍ୟାଳୟର ଦୈନନ୍ଦିନ ପରିଚାଳନାରେ ବିଶେଷ ପ୍ରଭାବ ଥିଲା । ବିଶ୍ୱବିଦ୍ୟାଳୟ କ୍ୟାମ୍ପସରେ ରହି ଏବଂ ବହୁବର୍ଷ ବିଶ୍ୱବିଦ୍ୟାଳୟ ଶିକ୍ଷା ଏବଂ ପ୍ରଶାସନ ସହିତ ସଂଶ୍ଳିଷ୍ଟ ଥିବାରୁ ବିଶ୍ୱବିଦ୍ୟାଳୟର ସମସ୍ତ ଶିକ୍ଷକ ଏବଂ ଅଣଶିକ୍ଷକ କର୍ମଚାରୀମାନଙ୍କ ସହିତ ମୋର ବିଶେଷ ସମ୍ପର୍କ ଓ ସହୃଦୟତା ଥିଲା । ମୁଁ ସିଣ୍ଡିକେଟ୍‌ରେ ସଭ୍ୟ ହେବା ପରେ ଶ୍ରୀରାମବାବୁଙ୍କର ଆମ ବିଭାଗ ବିଷୟରେ ପ୍ରସ୍ତାବ ସିଣ୍ଡିକେଟ୍‌ର ଅନ୍ୟ ସଭ୍ୟମାନଙ୍କ ଆପୋସ କଥାବାର୍ତ୍ତାରେ ପ୍ରତ୍ୟାହୃତ ହୋଇଥିଲା ଏବଂ ପ୍ରୟୋଗାତ୍ମକ ଅର୍ଥନୀତି ବିଭାଗ ବିଶ୍ୱବିଦ୍ୟାଳୟର ପ୍ରଧାନ ସ୍ନାତକୋତ୍ତର ଶିକ୍ଷାଦାନୀ ବିଭାଗମାନଙ୍କ ମଧ୍ୟରେ ଅନ୍ୟତମ ହୋଇଥିଲା । ତଥାପି ପାଞ୍ଚ ଛଅ ବର୍ଷ ପର୍ଯ୍ୟନ୍ତ ମୁଁ ବହୁଥର ଆପତ୍ତି ପାଇଲି ଯେ ଘରୋଇ କଲେଜମାନଙ୍କରେ ଅର୍ଥନୀତି ଅଧ୍ୟାପକ ନିଯୁକ୍ତି ସମୟରେ କେତେକ ନ୍ୟସ୍ତସ୍ୱାର୍ଥ ପ୍ରାର୍ଥୀ ପ୍ରଚାର କରୁଛନ୍ତି ଯେ ପ୍ରୟୋଗାତ୍ମକ ଅର୍ଥନୀତିରେ ଏମ୍.ଏ. ପାସ୍ କରିଥିବା ଛାତ୍ରମାନଙ୍କର ଅର୍ଥନୀତି ବିଷୟରେ ଅଧ୍ୟାପକ ହେବାକୁ ଆବଶ୍ୟକ ଯୋଗ୍ୟତା ନାହିଁ, ରାଜ୍ୟ ସରକାର ଏବଂ ପବ୍ଲିକ ସର୍ଭିସ୍ କମିସନଙ୍କ ନିୟମ ଓ ଘୋଷଣା ସତ୍ତ୍ୱେ ଏପରି ପ୍ରଚାର ହେଉଥିଲା । ସେଥିଯୋଗୁଁ ମୁଁ ୧୯୭୫ ମସିହାରେ ସିନେଟ୍ ଓ ଏକାଡେମିକ୍ କାଉନସିଲ୍‌ର ଅନୁମୋଦନକ୍ରମେ ସେ ବିଷୟର ନାମ ବିଶ୍ଳେଷଣାତ୍ମକ ଏବଂ ପ୍ରୟୋଗାତ୍ମକ ଅର୍ଥନୀତି କରାଇଲି । ସେତେବେଳକୁ ସେ ବିଭାଗର ମୁଖ୍ୟ ସମର୍ଥକ ପ୍ରଫେସର ପରିଜା ଏବଂ ପ୍ରଫେସର ସଦାଶିବ ମିଶ୍ର ଉଭୟ ବିଶ୍ୱବିଦ୍ୟାଳୟରୁ ଅବସର ନେଇ ସାରିଥିଲେ । ସେ ବିଭାଗର ସ୍ୱାର୍ଥ ରକ୍ଷା କରିବାକୁ ମୁଁ ଏକା ସଂଗ୍ରାମ କରୁଥିଲି । ପ୍ରକୃତରେ ସେ ଏମ୍.ଏ. କୋର୍ସରେ ସାଧାରଣ ଅର୍ଥନୀତି, ପରିସଂଖ୍ୟାନ ବିଜ୍ଞାନ ଏବଂ କୃଷି, ଶିଳ୍ପ, ଶ୍ରମ, ସମାଜବିଜ୍ଞାନ ପ୍ରଭୃତି ବହୁ ତାତ୍ତ୍ୱିକ ବିଷୟ ପଢ଼ା ହେଉଥିବାରୁ ତାହାର ସିଲାବସ୍ ଅତ୍ୟନ୍ତ ଉପାଦେୟ ହୋଇଥିଲା । କେବଳ ବ୍ୟକ୍ତିଗତ ବିବାଦ ଏବଂ ଅସୂୟା ଯୋଗୁଁ ବିଭିନ୍ନ ଅସୁବିଧାମାନ ସୃଷ୍ଟି ହେଉଥିଲା ।

ବିଭାଗର ନାମ ପରିବର୍ତ୍ତନ ପରେ ବର୍ତ୍ତମାନ ସେ ବିଭାଗ ବିଶ୍ୱବିଦ୍ୟାଳୟର ମୁଖ୍ୟ ଅର୍ଥନୀତି ବିଭାଗ ହୋଇଛି । ସେଥିରେ ଭାରତୀୟ ରିଜର୍ଭ ବ୍ୟାଙ୍କ ଏବଂ ଷ୍ଟେଟ୍ ବ୍ୟାଙ୍କ ଅଫ ଇଣ୍ଡିଆ ପ୍ରଭୃତି ଅଧ୍ୟାପକ ପଦ ପାଇଁ ଅନୁଦାନ ଦେଇଛନ୍ତି, ଗବେଷଣା ପାଇଁ ବହୁ ଶିକ୍ଷକ ଫେଲୋ ଏବଂ ରିସର୍ଚ୍ଚ ସ୍କଲାର ନିଯୁକ୍ତ ହେଉଛନ୍ତି ଏବଂ ବିଗତ ଚାଳିଶ ବର୍ଷ ମଧ୍ୟରେ ସେ ବିଭାଗରୁ ବହୁ ଶିକ୍ଷକ ଡକ୍ଟରେଟ୍ ଡିଗ୍ରୀ ଏବଂ ଏମ୍‌ଫିଲ୍ ଡିଗ୍ରୀ ପ୍ରଭୃତି ଲାଭ କରି ଓଡ଼ିଶାର ଏବଂ ଭାରତର ଅନ୍ୟ ବିଶ୍ୱବିଦ୍ୟାଳୟ ଏବଂ କଲେଜମାନଙ୍କର ଅଧ୍ୟାପକ ହୋଇଛନ୍ତି ଏବଂ ବହୁ ଛାତ୍ର ସର୍ବଭାରତୀୟ ଏବଂ ରାଜ୍ୟ ସିଭିଲ ସର୍ଭିସ ପରୀକ୍ଷାମାନଙ୍କରେ ଉତ୍ତୀର୍ଣ୍ଣ ହୋଇ ଓଡ଼ିଶାର ଏବଂ ଅନ୍ୟ ରାଜ୍ୟମାନଙ୍କରେ ପ୍ରଶାସନରେ ଉଚ୍ଚ ପଦବୀ ମାନ ଅଧିକାର କରିଛନ୍ତି । ଥରେ ସେ ବିଭାଗର ଜଣେ ଛାତ୍ର ସର୍ବଭାରତୀୟ ପ୍ରଶାସନ (I. A. S.) ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ବର୍ତ୍ତମାନ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C.) ସେ ବିଭାଗକୁ ଅର୍ଥନୀତିରେ ଉଚ୍ଚମାନର ଶିକ୍ଷା ଓ ଗବେଷଣା ପାଇଁ ବିଶେଷ ଅନୁଦାନ ଦେଉଛି । ସେ ବିଭାଗକୁ ବର୍ତ୍ତମାନର ଅବସ୍ଥାକୁ ଆଣିବାକୁ ମୋତେ ୧୯୫୬ ମସିହାରୁ ୧୯୭୭ ମସିହା ପର୍ଯ୍ୟନ୍ତ କୋଡ଼ିଏ ବର୍ଷରୁ ଊର୍ଦ୍ଧ୍ୱ ସମୟ ବହୁ ସଂଗ୍ରାମ କରିବାକୁ ପଡ଼ିଥିଲା । ସ୍ୱର୍ଗତ ପ୍ରଫେସର ପରିଜା ଓ ପ୍ରଫେସର ସଦାଶିବ ମିଶ୍ର ସେ କାର୍ଯ୍ୟରେ ସର୍ବଦା ମୋତେ ସାହାଯ୍ୟ କରିଥିଲେ ଏବଂ ସେ ବିଭାଗର କାର୍ଯ୍ୟକୁ ପ୍ରୋତ୍ସାହନ ଦେଇଥିଲେ । କହିବା ବାହୁଲ୍ୟ ଯେ ମୋ କାର୍ଯ୍ୟରେ ସେ ବିଭାଗର ମୋର ସମସ୍ତ ସହକର୍ମୀମାନଙ୍କର ସହଯୋଗ ଏବଂ ସମର୍ଥନ ଥିଲା ଏବଂ ସର୍ବଦା ମୁଁ ସେମାନଙ୍କର ସମ୍ମାନ ଓ ବନ୍ଧୁତା ଲାଭ କରିଥିଲି ।

# ବାଣୀବିହାର

୧୯୬୨ ମସିହା ଜୁଲାଇ ମାସରେ ଉତ୍କଳ ଇଉନିଭର୍ସିଟିର ପ୍ରଶାସନିକ ଅଫିସ, ଶିକ୍ଷାଦାନୀ ଓ ଗବେଷଣା ବିଭାଗମାନ ଓ ଲାଇବ୍ରେରୀ ଏବଂ ଅନ୍ୟ ଆନୁଷଙ୍ଗିକ ଅଫିସମାନ କଟକର ବିଭିନ୍ନ ସ୍ଥାନରୁ ଭୁବନେଶ୍ୱରସ୍ଥିତ ବାଣୀବିହାରଠାରେ ନିର୍ମିତ ନୂତନ କ୍ୟାମ୍ପସକୁ ଉଠିଆସିଲା । ସେଥି ସଙ୍ଗେ ସଙ୍ଗେ ସେ ଅଫିସମାନଙ୍କରେ ଏବଂ ଶିକ୍ଷାଦାନୀ ବିଭାଗମାନଙ୍କରେ କାର୍ଯ୍ୟ କରୁଥିବା କର୍ମଚାରୀ ଏବଂ ଅଧ୍ୟାପକମାନେ ବାଣୀବିହାର କ୍ୟାମ୍ପସରେ ନିର୍ମିତ ବାସଗୃହମାନଙ୍କରେ ବାସ କରିବାକୁ ଆସିଲେ । ମୁଁ ମୋର ପରିବାର ସହ ସେ ବର୍ଷ ଜୁଲାଇ ମାସ ଚାରି ତାରିଖ ଦିନ ବାଣୀବିହାରରେ ବାସ କରିବାକୁ ଆସିଥିଲି । ଆମେ ବାଣୀବିହାରରେ ପ୍ରଫେସରମାନଙ୍କ ପାଇଁ ନିର୍ମିତ ହୋଇଥିବା କ୍ୟାମ୍ପସର ଦକ୍ଷିଣ ପାର୍ଶ୍ୱରେ ପ୍ରଥମ ଧାଡ଼ିରେ କ୍ୟାମ୍ପସ ମଧ୍ୟକୁ ଯାଇଥିବା ରାସ୍ତାଠାରୁ ଦ୍ୱିତୀୟ ଘର ଏ. ୭ ନମ୍ବର ଘରେ ରହିଲୁ । ସେହିଦିନଠାରୁ ଆମେ ସେ ଘରେ ପନ୍ଦର ବର୍ଷ ଦୁଇମାସ ରହିଥିଲୁ । ଆମ ଘରର ବାମ ପାଖ ଏ. ୮ ନମ୍ବର ଘରେ ଭାଇସ୍‌ଚାନସେଲର ପରିଜାଙ୍କ ପରିବାର ତାଙ୍କ ପାଇଁ ଉଦ୍ଦିଷ୍ଟ କ୍ୟାମ୍ପସ ଘର ନିର୍ମାଣ ଶେଷ ହେବା ପର୍ଯ୍ୟନ୍ତ ରହିବାର ସ୍ଥିର ହୋଇଥିଲା । ସେହି ଧାଡ଼ିରେ ଆମ ଡାହାଣପାଖ ଘରମାନ ପରିସଂଖ୍ୟାନ ବିଭାଗ ଅଧ୍ୟାପକ ସାଧୁଚରଣ ଦାସ, ଦର୍ଶନ ଅଧ୍ୟାପକ ଡକ୍ଟର ଗଣେଶ୍ୱର ମିଶ୍ର, ନୃତତ୍ତ୍ୱ ଅଧ୍ୟାପକ ଡକ୍ଟର ଆୟାପାକ୍, ପ୍ରାଣିବିଜ୍ଞାନ ଅଧ୍ୟାପକ ଡକ୍ଟର ବସନ୍ତ କୁମାର ବେହୁରିଆ ଏବଂ ରେଜିଷ୍ଟ୍ରାର ଗୋରାଚାନ୍ଦ ରଥଙ୍କୁ ରହିବାକୁ ଦିଆଯାଇଥିଲା । ଆମ ପଛପଟ ଧାଡ଼ିରେ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ପ୍ରଫେସର ପ୍ରଭାତ କୁମାର ମୁଖାର୍ଜୀ, ଡେପୁଟି ରେଜିଷ୍ଟ୍ରାର ଦୁର୍ଗାପ୍ରସାଦ ବରାଳ ପ୍ରଭୃତି ରହିଥିଲେ । ପାଣିଟାଙ୍କି ପାଖରେ ଦୁଇ ଧାଡ଼ିରେ ଥିବା ଘରମାନ ଶିକ୍ଷାଦାନୀ ବିଭାଗମାନଙ୍କର ଲେକ୍‌ଚରର, ବିଶ୍ୱବିଦ୍ୟାଳୟ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର, କ୍ୟାମ୍ପସ ଡାକ୍ତର, ଇଞ୍ଜିନିଅର ପ୍ରଭୃତିଙ୍କୁ ଦିଆ ଯାଇଥିଲା । ତାପରେ ବହୁ ଧାଡ଼ିରେ ଥିବା ଘରମାନ ବିଶ୍ୱବିଦ୍ୟାଳୟ ଅଫିସ୍‌ର କର୍ମଚାରୀମାନଙ୍କୁ ଦିଆ ହୋଇଥିଲା ।

ଆମେ ଆସିବାବେଳକୁ କ୍ୟାମ୍ପସର ପ୍ରଥମ ପର୍ଯ୍ୟାୟର ନିର୍ମାଣ କାର୍ଯ୍ୟ ପ୍ରାୟ ଶେଷ ହୋଇଥିଲା ଏବଂ କ୍ୟାମ୍ପସର ରାସ୍ତାମାନଙ୍କର ନିର୍ମାଣ ଶେଷ ହୋଇଥିଲା । ଆମେ କ୍ୟାମ୍ପସରେ ଅଠର ବର୍ଷ ରହିବା ସମୟରେ ଆଉ ନୂଆ ରାସ୍ତା ନିର୍ମିତ ହୋଇ ନାହିଁ କିମ୍ବା ରାସ୍ତାମାନଙ୍କର ବିଶେଷ ମରାମତି କାର୍ଯ୍ୟ ହୋଇ ନାହିଁ । ବିଶ୍ୱବିଦ୍ୟାଳୟର ଅଫିସଘର, ଆର୍ଟସ ବ୍ଲକ, ଲାଇବ୍ରେରୀ, ଦୁଇଟି ଛାତ୍ରାବାସ ଏବଂ ଗୋଟିଏ ଛାତ୍ରୀନିବାସର କାର୍ଯ୍ୟ ଶେଷ ହୋଇଥିଲା । ପରିସଂଖ୍ୟାନ ଓ ନୃତତ୍ତ୍ୱ ବିଭାଗ ଘର ଅଧା ହୋଇଥିଲା ଏବଂ ଭାଇସ୍

ଚାନସେଲରଙ୍କ ରହିବା ଘର ପ୍ରାୟ ଶେଷ ହୋଇଥିଲା । କ୍ୟାମ୍ପସର ଦକ୍ଷିଣପାଖ ଜାତୀୟ ରାଜପଥ କଡ଼ର ପାଚେରି କାମ ଶେଷ ହୋଇଥିଲା । ମାତ୍ର ଅନ୍ୟ ତିନି ପାଖରେ କୌଣସି ପାଚେରି କିମ୍ବା ବାଡ଼ ନ ଥିଲା । ରହିବା ଘରମାନଙ୍କରେ ଯେଉଁ ଅଳ୍ପ ଅଳ୍ପ କାମ ବାକି ଥିଲା ତାହା ସବୁ ହେଉଥିଲା । ନିର୍ମାଣ କାର୍ଯ୍ୟ ଶୀଘ୍ର ଶେଷ କରାଇବା ନିମିତ୍ତ ରଜିଷ୍ଟ୍ରାର ନିଜେ କ୍ୟାମ୍ପସରେ ପରିବାର ସହ ରହିବାକୁ ଇଚ୍ଛା ପ୍ରକାଶ କରିଥିଲେ ଏବଂ ସେଥିପାଇଁ ତାଙ୍କୁ ଆମ ଘରର ବାମ ପାଖ ଘର ଦିଆଯାଇଥିଲା ।

ଆମେ ଯେଉଁ ଶିକ୍ଷକମାନେ କ୍ୟାମ୍ପସରେ ପ୍ରଥମେ ରହିବାକୁ ଆସିଲୁ, ସେ ସମସ୍ତଙ୍କ ମଧ୍ୟରେ କଟକରେ ଚିହ୍ନାପରିଚୟ ଓ ବନ୍ଧୁତା ଥିଲା । କ୍ୟାମ୍ପସରେ ଏକ ସଙ୍ଗରେ ପରିବାର ସହିତ ରହିବା ହେତୁ ସେ ବନ୍ଧୁତା ଦୃଢ଼ତର ହୋଇଥିଲା । କଟକରେ ରହିଥିବା ସମୟରେ ବହୁ ଶିକ୍ଷକଙ୍କର ପରିବାରମାନ କଟକରେ ବିଭିନ୍ନ ସ୍ଥାନରେ ରହିଥିଲେ । ସୁତରାଂ ସ୍ତ୍ରୀଲୋକ ଏବଂ ପିଲାମାନଙ୍କ ମଧ୍ୟରେ ମିଳାମିଶାର ସୁଯୋଗ ନ ଥିଲା । କ୍ୟାମ୍ପସରେ ସମସ୍ତେ ଏକାଠି ରହିବା ହେତୁ ଆମ୍ଭମାନଙ୍କର ପାରିବାରିକ ସମ୍ପର୍କ ଘନିଷ୍ଠ ହେଲା । ବିଶ୍ୱବିଦ୍ୟାଳୟ ଅଫିସର ବହୁ କର୍ମଚାରୀଙ୍କ ସହିତ ମଧ୍ୟ ଆମର ଆଗରୁ ପରିଚୟ ଥିଲା, ମାତ୍ର ସେମାନଙ୍କ ପରିବାରମାନଙ୍କ ସହିତ ପରିଚୟ ନ ଥିଲା । କ୍ୟାମ୍ପସରେ ଏକାଠି ରହିବା ହେତୁ ସେମାନଙ୍କ ସହିତ ପରିଚୟ ହେଲା । ସୁତରାଂ କ୍ୟାମ୍ପସରେ ରହିବାର ପ୍ରଥମରୁ ସଙ୍ଗସୁଖର ଅଭାବ ନ ଥିଲା । ଗୋଟିଏ ନୂତନ ପରିବେଶରେ ଏକତ୍ର ରହିବାରୁ ଆମେ ସମସ୍ତେ ଖୁସି ହୋଇଥିଲୁ ।

ଆମେ ଦେଖିଲୁ କ୍ୟାମ୍ପସ ସ୍ଥାନ ଏକ ବିରାଟ ପ୍ରାନ୍ତର । ରାଜ୍ୟ ସରକାର କ୍ୟାମ୍ପସ ପାଇଁ ଚାରିଶହ ଏକର ଜମି ଦେଇଥିଲେ । ସେ ଚାରିଶହ ଏକରର ସୀମା ମାନଚିତ୍ରରେ ସଠିକ ଭାବରେ ଥିବ । ମାତ୍ର ପ୍ରକୃତ ସ୍ଥଳରେ ଜାତୀୟ ରାଜପଥ କଡ଼ରେ ପାଚେରି ବ୍ୟତୀତ ଅନ୍ୟ ତିନି ଦିଗରେ ଖୋଲା ପଡ଼ିଆ ଥିଲା । କ୍ୟାମ୍ପସର ସୀମା ସରହଦ ଖୁଣ୍ଟମାନ କେଉଁଠି ଥିଲା ତାହା ଆମେ ଦେଖି ନାହୁଁ । କ୍ୟାମ୍ପସ୍‌ର ପଶ୍ଚିମରେ ରିଜିଓନାଲ ରିସର୍ଚ୍ଚ ଲାବୋରେଟରୀ କଡ଼ରେ ନନ୍ଦନକାନନ ଆଡ଼କୁ ଗୋଟିଏ ରାସ୍ତା ଥିଲା । ରିଜିଓନାଲ୍ ରିସର୍ଚ୍ଚ ଲାବୋରେଟରୀ ସେତେବେଳଯାଏ ନିର୍ମିତ ହୋଇ ନ ଥିଲା । ପୂର୍ବରେ ଜାତୀୟ ରାଜପଥରୁ ସୈନିକ ସ୍କୁଲ ଆଡ଼କୁ ଗୋଟିଏ ରାସ୍ତା ଥିଲା । ସୈନିକ ସ୍କୁଲ ସେତେବେଳଯାଏ ନିର୍ମିତ ହୋଇ ନ ଥିଲା । ପୂର୍ବ ପଶ୍ଚିମରେ ଏହି ଦୁଇଗୋଟି ରାସ୍ତା ଆମ କ୍ୟାମ୍ପସର ସୀମା ବୋଲି ଆମେ ଜାଣୁଥିଲୁ । ଉତ୍ତର ଆଡ଼କୁ ଇଉନିଭର୍ସିଟି ଘରମାନଙ୍କ ପରେ ବିସ୍ତୀର୍ଣ୍ଣ ପ୍ରାନ୍ତର ପଡ଼ିଥିଲା । ଇଉନିଭର୍ସିଟି ଜମି ସୀମା ପରେ କେତେକ ଦୂର ପର୍ଯ୍ୟନ୍ତ ଧାନବିଲ, ଜମି ଥିଲା । ତାପରେ ସୈନିକ ସ୍କୁଲକୁ ଦିଆ ଯାଇଥିବା ବିରାଟ ଜାଗା ସେ ଦିଗରେ ଇଉନିଭର୍ସିଟି ଜମି କେଉଁଠି ଶେଷ ହୋଇଛି ତାହା ଜାଣି ହେଉ ନ ଥିଲା । ଇଉନିଭର୍ସିଟି ଜମିରେ ଆଗେ ବହୁତ ଜଙ୍ଗଲ ଥିଲା ବୋଲି ଆମେ ଶୁଣୁଥିଲୁ । ଆମ ଘର ଆଗରେ ଜାତୀୟ ରାଜପଥ କଡ଼ରେ ହାତୀ ଧରିବାକୁ ଗୋଟିଏ ଖେଦା ଥିଲା । ମାତ୍ର

ଆମେ ଆସିବା ବେଳକୁ ସବୁ ଜଙ୍ଗଲ ସଫା ହୋଇ ଯାଇଥିଲା । ଲାଇବ୍ରେରୀ ଆଗରେ, ହ୍ରଦ କୂଳରେ ଏବଂ ରେଜିଷ୍ଟ୍ରାରଙ୍କ ଘର ଆଗରେ, ଏହି ତିନି ସ୍ଥାନରେ ତିନିଗୋଟି ବରଗଛ ବ୍ୟତୀତ ପୂରା କ୍ୟାମ୍ପସରେ ଆଉ ଗଛ ନ ଥିଲା । ଦକ୍ଷିଣପଟରୁ ଅଳ୍ପ ଦୂର ପର୍ଯ୍ୟନ୍ତ ରାସ୍ତାର ବାମ ପାଖରେ ରହିବା ଘର ଏବଂ ଡାହାଣ ପାଖରେ ପ୍ରଶାସନିକ ଅଫିସ ଘର, ଆର୍ଟସ୍ ବ୍ଲକ, ଲାଇବ୍ରେରୀ ଏବଂ ଦୁଇଟି ହଷ୍ଟେଲ ହୋଇଥିଲା । ଯେଉଁଯାଏ ଘର ସବୁ ହୋଇଥିଲା, ସେହିଯାଏ ରାସ୍ତାସବୁ ହୋଇଥିଲା । ତାପରେ ଉତ୍ତରପଟକୁ ସବୁ ଜମି ଖାଲି ପଡ଼ିଥାଏ । ସେଥିରେ କେବଳ କଣ୍ଟାବୁଦା, ଜଙ୍ଗଲିଆ ଘାସବୁଦା ବ୍ୟତୀତ କୌଣସି ଗଛ କିମ୍ବା ବଡ଼ ଉଇହୁଙ୍କା ନ ଥିଲା । ଆମେ ଶୁଣିଲୁ ଯେ ଜଙ୍ଗଲ ସଫା କରିବାବେଳେ ବୁଲଡୋଜର ଦ୍ୱାରା ହୁଙ୍କା ପ୍ରଭୃତିକୁ ସଫା କରି ଦିଆଯାଇଥିଲା ଏବଂ ସେ ସ୍ଥାନରୁ ବହୁ ସାପ ବାହାରିଥିଲେ । ଆମେ କ୍ୟାମ୍ପସରେ କେତେ ମାସ ରହିବା ପରେ ଯେତେବେଳେ ସୈନିକ ସ୍କୁଲର କ୍ୟାମ୍ପସ୍ ବୁଲଡୋଜରରେ ସଫା ହେଉଥାଏ, ସେତେବେଳେ ପ୍ରଫେସର ସାଧୁବାବୁ ଓ ମୁଁ ଦିନେ ସେଠାକୁ ବୁଲି ଯାଇଥିଲୁ । ସେଠାରେ କାମ କରୁଥିବା ଲୋକମାନେ କହୁଥିଲେ ଯେ ଜମି ସଫା କରିବାବେଳେ ସେଠାରେ ଅସଂଖ୍ୟ ନାଗ ସାପ ବାହାରିଥିଲେ । କ୍ୟାମ୍ପସରେ ଆମେ ପନ୍ଦର ବର୍ଷ ରହିବା ପରେ ମଧ ଆମ ହତାରେ ଦୁଇଗୋଟି ହୁଙ୍କାରେ ତିନି ଚାରିଗୋଟି ନାଗସାପ ଥିବା ଆମେ ଦେଖିଥିଲୁ । ଆମ କ୍ୟାମ୍ପସ ଠାରୁ ପଟିଆ ଗାଁ ପର୍ଯ୍ୟନ୍ତ ପୂରା ଅଞ୍ଚଳରେ ଅସଂଖ୍ୟ ହୁଙ୍କାରେ ନାଗସାପ ଥିଲେ । ବାଣୀବିହାର ହେବା ପୂର୍ବରୁ ସେ ଜମି ନାଗବିହାର ଥିଲା । ପଟିଆରେ ସାପୁଆ କେଳା ବସ୍ତି ଆଜିଯାଏ ଅଛି ଏବଂ ଜଙ୍ଗଲରୁ ନାଗ, ଡମ୍ପ ଏବଂ ଅଜଗର ସାପ ପ୍ରଭୃତି ଧରି କଟକ ଓ ପୁରୀ ଜିଲ୍ଲାର ଗାଁମାନଙ୍କରେ ଖେଳାଇବା ସେ କେଳାମାନଙ୍କର ବ୍ୟବସାୟ ।

ସେ ଯାହାହେଉ, କ୍ୟାମ୍ପସରେ ଶିକ୍ଷକ ଓ କର୍ମଚାରୀମାନଙ୍କ ବାସଗୃହ, ଶିକ୍ଷାଦାନୀ ବିଭାଗମାନଙ୍କ ପାଇଁ ଘର, ଲାଇବ୍ରେରୀ, ସିନେଟ ହଲ୍, ବ୍ୟାଙ୍କ୍, ପୋଷ୍ଟଅଫିସ, ଖେଳପାଇଁ ଷ୍ଟାଡିୟମ ପ୍ରଭୃତି ନିର୍ମାଣ କରିବାକୁ ଯଥେଷ୍ଟ ସ୍ଥାନ ଥିଲା । ସେ ସ୍ଥାନରୁ ଅଳ୍ପ ଅଂଶ ବ୍ୟବହୃତ ହେଉଥିଲା । ଅନ୍ୟ ବହୁ ଅଂଶ ଭବିଷ୍ୟତ ବ୍ୟବହାର ପାଇଁ ଖାଲି ପଡ଼ିଥିଲା । ସେ ସ୍ଥାନରେ ଇଉନିଭର୍ସିଟି କ୍ୟାମ୍ପସ କରିବା ନିଷ୍ପତ୍ତି ଦୂରଦୃଷ୍ଟିସମ୍ପନ୍ନ କାର୍ଯ୍ୟ ଥିଲା । ୧୯୪୩ ମସିହାରେ ଇଉନିଭର୍ସିଟି ଆରମ୍ଭ ହେବାବେଳକୁ ତାହା କଟକରେ ହେବ ବୋଲି ସମସ୍ତେ ଭାବିଥିଲେ । ସେତେବେଳେ କଟକ ଓଡ଼ିଶାର ରାଜଧାନୀ ଥିଲା ଏବଂ ଓଡ଼ିଶାର ସବୁ ବଡ଼ ବଡ଼ ସ୍କୁଲ କଲେଜ କଟକରେ ଥିଲା । ଭୁବନେଶ୍ୱରରେ ରାଜଧାନୀ ହେବ ବୋଲି ଲୋକମାନେ ଚିନ୍ତା କରି ନ ଥିଲେ । ୧୯୪୬ ମସିହାରେ ମହତାବ ମୁଖ୍ୟମନ୍ତ୍ରୀ ହେବା ପରେ ଭୁବନେଶ୍ୱରରେ ରାଜଧାନୀ ହେବ ବୋଲି ସ୍ଥିର ହୋଇଥିଲା ଏବଂ ୧୯୪୮ ମସିହାର ଅପ୍ରେଲ ମାସରେ ପଣ୍ଡିତ ନେହେରୁ ରାଜଧାନୀର ଶୁଭ ଦେଇଥିଲେ । ସେତେବେଳେ ଖଣ୍ଡଗିରିଠାରୁ କୁଆଖାଇ ନଦୀ ପର୍ଯ୍ୟନ୍ତ ଏବଂ ଉତ୍ତର ଏବଂ ପଶ୍ଚିମରେ ମଞ୍ଚେଶ୍ୱରଠାରୁ ନନ୍ଦନକାନନ ପର୍ଯ୍ୟନ୍ତ ବିରାଟ ବାସଗୃହ ନିର୍ମାଣ ଯୋଗ୍ୟ ଅଞ୍ଚଳ

ଯେଉଁଠାରେକି ବର୍ତ୍ତମାନର ଭୁବନେଶ୍ୱର ସହର ଗଢ଼ିଉଠୁଛି, ସେ ସବୁ ସ୍ଥାନ ଖାଲି ପଡ଼ିଥିଲା ।

ଭୁବନେଶ୍ୱରରେ ରାଜଧାନୀ ହେବା ପରେ ମଧ୍ୟ ୧୯୫୬ ଏବଂ ୧୯୫୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ ରେଭେନ୍ସା କଲେଜ ପଡ଼ିଆ ଏବଂ ବର୍ତ୍ତମାନ କୋଠି ପଡ଼ିଆରେ କିମ୍ବା କୁଷ୍ଠାଶ୍ରମ ପଡ଼ିଆରେ ହେଉ ବୋଲି ଯେଉଁମାନେ ଯୁକ୍ତି କରୁଥିଲେ, ମୋ ବିଚାରରେ ସେମାନଙ୍କର ଆଧୁନିକ ବିଶ୍ୱବିଦ୍ୟାଳୟ କ୍ୟାମ୍ପସମାନଙ୍କ ବିଷୟରେ କୌଣସି ଧାରଣା ନ ଥିଲା । ଆମ ଦେଶରେ ବୈଦିକ ଯୁଗରେ ଆର୍ଯ୍ୟ ସଂସ୍କୃତି ପ୍ରଚଳିତ ଥିବା ସମୟରେ ରାଜା, ମନ୍ତ୍ରୀ, ବଣିକ ଓ କୃଷକ ପ୍ରଭୃତି ଜନପଦରେ ବାସ କରୁଥିବା ବେଳେ, ଋଷି, ତପସ୍ୱୀ, ଗୁରୁ ଓ ଶିଷ୍ୟମାନେ ଆରଣ୍ୟକ ପରିବେଶ ମଧ୍ୟରେ ଥିବା ଗୁରୁକୁଳମାନଙ୍କରେ ବାସ କରୁଥିଲେ । ତପସ୍ୟା, ଉଚ୍ଚ ଚିନ୍ତା, ଅଧ୍ୟାପନା ଓ ଅଧ୍ୟୟନ ନିମିତ୍ତ ବୃକ୍ଷ, ଲତା, ଝରଣା, ପାହାଡ଼ ପରିପୂର୍ଣ୍ଣ ପରିବେଶ ଅନୁକୂଳ ବୋଲି ସେତେବେଳେ ଲୋକମାନେ ଭାବୁଥିଲେ । ବୌଦ୍ଧଯୁଗରେ ଭାରତର ନାଳନ୍ଦା, ପୁଷ୍ପଗିରି, ତକ୍ଷଶିଳା ପ୍ରଭୃତି ବିଦ୍ୟାଧ୍ୟୟନ ଓ ଧର୍ମଚର୍ଚ୍ଚା କେନ୍ଦ୍ରମାନ ସେତେବେଳର ଜଣାଶୁଣା ଜଗତରେ ପ୍ରସିଦ୍ଧ ଥିଲା । ଅଶୋକଙ୍କ ରାଜତ୍ୱ ପୂର୍ବରୁ ତକ୍ଷଶିଳା ଗୋଟିଏ ପ୍ରଧାନ ଶିକ୍ଷାକେନ୍ଦ୍ର ଥିଲା । ଚତୁର୍ଥ ଶତାବ୍ଦୀରେ ଚୀନ ପରିବ୍ରାଜକ ଫାହିୟାନ ଏବଂ ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନସାଂ ଏହି କେନ୍ଦ୍ର ବିଷୟରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ନାଳନ୍ଦା ବିହାର ଚତୁର୍ଥ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ପୂର୍ବ ଭାରତରେ ପ୍ରଧାନ ବିଦ୍ୟାକେନ୍ଦ୍ର ଥିଲା । ହୁଏନ୍‌ସାଂ ଏଠାରେ ଛଅବର୍ଷ ରହି ସଂସ୍କୃତ ଏବଂ ଦର୍ଶନ ଅଧ୍ୟୟନ କରିଥିଲେ । ଏଠାରେ ପ୍ରାୟ ଦଶହଜାର ବିଦ୍ୟାର୍ଥୀ ଅଧ୍ୟୟନ କରୁଥିଲେ ଏବଂ ଏକହଜାର ଅଧ୍ୟାପକ ଥିଲେ । ବୌଦ୍ଧ ସନ୍ନ୍ୟାସୀମାନେ ସାଧାରଣତଃ ବୌଦ୍ଧବିହାରମାନଙ୍କରେ ବାସ କରି ଧର୍ମଶାସ୍ତ୍ର ଚର୍ଚ୍ଚା ଏବଂ ଧର୍ମ ଶିକ୍ଷାଦାନ ପ୍ରଭୃତି କରୁଥିଲେ । ମଧ୍ୟଯୁଗରେ ଇଂଲଣ୍ଡରେ ଏବଂ ବିଭିନ୍ନ ଇଉରୋପୀୟ ଦେଶମାନଙ୍କରେ ଖ୍ରୀଷ୍ଟ ଧର୍ମଯାଜକମାନେ ପ୍ରାକୃତିକ ପରିବେଶରେ ବିଦ୍ୟାର୍ଥୀମାନଙ୍କୁ ଶିକ୍ଷାଦାନ କରୁଥିଲେ । ଇଂଲାଣ୍ଡର ଆଧୁନିକ କ୍ୟାମ୍ବ୍ରିଜ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟମାନଙ୍କରେ ଆଠଶହ ବର୍ଷରୁ ଊର୍ଦ୍ଧ୍ୱ ସମୟ ବୃକ୍ଷ, ଲତା, ନଦୀ ପରିପୂର୍ଣ୍ଣ ପ୍ରାକୃତିକ ପରିବେଶ ମଧ୍ୟରେ ବିଦ୍ୟାର୍ଥୀମାନେ ଅଧ୍ୟାପକମାନଙ୍କ ସହିତ ରହି ବିଦ୍ୟାଧ୍ୟୟନ କରି ଆସୁଛନ୍ତି । କ୍ୟାମ୍ବ୍ରିଜ ଓ ଅକ୍ସଫୋର୍ଡ଼ ଆଦର୍ଶରେ ଶିଳ୍ପସମୃଦ୍ଧ ଯୁକ୍ତରାଷ୍ଟ୍ର ଆମେରିକା ଏବଂ କାନାଡ଼ା ପ୍ରଭୃତି ଦେଶମାନଙ୍କରେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ ମାନ ନିର୍ମିତ ହୋଇଛି । ଯୁକ୍ତରାଷ୍ଟ୍ର ଆମେରିକାରେ ଷ୍ଟାନ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍ ପରିସରରେ ନଅହଜାର ଏକର ଜମି ଅଛି । କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ନଅଗୋଟି ବିରାଟ କ୍ୟାମ୍ପସ ଅଛି । ଷ୍ଟାନ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟ କ୍ୟାମ୍ପସର ବାଉଁଶ ବୁଦା, ଖଜୁରୀ ଗଛ, ବଣଜଙ୍ଗଲ ଏବଂ କାଲିଫର୍ଣ୍ଣିଆର ବର୍‌କ୍ଲେ କ୍ୟାମ୍ପସ୍‌ର ଜଙ୍ଗଲ ପାହାଡ଼ମାନ, କାନାଡ଼ାର କାଲଗାରି, ଭାଙ୍କୁଭର ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ମାନଙ୍କରେ ଖୋଲାପଡ଼ିଆ ବୃକ୍ଷଲତା ପ୍ରଭୃତି ଦେଖିଲେ,

ସେପରି ବିଦ୍ୟାଧ୍ୟୟନ କେନ୍ଦ୍ରମାନ ଯୁକ୍ତରାଷ୍ଟ୍ର ଏବଂ କାନାଡ଼ାପରି ଶିଳ୍ପସମୃଦ୍ଧ ଦେଶ ମାନଙ୍କରେ ଯେ ଅବସ୍ଥିତ ତାହା ବିଶ୍ୱାସ କରି ହୁଏ ନାହିଁ । ଆଧୁନିକ ସଭ୍ୟ ଦେଶ ମାନଙ୍କର ଲୋକମାନେ ବର୍ତ୍ତମାନ ସୁଦ୍ଧା ବିଶ୍ୱାସ କରନ୍ତି ଯେ, ଖୋଲା ପଡ଼ିଆ ଓ ପ୍ରାକୃତିକ ପରିବେଶ ମଧ୍ୟରେ ବିଦ୍ୟାର୍ଥୀ ଓ ଅଧ୍ୟାପକମାନଙ୍କର ଗୋଷ୍ଠୀଗତ ଜୀବନ, ବିଦ୍ୟାଧ୍ୟୟନ, ଗବେଷଣା, ନୂତନ ଜ୍ଞାନ ଏବଂ ନୂତନ ତଥ୍ୟ ଉଦ୍‌ଭାବନ ଓ ଉଚ୍ଚ ଚିନ୍ତା ପାଇଁ ଅଧିକ ଅନୁକୂଳ ।

ଆମ ଦେଶରେ ବ୍ରିଟିଶ ସରକାର ଯେତେବେଳେ ୧୯୫୮ ମସିହାରେ ପ୍ରଥମେ କଲିକତା, ବମ୍ବେ ଓ ମାନ୍ଦ୍ରାଜ ପରି ବଡ଼ ବଡ଼ ସହରମାନଙ୍କରେ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠା କଲେ, ସେମାନେ କାମ୍ବ୍ରିଜ ଅକ୍ସଫୋର୍ଡ଼ ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କର ଆଦର୍ଶ ଅନୁସରଣ କରି ନ ଥିଲେ । ସେମାନେ ସହରମାନଙ୍କର ଜନଗହଳି ଅଞ୍ଚଳମାନଙ୍କରେ ବିଶ୍ୱବିଦ୍ୟାଳୟର ଅଫିସ, କଲେଜ ଏବଂ ଛାତ୍ରାବାସ ମାନ ନିର୍ମାଣ କଲେ । ତାହାପରେ ଅନ୍ୟ ସହରମାନଙ୍କରେ ଯେଉଁ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ ହେଲା ସେଗୁଡ଼ିକରେ କଲିକତା, ବମ୍ବେ ପ୍ରଣାଳୀ ଅନୁସୃତ ହେଲା । ମାତ୍ର ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧିରେ ଦୂରଦୃଷ୍ଟିସମ୍ପନ୍ନ, ମହାମନା ମଦନ ମୋହନ ମାଳବ୍ୟ ଯେତେବେଳେ ବାରାଣସୀ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କଲେ, ସେ ଇଂଲଣ୍ଡ ଓ ଆମେରିକାର ସବୁଜ-କ୍ୟାମ୍ପସ ପ୍ରଣାଳୀ ଅନୁସରଣ କଲେ । ସେ ବାରଶହ ଏକର ଜମିରେ ବନାରସ ବିଶ୍ୱବିଦ୍ୟାଳୟର କ୍ୟାମ୍ପସ ପ୍ରତିଷ୍ଠା କଲେ । ସେହି କ୍ୟାମ୍ପସ ପରିସର ମଧ୍ୟରେ ବିଭିନ୍ନ କଲେଜ, ସ୍ନାତକୋତ୍ତର ବିଭାଗ, ଛାତ୍ର ଓ ଛାତ୍ରୀନିବାସ, ଅଧ୍ୟାପକମାନଙ୍କ ପାଇଁ ବାସଗୃହ, ଖେଳପଡ଼ିଆ ଏବଂ ବିଶ୍ୱବିଦ୍ୟାଳୟର ସମସ୍ତ ଆନୁଷଙ୍ଗିକ ଅନୁଷ୍ଠାନମାନଙ୍କର ଗୃହ ନିର୍ମିତ ହୋଇଥିଲା ଏବଂ ସେ ବିଶ୍ୱବିଦ୍ୟାଳୟ ଭାରତବର୍ଷର ଗୋଟିଏ ଆଦର୍ଶ ବିରାଟ ବିଦ୍ୟାଧ୍ୟୟନ କେନ୍ଦ୍ର ହେଲା । ସ୍ୱାଧୀନତା ପରେ ଭାରତବର୍ଷରେ ଯେଉଁସବୁ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଛି ସେଗୁଡ଼ିକର ସ୍ଥାନ ନିରୂପଣ ଏବଂ କୋଠାବାଡ଼ି ନିର୍ମାଣରେ କଲିକତା, ବମ୍ବେ, ଲଣ୍ଡନ ପରିବର୍ତ୍ତେ ବନାରସ ବିଶ୍ୱବିଦ୍ୟାଳୟ ଏବଂ ଅକ୍ସଫୋର୍ଡ଼, କ୍ୟାମ୍ବ୍ରିଜ, ଷ୍ଟାନଫୋର୍ଡ଼ ପ୍ରଭୃତି ଇଂଲାଣ୍ଡ ଆମେରିକାର ସବୁଜ କ୍ୟାମ୍ପସ ଆଦର୍ଶରେ ହୋଇଛି ।

ପରିଜା ସାତବର୍ଷ କ୍ୟାମ୍ବ୍ରିଜରେ ଅଧ୍ୟୟନ ଓ ଗବେଷଣା କରିଥିଲେ ଏବଂ ତିନିବର୍ଷକାଳ ବନାରସ ବିଶ୍ୱବିଦ୍ୟାଳୟର ପ୍ରୋ ଭାଇସ୍‌ଚାନ୍‌ସେଲର ଥିଲେ । ତତ୍‌କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ ତାହା ପୂର୍ବରୁ ଯୁକ୍ତରାଷ୍ଟ୍ର ଆମେରିକାର କେତେଗୋଟି ବିଶ୍ୱବିଦ୍ୟାଳୟ ବୁଲି ଦେଖିଥିଲେ ଏବଂ ଅବିଭକ୍ତ ବମ୍ବେ ପ୍ରଦେଶର ରାଜ୍ୟପାଳ ଥିବାବେଳେ ସେ ପ୍ରଦେଶର ସବୁ ବିଶ୍ୱବିଦ୍ୟାଳୟର କ୍ୟାମ୍ପସ ଦେଖିଥିଲେ । ସୁତରାଂ ତାଙ୍କର ଏବଂ ପରିଜାଙ୍କ ଅଭିଜ୍ଞତା ଅନୁସାରେ ଭୁବନେଶ୍ୱରର ବାଣୀବିହାରଠାରେ ଉତ୍କଳ ବିଶ୍ୱବିଦ୍ୟାଳୟ କ୍ୟାମ୍ପସର ସ୍ଥାନ ନିରୂପିତ ହୋଇଥିଲା । ମୋ ଜାଣିବାରେ ପୁରାତନ ବୌଦ୍ଧବିହାର ନାମ ଅନୁସରଣରେ କ୍ୟାମ୍ପସର ନାମ ବାଣୀବିହାର ଦେବାକୁ ପରିଜା

ପରାମର୍ଶ ଦେଇଥିଲେ । ବାଣୀବିହାର ନାମ ଅନୁସରଣରେ ୧୯୬୭ ମସିହାରେ ସ୍ଥାପିତ ହୋଇଥିବା ବ୍ରହ୍ମପୁର ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟମାନଙ୍କର କ୍ୟାମ୍ପସ୍‌ମାନଙ୍କର ନାମ ଯଥାକ୍ରମେ ଭଞ୍ଜବିହାର ଓ ଜ୍ୟୋତିର୍ବିହାର ହୋଇଛି । ଭୁବନେଶ୍ୱର ସହରରେ ମଧ୍ୟ ସେହି ନାମ ଅନୁକରଣରେ ବିଭିନ୍ନ ଅଞ୍ଚଳମାନ ବର୍ତ୍ତମାନ ଆଚାର୍ଯ୍ୟ ବିହାର, ଜୟଦେବ ବିହାର, କାନନ ବିହାର ଓ ଶୈଳଶ୍ରୀ ବିହାର ପ୍ରଭୃତି ନାମରେ ନାମିତ କରାଯାଇଛି ।

ସୁତରାଂ କ୍ୟାମ୍ପସ୍‌ର ସ୍ଥାନ ନିରୂପଣ ଯଥାର୍ଥ ଥିଲା । ମାତ୍ର ପ୍ରଥମରୁ ଜମି ରେଜେଷ୍ଟ୍ରି ହୋଇ ନ ଥିବାରୁ ଏବଂ ଦକ୍ଷିଣପାର୍ଶ୍ୱ ଜାତୀୟ ରାଜପଥ କଡ଼ ବ୍ୟତୀତ ପୂର୍ବ, ପଶ୍ଚିମ ଏବଂ ଉତ୍ତର ସୀମାରେ କୌଣସି ପାଚିରି, ତାରବାଡ଼ କିମ୍ବା ଉଚ୍ଚ ଉଚ୍ଚ ସିମେଣ୍ଟ ଖୁଣ୍ଟ ନ ଥିବାରୁ ପରବର୍ତ୍ତୀ କାଳରେ ବିଭିନ୍ନ ସରକାରୀ ବିଭାଗ ଏବଂ ବ୍ୟକ୍ତିବିଶେଷ ବେଆଇନ୍ ଭାବରେ ବିଶ୍ୱବିଦ୍ୟାଳୟ ଜମିର ଅନେକ ଅଂଶ ଅଧିକାର କରି ନେଇଥିଲେ । କ୍ୟାମ୍ପସ୍ ଆରମ୍ଭ ହେବାବେଳେ ସେ ଭୟ ନ ଥିଲା, କାରଣ ସେତେବେଳେ ପୂର୍ବ, ପଶ୍ଚିମ ଓ ଉତ୍ତରପଟରେ କୌଣସି ଅନୁଷ୍ଠାନ କିମ୍ବା ଜନବସତି ନ ଥିଲା । ଆଗରୁ କୁହାଯାଇଛି ଯେ ସମୟକ୍ରମେ ବିଶ୍ୱବିଦ୍ୟାଳୟର ପ୍ରଶାସନିକ ଦୁର୍ବଳତା ଏବଂ ଉଦାସୀନତାର ସୁଯୋଗ ନେଇ ଜାତୀୟ ରାଜପଥରୁ ସୈନିକ ସ୍କୁଲ ଆଡ଼କୁ ଯାଇଥିବା ରାସ୍ତା କଡ଼ରେ ଆୟକର ଏବଂ ଡାକତାର ବିଭାଗମାନ ଅନେକ ବିଶ୍ୱବିଦ୍ୟାଳୟ ଜମି ଅଧିକାର କରି ସେମାନଙ୍କର ଅଫିସ ଏବଂ କର୍ମଚାରୀମାନଙ୍କ ନିମିତ୍ତ ବାସଗୃହ ମାନ ନିର୍ମାଣ କଲେ । ଉତ୍ତରରେ ସୁରେନ୍ଦ୍ର ସାଏ ନଗର ହେଲା ଏବଂ ସମୟକ୍ରମେ ବହୁ ଘରୋଇ ବ୍ୟକ୍ତି ବାସଗୃହ ନିର୍ମାଣ କଲେ । ସେମାନେ କ୍ରମେ କ୍ରମେ ବିଶ୍ୱବିଦ୍ୟାଳୟ ଜମିରୁ କେତେକ ଅଂଶ ବେଆଇନ୍ ଭାବରେ ଦଖଲ କଲେ । ୧୯୭୫ ମସିହାରେ ଜ୍ଞାନଚାନ୍ଦ ବିଶ୍ୱବିଦ୍ୟାଳୟର ପ୍ରଶାସକ ଥିବା ସମୟରେ, ବେଆଇନ୍ ଭାବରେ ଅଧିକୃତ ହୋଇଥିବା ଜମିମାନ ଛାଡ଼ି ପ୍ରାୟ ୩୯୮ ଏକର ଜମି ବିଶ୍ୱବିଦ୍ୟାଳୟ କ୍ୟାମ୍ପସ ରୂପେ ରେଜିଷ୍ଟ୍ରି ହୋଇଥିଲା । ତଥାପି ଉତ୍ତରପଟରୁ କେତେକ ଘରୋଇ ବ୍ୟକ୍ତି ବିଶ୍ୱବିଦ୍ୟାଳୟ ଜମି ଅଧିକାର କରୁଥିଲେ । ମୁଁ ଛଅବର୍ଷରୁ ଅଧିକ ସମୟ ସିଣ୍ଡିକେଟ୍‌ର ସଭ୍ୟ ଥିଲି ଏବଂ ତିନିବର୍ଷ କୁଳପତି ଥିଲି । ସେତେବେଳେ ବିଶ୍ୱବିଦ୍ୟାଳୟ ବଜେଟ୍ ଚାରିଭାଗରେ ବିଭକ୍ତ ହେଉଥିଲା । ଶେଷ ଭାଗରେ ପ୍ରସ୍ତାବ ଥାଏ ଯେ ଟଙ୍କା ମିଳିଲେ ଉଲ୍ଲିଖିତ ପ୍ରକଳ୍ପମାନଙ୍କରେ ଖର୍ଚ୍ଚ ହେବ ନଚେତ୍ ନାହିଁ । ସେହି ଭାଗରେ ସବୁ ବର୍ଷ କ୍ୟାମ୍ପସର ପୂର୍ବ, ପଶ୍ଚିମ ଓ ଉତ୍ତର ସୀମାରେ ପାଚିରି କରିବା ପ୍ରସ୍ତାବ ଥାଏ । ମାତ୍ର କେବେହେଲେ ସେଥିପାଇଁ ସମ୍ବଳ ମିଳେ ନାହିଁ ବା ପାଚିରି ହୋଇପାରେ ନାହିଁ । ମୁଁ କୁଳପତି ଥିବା ସମୟରେ ଉତ୍ତରପଟରୁ ହାଉସିଂବୋର୍ଡ଼ ଏବଂ କେତେ ଜଣ ଘରୋଇ ବ୍ୟକ୍ତି ବିଶ୍ୱବିଦ୍ୟାଳୟ ଜମି ନେଇଯାଉଥିବା ଏବଂ ପାଚିରି କରିବା ପାଇଁ ବିଶ୍ୱବିଦ୍ୟାଳୟର ସମ୍ବଳ ନ ଥିବା ଦେଖି ଅତି ବ୍ୟସ୍ତ ହେଲି । ଏନ୍.ଏସ୍.ଏସ୍. ଦାୟିତ୍ୱରେ ଥିବା ଅଧ୍ୟାପକ ରାମକୃଷ୍ଣ ପଣ୍ଡାଙ୍କୁ ଏନ୍.ଏସ୍.ଏସ୍. ଛାତ୍ରମାନଙ୍କ ଦ୍ୱାରା ଆମ କ୍ୟାମ୍ପସର

ଉତ୍ତର ଓ ପୂର୍ବ ସୀମାରେ ନିଅଁ ଖୋଳିଲା ପରି ପଡ଼ି ଖୋଳି ଦେବାକୁ କହିଲି, ଛାତ୍ରମାନେ ପଡ଼ି ଖୋଳିଲାବେଳେ କେତେକ ଘରୋଇ ଲୋକଙ୍କ ହତାର ବାଡ଼ ଉପାଡ଼ିଦେଲେ ଏବଂ ପାଚିରି ଭାଙ୍ଗିଦେଲେ ଏବଂ ହାଉସିଂବୋର୍ଡ଼ ଅଧିକାର କରିଥିବା କେତେକ ଜମିରେ ପଡ଼ି ଖୋଳିଦେଲେ । ସେଥିଯୋଗୁଁ ଗୋଟିଏ ଘରୋଇ ଲୋକ ମୋ ନାମରେ ଥାନାରେ ଏତଲା ଦେଲେ । ପୁଲିସ ଇନିସ୍‌ପେକ୍ଟର ପ୍ରଭୃତି ମୋ ଘରକୁ ଆସିଲେ । ମୁଁ ତାଙ୍କୁ ସମସ୍ତ କଥା ବୁଝାଇଲି । ତାପରେ ସେ ମକଦ୍ଦମା କଣ ହେଲା ମୁଁ ଜାଣି ନାହିଁ । ପରେ ଶୁଣିଲି ଯେ ସେ ଜମି ପୁନର୍ବାର ସେ ଘରୋଇ ବ୍ୟକ୍ତି ଅଧିକାର କରି ନେଇଛନ୍ତି । ବ୍ୟସ୍ତ ହେବା ବ୍ୟତୀତ ମୋର ଅନ୍ୟ କିଛି କରିବାର ଶକ୍ତି ନ ଥିଲା । ହାଉସିଂବୋର୍ଡ଼ ଆମ ଜମିରୁ ଅଳ୍ପ ପରିମାଣ ଦଖଲ କରିଥିଲେ । ମୁଁ ସେତେବେଳର ହାଉସିଂବୋର୍ଡ଼ ସଭାପତି ହୃଦାନନ୍ଦ ମଲ୍ଲିକଙ୍କ ସହିତ କଥାବାର୍ତ୍ତା କରି ସେ ସମସ୍ୟା ସମାଧାନ କରିଥିଲି । ମୋ ଅନୁରୋଧରେ ସେ ହାଉସିଂବୋର୍ଡ ଦ୍ୱାରା ଆମ କ୍ୟାମ୍ପସ୍‌ରେ ବିଶ୍ୱବିଦ୍ୟାଳୟ କର୍ମଚାରୀମାନଙ୍କ ପାଇଁ ୭୪ଟି ବାସଗୃହ ନିର୍ମାଣ କରାଇଥିଲି ଏବଂ ବିଶ୍ୱବିଦ୍ୟାଳୟରୁ କିସ୍ତି କରି ତାଙ୍କ ଋଣ ଟଙ୍କା ପରିଶୋଧ କରିଥିଲି ।

କ୍ୟାମ୍ପସ୍ ଜମିରେ ଆଗରୁ ଅନେକ ବଡ଼ ବଡ଼ ଗଛ ଥିଲା ବୋଲି ଆମେ ଶୁଣିଥିଲୁ କିନ୍ତୁ ଆମେ ଆସିଲାବେଳକୁ କେବଳ ତିନିଗୋଟି ବରଗଛ ବ୍ୟତୀତ ଆଉ କିଛି ବଡ଼ ଗଛ ନ ଥିଲା । ଆଗରୁ ସାବଧାନ ହୋଇଥିଲେ ସୁବିଧାଜନକ ସ୍ଥାନରେ ବହୁତ ବଡ଼ ଗଛ ରହି ଯାଇଥାନ୍ତା । ଆମେ ଆସିବା ପରେ ପରିଡ଼ା କହିବାର ମୁଁ ଶୁଣିଛି ଯେ ଏ କ୍ୟାମ୍ପସର ନାମ ସିନା ବିହାର ଦିଆଯାଇଛି । ଏହା ବାସ୍ତବ କ୍ଷେତ୍ରରେ ଗୋଟିଏ ପ୍ରାନ୍ତର ହୋଇଛି । ତେଣୁ ସେ କ୍ୟାମ୍ପସର ଘରଦ୍ୱାର ଏବଂ ରାସ୍ତା ହୋଇଥିବା ଅଂଶରେ ବିଭିନ୍ନ ପ୍ରକାର ଗଛ ଲଗାଇବାର ବରାଦ କଲେ । ଦୁଇ ତିନି ମାସ ପରେ ପରିଡ଼ାଙ୍କ ସହିତ ଆମେ ସମସ୍ତେ ରାସ୍ତାମାନଙ୍କ କଡ଼ରେ ଦୁଇ ତିନିଗୋଟି ଲେଖାଏଁ ଗଛ ଲଗାଇଥିଲୁ । ଲଗାଇବା ପାଇଁ ବଉଳ, କଞ୍ଚନ, ଗୋଲମୋହର ଏବଂ କୃଷ୍ଣଚୂଡ଼ା ଗଛ ସବୁ ପରିଡ଼ା ବାଛିଥିଲେ । ବର୍ତ୍ତମାନ ଇଉନିଭର୍ସିଟି ଗେଷ୍ଟହାଉସ, ପାଣିଟାଙ୍କି, ଅଡ଼ିଟୋରିଅମ୍ ଏବଂ ହଷ୍ଟେଲ ପ୍ରଭୃତି ଅଞ୍ଚଳରେ ସେ ଗଛରୁ ଅନେକ ବଡ଼ ହୋଇଯାଇଛି । ପରେ ସଦାଶିବବାବୁ କୁଳପତି ଥିବାବେଳେ ପାଣିଟାଙ୍କି ପାଖରେ ବର୍ତ୍ତମାନ ଥିବା ଆମ୍ବ ବଗିଚା ଆରମ୍ଭ ହୋଇଥିଲା । ବଟାନୀ ଅଧ୍ୟାପକ ବିଦ୍ୟାଧର ପାଢ଼ୀ ସେତେବେଳେ ତାହା ଦାୟିତ୍ୱରେ ଥିଲେ । ସେତେବେଳେ ବିଭିନ୍ନ ଉତ୍ସବରେ ମୁଁ ମଧ୍ୟ କେତେଗୋଟି ଆମ୍ବଗଛ ସେଥିରେ ଲଗାଇଥିଲି । କ୍ୟାମ୍ପସର ସାଧାରଣ ସ୍ଥାନମାନଙ୍କରେ ଗଛ ଲଗାଇବା ବ୍ୟତୀତ, କ୍ୟାମ୍ପସ ବାସିନ୍ଦା ଅଧ୍ୟାପକ ଓ ଅନ୍ୟ କର୍ମଚାରୀମାନେ ନିଜ ନିଜର ବାସଗୃହ ହତାରେ ବିଭିନ୍ନ ଗଛ ଲଗାଇଥିଲେ । ମୁଁ ରହିଥିବା ଏ.୭ ଘର ହତାରେ ଆମ୍ବ, ପଣସ, ଜାମୁ, ସପେଟା, ପିଜୁଳି ପ୍ରଭୃତି ପ୍ରାୟ କୋଡ଼ିଏ ପଚିଶ ଗଛ ଲଗାଇଥିଲି ଏବଂ ମୋ ଶୋଇବା ଘର କଡ଼ରେ ଗୋଟିଏ ପିଜୁଳି ବଗିଚା କରିଥିଲି । ମୋର ମନେହେଉଛି ଆଜି ସୁଦ୍ଧା ପ୍ରାୟ ସେହି ଘର ହତାରେ କ୍ୟାମ୍ପସରେ ସବୁଠାରୁ ବେଶୀ

ଗଛ ଅଛି । ସବୁ କର୍ମଚାରୀଙ୍କ ବାସଘର ଆଗରେ ତାର ବାଡ଼ ଘେରାହୋଇ ଗୋଟିଏ ଲେଖାଏଁ ହତା ଅଛି । ଗଛକୁ ଗୋରୁଗାଈଙ୍କ ଠାରୁ ରକ୍ଷା କରିହେବ । ମାତ୍ର କ୍ୟାମ୍ପସର ମାଟି ପଥୁରିଆ, ତାପରେ ମଧ୍ୟ ପାଣିର ଅଭାବ । ସେଥିପାଇଁ କ୍ୟାମ୍ପସରେ ଆଜିଯାଏ ପ୍ରଚୁର ଗଛ ହୋଇ ନାହିଁ, ତାପରେ ଗଛ ଲଗାଇବା ଏବଂ ତାର ଯତ୍ନ କରିବା ବିଭିନ୍ନ ବ୍ୟକ୍ତିଙ୍କ ମନୋଭାବ ଉପରେ ନିର୍ଭର କରେ ।

ବାଣୀବିହାର ଆସିବା ପରେ ପ୍ରଥମ ଛଅ ସାତ ମାସରେ ଆମ୍ଭେମାନେ ଦୈନନ୍ଦିନ ଜୀବନରେ ବହୁ ଅସୁବିଧାର ସମ୍ମୁଖୀନ ହୋଇଥିଲୁ, କାରଣ କ୍ୟାମ୍ପସ ସହରରୁ ଦୂରରେ ଗୋଟିଏ ନୂଆ ଜାଗାରେ ଥିଲା । ସେଠାରେ ଆଗରୁ କେହି ବାସିନ୍ଦା ନ ଥିଲେ କିମ୍ବା ସାଧାରଣ ବାସିନ୍ଦାଙ୍କର ଦୈନନ୍ଦିନ ଚଳିବାର ସୁବିଧା ସବୁ ନ ଥିଲା । ଆମେ ଆସିବାର ପନ୍ଦର କୋଡ଼ିଏ ଦିନ ମଧ୍ୟରେ ଇଉନିଭର୍ସିଟିର ପ୍ରଶାସନିକ ବିଲ୍ଡିଂରେ ଗୋଟିଏ ପୋଷ୍ଟଅଫିସ ଏବଂ ଷ୍ଟେଟ ବ୍ୟାଙ୍କ ଅଫ୍ ଇଣ୍ଡିଆର ଗୋଟିଏ ଶାଖା ଖୋଲିଲା । ସେଥିପାଇଁ ସେ ସବୁ ସଂସ୍ଥା ସହିତ ଆଗରୁ ଲେଖାଲେଖି ହୋଇଥିଲା । ଷ୍ଟେଟବ୍ୟାଙ୍କ ଶାଖାରେ ପ୍ରଥମ ସେଭିଙ୍ଗସ୍ ବ୍ୟାଙ୍କ ଆକାଉଣ୍ଟ ମୁଁ ଖୋଲିଥିଲି । କ୍ୟାମ୍ପସର ଜଳଯୋଗାଣ ନିମିତ୍ତ ଏକ ଲକ୍ଷ ଗାଲନ୍‌ର ଗୋଟିଏ ପାଣିଟାଙ୍କି କ୍ୟାମ୍ପସ ମଝିରେ ତିଆରି ହୋଇଥିଲା । ପଳାଶୁଣିରୁ ପ୍ରଥମେ ବଡ଼ ବଡ଼ ପାଇପ ଲାଇନ ଦ୍ୱାରା କ୍ୟାମ୍ପସକୁ ଜଳ ଯୋଗାଣ ହେଉଥିଲା । ମାତ୍ର ପ୍ରଥମେ କେତେଥର ସେ ପାଇପ ଲାଇନ ମଝିରେ ଫାଟି ଯାଉଥିଲା ଏବଂ ଯେଉଁ ଦିନମାନଙ୍କରେ ପାଇପ ଫାଟି ଯାଉଥିଲା ସେ ଦିନମାନଙ୍କରେ କ୍ୟାମ୍ପସ ଜଳଶୂନ୍ୟ ହୋଇ ଯାଉଥିଲା । କାରଣ ପାଇପ୍ ପାଣି ବ୍ୟତୀତ କ୍ୟାମ୍ପସରେ ବିକଳ୍ପ ଜଳ ସୂତ୍ର ନାହିଁ । କ୍ୟାମ୍ପସରେ ପାଣି ନ ଥିବା ଦିନମାନଙ୍କରେ ରାଜ୍ୟ ସରକାରଙ୍କ ଜନସ୍ୱାସ୍ଥ୍ୟ ବିଭାଗ କ୍ୟାପିଟାଲରୁ ଟାଙ୍କରରେ ପାଣି ଆଣି ପ୍ରତି ଘରେ ଦୁଇ ତିନି ବାଲ୍ଟି କରି ଦେଇ ଯାଉଥିଲେ । ଦିନେ ଏଗାରଟା ପର୍ଯ୍ୟନ୍ତ କୌଣସି ପାଣି ନ ଥିବାରୁ ଇଉନିଭର୍ସିଟି ଅଫିସ ବନ୍ଦ ହୋଇ ଯାଉଥିଲା । ଅଳ୍ପ କେତେ ମାସ ପରେ ପାଣିପାଇପ ଫାଟିବାଟା ବନ୍ଦ ହୋଇ ଯାଇଥିଲା । ମାତ୍ର କ୍ୟାମ୍ପସରେ ପାଣିର ଅଭାବ ଆଜିଯାଏ ସୁଦ୍ଧା ଅଛି । କ୍ୟାମ୍ପସ ଘରମାନଙ୍କୁ ସକାଳ ଓଳି ଘଣ୍ଟାଏ ଖଣ୍ଡେ ଏବଂ ଉପରବେଳା ଅଧଘଣ୍ଟାଏ ଖଣ୍ଡେ ପାଣି ଆସେ । ସେହି ଅଳ୍ପ ସମୟ ମଧ୍ୟରେ ଆବଶ୍ୟକ ପାଣି ରଖିବାକୁ ଘରମାନଙ୍କରେ ପରେ ସିମେଣ୍ଟ କୁଣ୍ଡ ମାନ ତିଆରି ହୋଇଥିଲା । କ୍ରମେ ଆମ୍ଭେମାନେ ଅଳ୍ପ ପାଣିରେ ଚଳିବାର ଅଭ୍ୟସ୍ତ ହୋଇ ଯାଇଥିଲୁ । ଆଜିଯାଏ ସୁଦ୍ଧା ପାଣିର ଅଭାବ କ୍ୟାମ୍ପସ ବାସିନ୍ଦାଙ୍କର ଗୋଟିଏ ପ୍ରଧାନ ସମସ୍ୟା ।

ଆମେ କ୍ୟାମ୍ପସକୁ ଆସିବାବେଳେ କ୍ୟାମ୍ପସ ସହିତ କୌଣସି ବସ୍ ଯୋଗାଯୋଗ ନ ଥିଲା । କ୍ୟାମ୍ପସ ପାଖରୁ ଜାତୀୟ ରାଜପଥରୁ ରାଜମହଲ ଛକ ପର୍ଯ୍ୟନ୍ତ ଯେଉଁ ଜନପଥ ରାସ୍ତା ଯାଇଛି, ସେ ରାସ୍ତା ତିଆରି ହୋଇଥିଲା, ମାତ୍ର ସତ୍ୟନଗର ଶ୍ମଶାନ ପାଖରେ ଯେଉଁ

ପୋଲ ଅଛି ତାହା ତିଆରି ହେଉଥିଲା । ଏ.ଜି. ଅଫିସ ଛକରୁ ଆଚାର୍ଯ୍ୟ ବିହାର ପର୍ଯ୍ୟନ୍ତ ଯେଉଁ ରାଜପଥ ରାସ୍ତା ଯାଇଛି, ସେଥିରେ ରିଜିଓନାଲ୍ କଲେଜ ପାଖରେ ଯେଉଁ ପୋଲ ଅଛି ତାହା ବହୁକାଳ ଯାଏ ତିଆରି ହୋଇ ନ ଥିଲା । ସୁତରାଂ ବାଣୀବିହାରରୁ କ୍ୟାପିଟାଲ ପର୍ଯ୍ୟନ୍ତ ସିଧା କୌଣସି ଗାଡ଼ି ମଟରରେ ଯିବା ସୁବିଧା ନ ଥିଲା । ସହିଦନଗର କିମ୍ବା ନଅ ନମ୍ବର ଇଉନିଟରେ କିଛି ଘର ନ ଥିଲା । ରିଜିଓନାଲ୍ କଲେଜ ମଧ ନ ଥିଲା । କଟକରୁ ଭୁବନେଶ୍ୱର ଯିବାଆସିବା କରୁଥିବା ବସ୍ ସବୁ ରସୁଲଗଡ଼ ଓ କଳ୍ପନା ଛକ ଦେଇ ଯିବା ଆସିବା କରୁଥିଲା । ଆମେ ଦୁଇ ତିନିମାସ କଟକରୁ ବାଣୀବିହାର ଆସିବାପାଇଁ ରସୁଲଗଡ଼ରେ ବସ୍‌ରୁ ଓହ୍ଲାଇ ଜାତୀୟ ରାଜପଥରେ ଦେଢ଼ମାଇଲ ବାଟ ପାଦରେ ଚାଲି ଚାଲି ଆସୁଥିଲୁ । ଜିନିଷ ପତ୍ର ଆଣିବାର ମଧ କୌଣସି ସୁବିଧା ନ ଥିଲା । କ୍ୟାମ୍ପସରେ ରିକ୍ସା ପ୍ରଭୃତି କୌଣସି ଯାନବାହାନ ନ ଥିଲା । ଏ ଅସୁବିଧା ଆମକୁ ସବୁଠାରୁ କଷ୍ଟକର ହେଉଥିଲା, କାରଣ ପାଖରେ କୌଣସି ବଜାର ନ ଥିବାରୁ ଆମ୍ଭେମାନେ ଦୈନନ୍ଦିନ ଦରକାରୀ ପଦାର୍ଥ କଟକରୁ କିଣିବାକୁ ବାଧ ହେଉଥିଲୁ । ମାତ୍ର ରସୁଲଗଡ଼ଠାରୁ କ୍ୟାମ୍ପସ ପର୍ଯ୍ୟନ୍ତ ବସ୍ ନ ଥିବାରୁ ଆମେ ବେଶି ଜିନିଷ ଆଣି ପାରୁ ନ ଥିଲୁ । ଯେଉଁ ଅଳ୍ପ ଜିନିଷ ଆଣୁଥିଲୁ ତାକୁ ନିଜେ ବୋହିକରି ଆଣିବାକୁ ପଡୁଥିଲା । ଦୁଇ ତିନି ମାସ ପରେ ଜନପଥ ରାସ୍ତାରେ ସତ୍ୟନଗର ପୋଲ ହୋଇଗଲା ଏବଂ ଆମ୍ଭମାନଙ୍କର ଆପତ୍ତି ଯୋଗୁଁ କଟକ ଭୁବନେଶ୍ୱରର ସମସ୍ତ ବସ୍ କ୍ୟାମ୍ପସ୍‌ର ପାଣିଟାଙ୍କି ବାଟେ ଯାଉଥିଲା । ଏ ବ୍ୟବସ୍ଥା ବହୁ ବର୍ଷ ପର୍ଯ୍ୟନ୍ତ ଚାଲୁଥିଲା । ମାତ୍ର ଆମ୍ଭମାନଙ୍କର ଏ ସୁବିଧାଜନକ ବ୍ୟବସ୍ଥାରେ ବାଣୀବିହାର ଛାତ୍ରମାନେ କାଳ ହେଲେ । ସେମାନେ ଅନେକଥର ବସ୍ କର୍ମଚାରୀମାନଙ୍କ ସହିତ କଳିକଜିଆ ଏବଂ ମାଡ଼ପିଟ୍ କରି ଅନେକ ସରକାରୀ ବସ୍ ବାଣୀବିହାରରେ ଅଟକାଇ ଦେଉଥିଲେ । ଆମ୍ଭେମାନେ ବହୁ ଥର ବସ୍ କର୍ତ୍ତୃପକ୍ଷଙ୍କ ସହିତ କଥାବାର୍ତ୍ତା ଏବଂ ମିଳାମିଶା କରୁଥିଲୁ । ଶେଷରେ ବସ୍ କର୍ତ୍ତୃପକ୍ଷ ସ୍ଥିର କଲେ ଯେ ବସ୍ ସବୁ କ୍ୟାମ୍ପସ ପାଖରେ ଜାତୀୟ ରାଜପଥରେ ଯିବାଆସିବା କରିବ ଏବଂ ଟାଉନବସମାନଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ କ୍ୟାମ୍ପସ ଭିତରକୁ ଯିବ ନାହିଁ । ଏ ବ୍ୟବସ୍ଥା ଦୃଢ଼ ହେବାକୁ ପ୍ରାୟ ଦଶ ବାର ବର୍ଷ ଲାଗି ଯାଇଥିଲା ।

କ୍ୟାମ୍ପସ ବାସିନ୍ଦାମାନଙ୍କର ପିଲାମାନେ ପଢ଼ିବାପାଇଁ ପ୍ରଥମେ କିଛି ସୁବିଧା ନ ଥିଲା । ଆମ୍ଭେମାନେ ଆସିବା ପରେ ଗୋଟିଏ ପ୍ରାଇମେରୀ ସ୍କୁଲ ଏବଂ ମାଇନର ସ୍କୁଲ ଆରମ୍ଭ ହେଲା । ସେଥିପାଇଁ ପ୍ରଥମେ ପ୍ରଫେସର ଓ ରିଡରମାନଙ୍କ ରହିବା ଘରରୁ ତିନିଗୋଟି ଛାଡ଼ି ଦିଆଯାଇଥିଲା । ସ୍କୁଲ ପରିଚାଳନା ନିମିତ୍ତ ଗୋଟିଏ ମାନେଜିଂ କମିଟି ଗଢ଼ା ହୋଇଥିଲା । ପରିଜା ମୋତେ ସେ ମାନେଜିଂ କମିଟିର ଚେୟାରମାନ ରୂପେ ନିଯୁକ୍ତ କରିଥିଲେ । ପରେ ଆମ୍ଭମାନଙ୍କ ଯତ୍ନରେ ସେ ସ୍କୁଲ ଗୋଟିଏ ହାଇସ୍କୁଲ ହେଲା ଏବଂ ସଦାଶିବବାବୁ କୁଳପତି ଥିବାବେଳେ ପ୍ରାଇମେରୀ ସ୍କୁଲ ପାଇଁ ପାଣିଟାଙ୍କି ପାଖରେ

ଗୋଟିଏ ସ୍ୱତନ୍ତ୍ର ସ୍କୁଲ ଗୃହ ହୋଇଥିଲା । ପରେ ମୁଁ କୁଳପତି ଥିବା ସମୟରେ ସବୁ ସ୍କୁଲକୁ ସେହି ଘରକୁ ଉଠାଇ ଆଣିଥିଲି ଏବଂ ଆଉ ଅଧିକ କୋଠରି ନିର୍ମାଣ କରାଇଥିଲି । ମୋ ପରେ ମଧ ସେ ସ୍କୁଲ ଘରର ଉପରମହଲା ତିଆରି ହୋଇଛି ଏବଂ ବାଣୀବିହାର ହାଇସ୍କୁଲ ଓଡ଼ିଶା ରାଜ୍ୟର ବର୍ତ୍ତମାନ ଗୋଟିଏ ପ୍ରଧାନ ହାଇସ୍କୁଲ । ମୁଁ ସେ ସ୍କୁଲର ମାନେଜିଂ କମିଟିରେ ବହୁ ବର୍ଷ ଚେୟାରମ୍ୟାନ୍ ଥିଲି । ପ୍ରଥମେ ହାଇସ୍କୁଲ ହେବା ପୂର୍ବରୁ କେତେ ବର୍ଷ କ୍ୟାମ୍ପସ ବାସିନ୍ଦାଙ୍କ ହାଇସ୍କୁଲରେ ପଢ଼ିବା ପିଲାମାନେ ଇଉନିଭର୍ସିଟି ଗାଡ଼ିରେ କ୍ୟାପିଟାଲର ହାଇସ୍କୁଲମାନଙ୍କୁ ଯାଉଥିଲେ ଏବଂ ଅଭିଭାବକମାନେ ମାସକୁ ଅତି ଅଳ୍ପ ଭଡ଼ା ଦେଉଥିଲେ ।

କ୍ୟାମ୍ପସ ବାସିନ୍ଦାଙ୍କ ଚାଉଳ, ଡାଲି, ପରିବା ପ୍ରଭୃତି ଦୈନନ୍ଦିନ ଆବଶ୍ୟକ ପଦାର୍ଥ କିଣିବା ପାଇଁ କ୍ୟାମ୍ପସ ଯୋଜନାକାରୀମାନେ ବର୍ତ୍ତମାନର ପ୍ରେସ ହତାରେ ଗୋଟିଏ ଆଜବେଷ୍ଟସ ଛାତ ଥିବା ଘର କରିଥିଲେ । ତହିଁରେ ବିଭିନ୍ନ ସେଡ୍ ପାଇଁ ଅଧା କାନ୍ଥମାନ ଦିଆଯାଇଥିଲା । ସେଥିରେ ବିଭିନ୍ନ ଦୋକାନସବୁ ହେବାର ବରାଦ ଥିଲା । ସେ ଘରଟା ଆଜିଯାଏ ଅଛି ଏବଂ ପ୍ରେସର କାର୍ଯ୍ୟରେ ଲାଗୁଛି । ଆମ୍ଭେମାନେ ପ୍ରଥମେ ଆପତ୍ତି କଲୁ ଯେ, ସେ ସ୍ଥାନଟା ରହିବା ଘରମାନଙ୍କ ଠାରୁ ଦୂର ହୋଇ ଯାଉଛି । ଦୋକାନବଜାର ପାଇଁ ପାଣି ଟାଙ୍କି ପାଖ ସ୍ଥାନ ସବୁଠାରୁ ସୁବିଧାଜନକ ମାତ୍ର ପରିଜା ଆମ କଥାକୁ ନାପସନ୍ଦ କଲେ । ସେ କହିଲେ "ମୁଁ ଦେଖିଛି ବନାରସ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ଅଧ୍ୟାପକ ଓ ଅନ୍ୟ କର୍ମଚାରୀମାନେ ବ୍ୟାଗ ଧରି ଦୂରରେ ଥିବା ଦୋକାନରୁ ଜିନିଷପତ୍ର ଆଣନ୍ତି । ଆମ ଲୋକମାନେ ସେପରି କାହିଁକି କରିପାରିବେ ନାହିଁ ?" ବାସ୍ତବ କ୍ଷେତ୍ରରେ ସେ ଦୋକାନ ସ୍ଥାନରେ କେହି ଦୋକାନୀ ଦୋକାନ କରିବାକୁ କିମ୍ବା ପରିବା ଦୋକାନୀ ପରିବା ବିକିବାକୁ ଆସିଲେ ନାହିଁ । ଶେଷରେ ସେ ଘରେ ପ୍ରେସ୍ ହେଲା ।

ଜିନିଷପତ୍ର ବିକ୍ରି ଖର୍ଦ୍ଦି ପାଇଁ କ୍ୟାମ୍ପସ୍‌ରେ ବିଭିନ୍ନ ସ୍ଥାନରେ ଲୋକମାନେ କାଠ କାବିନ୍ ମାନ ପକାଇଲେ ଏବଂ କ୍ୟାମ୍ପସ୍ ବାସିନ୍ଦାମାନେ ସେମାନଙ୍କଠାରୁ ଚାଉଳ, ଡାଲି, ତେଲ ଲୁଣ ଠାରୁ ଆରମ୍ଭ କରି ସେମାନଙ୍କର ସମସ୍ତ ଆବଶ୍ୟକ ପଦାର୍ଥ କିଣିଲେ । ଚାହା ଜଳଖିଆ ଏବଂ ପାନ ସିଗାରେଟ ପାଇଁ ମଧ ଅନେକ କାବିନ ପଡ଼ିଲା । ଅଧିକାଂଶ କାବିନ୍ ପାଣିଟାଙ୍କି ପାଖରେ ପଡ଼ିଲା ଏବଂ ଆଉ ଅନେକ ହଷ୍ଟେଲ, ଲାଇବ୍ରେରୀ ଏବଂ ଅଫିସ ପାଖରେ ମଧ ପଡ଼ିଲା । ସେଗୁଡ଼ିକ ବ୍ୟତୀତ ଜାତୀୟ ରାଜପଥ ଆର ପାଖରେ ମଧ ଗୋଟିଏ ଚାଳ ଘରର ବଜାର ହୋଇଗଲା । ସେଠାରେ ସବୁ ପ୍ରକାର ଜିନିଷ କିଣାବିକା ହେଉଥିଲା । କ୍ୟାମ୍ପସରେ ଛତୁ ଫୁଟିଲା ପରି କାବିନ୍ ପକାଇବା ଏବଂ କ୍ୟାମ୍ପସ ବାହାରେ ଜାତୀୟ ରାଜପଥ କଡ଼ରେ ଚାଳ ଘର ବଜାର ହେତୁ ପରିବେଶ ଅତି ଅସୁନ୍ଦର ହେଲା । ୧୯୬୩ ମସିହା ଜାନୁଆରୀ ମାସରେ ଯେତେବେଳେ ଭାରତର ରାଷ୍ଟ୍ରପତି ରାଧାକ୍ରିଷ୍ଣନ୍ କ୍ୟାମ୍ପସ ଉଦ୍‌ଘାଟନ କରିବାକୁ ଆସିଲେ, ଓଡ଼ିଶା ସରକାର ସେ ଚାଳ ଘର ବଜାରକୁ

ଉଠାଇ ଦେବାକୁ ନୋଟିସ ଦେଲେ । ବୀରେନ୍ ମିତ୍ର ସେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ । ଚାଳଘର ଦୋକାନୀମାନେ ତାଙ୍କ ପାଖରେ ଆପତ୍ତି କରିବାରୁ ସେ ଦୋକାନୀମାନଙ୍କୁ ରାଜପଥ କଡ଼ରୁ ଦୁଇଶହ ଫୁଟ ଦୂରକୁ ଦୋକାନମାନ ଉଠାଇନେବାକୁ ଆଦେଶ ଦେଲେ । ଦୋକାନୀମାନେ ତାଙ୍କ ଆଦେଶ ମାନିଲେ । କିନ୍ତୁ ସେଠାରେ ସେମାନଙ୍କର ଦୋକାନ ସବୁ ଭଲ ଚାଲିଲା ନାହିଁ ଏବଂ ଅବଶେଷରେ ସେଠାରେ ଦୋକାନ ପତ୍ର ରହିଲା ନାହିଁ । ତାପରେ ସରକାର କ୍ୟାମ୍ପସ ଆଗରେ ଯେଉଁ ଘରଟାରେ ବର୍ତ୍ତମାନ ସହିଦ ନଗର ଥାନା ହୋଇଛି, ସେହି ଘରେ କେତେକ ଦୋକାନ କରାଇବାକୁ ଯତ୍ନ କରିଥିଲେ, ବାସ୍ତବ କ୍ଷେତ୍ରରେ ସେଠାରେ ଦୁଇ ତିନିଟା ଚାଉଳ ଡାଲି ଦୋକାନ ହୋଇଥିଲା । ମାତ୍ର ଭଲ ନ ଚଳିବାରୁ ସେ ଦୋକାନସବୁ ବନ୍ଦ ହୋଇଗଲା । ଶେଷରେ ସେ ଘରେ ଥାନା ହେଲା । ସେତେବେଳକୁ ଇଲେକ୍ଟ୍ରିସିଟି ବୋର୍ଡ଼ ଅଫିସ ଆଗରେ ସହିଦନଗରରେ କେତେକ ସ୍ଥାୟୀ ଦୋକାନ ହୋଇଥିଲା । ସହିଦନଗର ହାଟ ସେତେବେଳକୁ ହୋଇ ନ ଥାଏ । ବାଣୀବିହାର ବାସିନ୍ଦାମାନେ ସେ ବୋର୍ଡ଼ ଅଫିସ ପାଖ ଦୋକାନ ଓ କ୍ୟାମ୍ପସର କାଠଘରମାନଙ୍କରୁ ସଉଦାପତ୍ର କିଣି ଚଳୁଥିଲେ ଏବଂ ପରିବାପତ୍ର ପାଇଁ କାପିଟାଲ୍‌ର ଏକ ନମ୍ବର ହାଟ ଉପରେ ନିର୍ଭର କରୁଥିଲେ ।

୧୯୬୬ ମସିହାଠାରୁ ୧୯୭୧ ମସିହା ପର୍ଯ୍ୟନ୍ତ ସଦାଶିବବାବୁ ଭାଇସ୍ ଚାନସେଲର ଥିବା ମଧ୍ୟରେ ପାଣିଟାଙ୍କି ପାଖରେ ପାଞ୍ଚ ଛଅଗୋଟି କୋଠରି ବିଶିଷ୍ଟ ଗୋଟିଏ ମାର୍କେଟ୍ କମ୍ପ୍ଲେକ୍ସ ହୋଇଥିଲା । ସେଥିରେ ମଧ୍ୟ ସବୁ ରୁମ୍‌ରେ ଦୋକାନ ହୋଇ ନ ଥିଲା, କାରଣ କାଠଘର ଦୋକାନୀମାନେ ମାଗଣାରେ କାଠଘରେ ଦୋକାନ କରିଥିବାରୁ ସେ ଦୋକାନ ଘରକୁ ଯିବାକୁ ରାଜି ହେଉ ନ ଥିଲେ । କେତେ ବର୍ଷ ପରେ ଆମ୍ଭେମାନେ ଗୋଟିଏ ସମବାୟ ଷ୍ଟୋର କରିଥିଲୁ । ସେ ଷ୍ଟୋରର ମୁଁ ବହୁବର୍ଷ ସଭାପତି ଥିଲି । ସେ ଷ୍ଟୋର ପ୍ରଥମେ ଗୋଟିଏ ଲେକ୍‌ଚରରଙ୍କ ରହିବା ଘରେ ହୋଇଥିଲା । ପରେ ସେ ମାର୍କେଟ କମ୍ପ୍ଲେକ୍ସର ଦୁଇଗୋଟି ରୁମକୁ ଉଠି ଆସିଥିଲା । ସେଥିରେ ସବୁ ପ୍ରକାର କଣ୍ଟ୍ରୋଲ ଜିନିଷ ଯୋଗାଇ ଦିଆ ଯାଉଥିଲା ।

ଏ ସବୁ ସତ୍ତ୍ୱେ ଚାହା, ଜଳଖିଆ, ପାନ ପ୍ରଭୃତି ସବୁ ପ୍ରକାର ଜିନିଷ ବିକ୍ରି ପାଇଁ କ୍ୟାମ୍ପସରେ ବହୁତ କାଠ କାବିନ୍ ଜମା ହୋଇ ଯାଇଥିଲା । ୧୯୭୫ ମସିହାରେ ଜ୍ଞାନଚାନ୍ଦ ପ୍ରଶାସକ ଥିବାବେଳେ ସେ ଏବଂ ରେଜିଷ୍ଟ୍ରାର ଶ୍ରୀନିବାସ ସାହୁ କାବିନ ସବୁ ଏଣେତେଣେ ନ ପକାଇ ପାଣିଟାଙ୍କି ପାଖରେ ଗୋଟିଏ ସ୍ଥାନରେ ଦୁଇଧାଡ଼ିରେ ପକାଇବାକୁ ଅନୁମତି ଦେଇଥିଲେ । କାବିନ୍ ସବୁ କ୍ୟାମ୍ପସ ବାସିନ୍ଦାଙ୍କର ଆବଶ୍ୟକ ପଦାର୍ଥ ଯୋଗାଉଥିବାରୁ ତାଙ୍କୁ ବଳପୂର୍ବକ ଉଠାଇ ଦେବାକୁ କେହି ରାଜି ହେଉ ନ ଥିଲେ । ମାତ୍ର ପାଣିଟାଙ୍କି ପାଖ ପରିବେଶ ଅତି ଅସ୍ୱାସ୍ଥ୍ୟକର ଓ ଅସୁନ୍ଦର ହୋଇଥିଲା । ଓଡ଼ିଶା

ବାହାରୁ ଆସୁଥିବା ଅନେକ ଅଧ୍ୟାପକ ଓ ଅନ୍ୟ ଲୋକ ତାହାର ସମାଲୋଚନା କରୁଥିଲେ ।

ମୁଁ ଭାଇସ୍ ଚାନ୍‌ସେଲର ଥିବାବେଳେ ମାର୍କେଟ କମ୍ପ୍ଲେକ୍ସର ସବୁ ରୁମ୍ ମନୋନୀତ ଦୋକାନୀମାନଙ୍କୁ ଦେଇଥିଲି ଏବଂ ଅନ୍ୟ କାବିନ ଦୋକାନୀମାନଙ୍କୁ ପଶ୍ଚିମ ପାଖରେ କ୍ୟାମ୍ପସ୍ ଶେଷ ମହାଦେବ ମନ୍ଦିର ପାଖ ସ୍ଥାନକୁ ଉଠିଯିବାକୁ ବୁଝାଇଥିଲି । ସେଥିପାଇଁ ମଧ୍ୟ କାବିନ୍ ଦୋକାନୀଙ୍କୁ ନୋଟିସ ଦିଆହୋଇଥିଲା । ମାତ୍ର ସେମାନେ ନୂଆ ଜାଗାକୁ ଯିବାକୁ ଟାଳଟୁଳ କରୁଥିଲେ । ଏହି ସମୟରେ ଦିନେ କ୍ୟାମ୍ପସ୍ ପିଲାମାନଙ୍କ ମଧ୍ୟରେ ଭୀଷଣ ଗଣ୍ଡଗୋଳ ହେଲା ଏବଂ କେତେକ ପିଲା ପାଣି ଟାଙ୍କି ପାଖରେ ଥିବା କେତେକ କ୍ୟାବିନ୍‌ରେ ନିଆଁ ଲଗାଇ ପୋଡ଼ିଦେଲେ । ତାହା ପରେ ବହୁ କ୍ୟାବିନ୍ ଦୋକାନୀ ମହାଦେବ ମନ୍ଦିର ପାଖରେ ନିର୍ଦ୍ଦିଷ୍ଟ ହୋଇଥିବା ସ୍ଥାନରେ ଦୋକାନ ଆରମ୍ଭ କରିଥିଲେ ଏବଂ ପାଣିଟାଙ୍କି ପାଖରୁ ସେ କ୍ୟାବିନ୍‌ଗୁଡ଼ାକ ଅପସାରିତ ହୋଇ ଯାଇଥିଲା ।

ବିଗତ ତିରିଶ ବର୍ଷ ମଧ୍ୟରେ ଭୁବନେଶ୍ୱରରେ ଜନବସତି, ରାସ୍ତା, ଦୋକାନ ବଜାର ପ୍ରଭୃତି ବହୁଗୁଣରେ ବଢ଼ିଯାଇଛି । ପ୍ରଥମେ ଆମେ ଲୁଗାପଟା ଠାରୁ ଆରମ୍ଭ କରି ସାମାନ୍ୟ ବୋତାମ ଓ ଛୁଞ୍ଚି ସୂତା ପାଇଁ ମଧ୍ୟ କଟକ ବଜାର ଉପରେ ନିର୍ଭର କରୁଥିଲୁ । ବର୍ତ୍ତମାନ କ୍ୟାମ୍ପସ୍ ପାଖ ସହିଦନଗରର ହାଟ, ବଜାର ଓ ଦୋକାନମାନଙ୍କରେ ସବୁ ପ୍ରକାର ଜିନିଷ କିଣିବାକୁ ମିଳୁଛି । ତାହା ବ୍ୟତୀତ ଆଚାର୍ଯ୍ୟବିହାରରେ ବଜାର ଏବଂ ସୁରେନ୍ଦ୍ର ସାଏ ନଗରରେ ହାଟ ହୋଇଛି । କୌଣସି ପଦାର୍ଥ ପାଇଁ ଭୁବନେଶ୍ୱର କିମ୍ବା କ୍ୟାମ୍ପସ ବାସିନ୍ଦା କଟକ ଉପରେ ନିର୍ଭର କରୁ ନାହାନ୍ତି । ତଥାପି ମୁଁ ଦେଖୁଛି ବାଣୀବିହାରରେ ମହାଦେବ ମନ୍ଦିର ପାଖରେ କ୍ୟାବିନ୍‌ମାନଙ୍କ ବ୍ୟତୀତ ଛାତ୍ରମାନଙ୍କର ହଷ୍ଟେଲମାନଙ୍କ ଆଗରେ ବହୁ କ୍ୟାବିନ୍ ଓ ଚାଳଘର କାମ କରୁଛି ଏବଂ ଛାତ୍ରମାନେ ଚାହା ଜଳଖିଆଠାରୁ ଆରମ୍ଭ କରି ଧୋବା ଭଣ୍ଡାରି ସେବା ପାଇଁ ସେଗୁଡ଼ିକ ଉପରେ ନିର୍ଭର କରୁଛନ୍ତି । ସେହି କ୍ୟାବିନ୍ ଏବଂ ଚାଳଘରଗୁଡ଼ିକର ପରିବେଶ ଅସ୍ୱାସ୍ଥ୍ୟକର କରିବା ବ୍ୟତୀତ ସମସ୍ତ କ୍ୟାମ୍ପସକୁ ଆବର୍ଜନାମୟ ଏବଂ ଅସୁନ୍ଦର କରୁଛନ୍ତି । ଇଂଲାଣ୍ଡ ଓ ଆମେରିକାର ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ମାନଙ୍କରେ ଏପରି ପରିସ୍ଥିତି ଦେଖିବାକୁ ମିଳେ ନାହିଁ । ବିଶ୍ୱବିଦ୍ୟାଳୟର ତଦାରଖ ଅଭାବ ଏବଂ କର୍ତ୍ତୃପକ୍ଷଙ୍କ କୋହଳ ମନୋଭାବ ହେତୁ ଏହା ଘଟୁଛି । ମୋର ମନେହେଉଛି ଆମ ଦେଶର ଆର୍ଥିକ ଏବଂ ସାମାଜିକ ପରିସ୍ଥିତି ହେତୁ ସହର ସଭ୍ୟତା, କ୍ୟାବିନ୍ ଏବଂ ହକର ବା ବୁଲାବିକାଳି ସଭ୍ୟତାରେ ପରିଣତ ହେଉଛି । ହଜାର ହଜାର ବେକାର ଲୋକ ଗାଁମାନଙ୍କରୁ କର୍ମସଂସ୍ଥାନ ପାଇଁ ସହରମାନଙ୍କୁ ଆସୁଛନ୍ତି । କର୍ମସଂସ୍ଥାନ ପାଇଁ ସେମାନେ ଅସ୍ଥାୟୀ କାଠ କ୍ୟାବିନ୍ ବା ଚାଳଘର ଖଣ୍ଡିଏ କରି, ଲୋକମାନଙ୍କର ଦୈନନ୍ଦିନ ଆବଶ୍ୟକ ପଦାର୍ଥ ବିକ୍ରି କରୁଛନ୍ତି କିମ୍ବା ଧୋବା ଭଣ୍ଡାରି ସେବା ଯୋଗାଇ ଦେଉଛନ୍ତି । କିଣୁଥିବା ଲୋକମାନେ ମଧ୍ୟ ଘର ପାଖରେ ଦରକାରୀ ଜିନିଷ ପାଇଲେ ବହୁ ପରିଶ୍ରମରୁ ରକ୍ଷା

ପାଉଛନ୍ତି । ଜନବହୁଳତା ଏବଂ ପୁଞ୍ଜି ଅଭାବରେ ଏପରି ପରସ୍ଥିତି ଉପୁଜେ । ଛାତ୍ରାବାସର ପିଲାମାନେ ହଷ୍ଟେଲ ଆଗରେ ଥିବା କାଠ କ୍ୟାବିନ ବା ଚାଳଘର ଉଠାଇ ଦେବାକୁ ସବୁବେଳେ ବିରୋଧ କରନ୍ତି । କାରଣ ସେଗୁଡ଼ିକ ଦ୍ୱାରା ସେମାନେ ସବୁ ପ୍ରକାର ସେବା ନିଜ ହାତ ପାଖରେ ପାଉଛନ୍ତି । ତେଣୁ ରକ୍ତବୀର୍ଯ୍ୟ ପରି କାଠ କ୍ୟାବିନ୍‌କୁ ଗୋଟାଏ ଜାଗାରୁ ଉଠାଇ ଦେଲେ ତାହା ଅନ୍ୟ ଜାଗାରେ ଫୁଟି ବାହାରୁଛି । ସେ ଦୁଃସ୍ଥିତିରୁ ନିସ୍ତାର ନାହିଁ ।

କ୍ୟାମ୍ପସରେ ପ୍ରଥମେ ଚଳିବାର ଅସୁବିଧା ସତ୍ତ୍ୱେ ଆମେ ସମସ୍ତେ କଟକରୁ ବାଣୀବିହାର ଆସିବାରେ ଅତି ଖୁସି ହୋଇଥିଲୁ । କଟକର ଗଳିକନ୍ଦିରୁ ଆସି ଭୁବନେଶ୍ୱରର ଉପକଣ୍ଠରେ ଖୋଲାପଡ଼ିଆ ଓ ପବନରେ ରହିବାକୁ ଆମକୁ ଆନନ୍ଦଦାୟକ ଥିଲା । ମୋତେ ସମ୍ବଲପୁରଠାରେ, ବୁଢ଼ାରାଜାଠାରେ ରହିବାକୁ ଯେପରି ଖୁସି ଲାଗୁଥିଲା, କଟକ ଛାଡ଼ି ବାଣୀବିହାରରେ ରହିବାକୁ ସେହିପରି ଖୁସି ଲାଗୁଥିଲା । ଖଣ୍ଡଗିରିଠାରୁ କୁଆଖାଇ ଏବଂ କଟକ ପୁରୀ ରାସ୍ତାଠାରୁ ଚନ୍ଦକା ଜଙ୍ଗଲ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଜନବସତିହୀନ ମୁକ୍ତ ବାୟୁମଣ୍ଡଳ ଆମକୁ ଅତି ସୁଖକର ଲାଗୁଥିଲା । ସେ ନୂତନ ପରିବେଶର ଅଭିଜ୍ଞତା ଲାଭ ପାଇଁ ମୁଁ ଏବଂ ପ୍ରଫେସର ସାଧୁଚରଣ ଦାସ ଦୁଇଟି ସାଇକେଲ ଧରି କ୍ୟାମ୍ପସ୍‌ର ବାହାରେ ଥିବା ଗାଡ଼କଣ, ପଟିଆ ଓ ତମଣା ପ୍ରଭୃତି ଗାଁ ଏବଂ କୁଆଖାଇ ନଈ ଆରପାଖ ବାଲିଅନ୍ତା, ନହରକଣ୍ଟା ପ୍ରଭୃତି ଗାଁମାନ ଦିନ ଚାରିଟା ପରେ ବୁଲି ଦେଖୁଥିଲୁ । ଦକ୍ଷିଣରେ ବସରେ ଯାଇ ଶିଶୁପାଳଗଡ଼, ଖଣ୍ଡଗିରି, ଲିଙ୍ଗରାଜ, ରାଜାରାଣୀ ଓ କେଦାରଗୌରୀ ପ୍ରଭୃତି ମନ୍ଦିର ଦେଖୁଥିଲୁ । ଆମକୁ ସବୁ ନୂଆ ଓ ରୋମାଞ୍ଚକର ମନେ ହେଉଥିଲା । ବସ୍ତୁତଃ କ୍ୟାମ୍ପସ୍‌ରେ ରହିବା ସମୟରେ ବହୁବର୍ଷ ଆମେ ପ୍ରତିଦିନ ସନ୍ଧ୍ୟାବେଳେ କ୍ୟାମ୍ପସ୍ ବାହାରେ ଚାରି, ପାଞ୍ଚ କିଲୋମିଟର ଦୂର ଅଞ୍ଚଳ ବୁଲି ଦେଖୁଥିଲୁ । ସେତେବେଳେ ସେ ଅଞ୍ଚଳମାନଙ୍କରେ କୌଣସି ଜନବସତି ବା ଅନୁଷ୍ଠାନ ନ ଥିଲା କିମ୍ୱା ଯାନବାହାନର ଗହଳି ନ ଥିଲା । ନୂଆ ଘର, ନୂଆ ପରିବେଶ ଏବଂ ଜନବସତିହୀନ ଖୋଲା ପଡ଼ିଆ ପ୍ରଭୃତି ସବୁକଥା ଆମକୁ ରୋମାଞ୍ଚକର ଲାଗୁଥିଲା । ପରେ ସହର ବଢ଼ିଗଲା, ବିଭିନ୍ନ ଅନୁଷ୍ଠାନ ହୋଇଗଲା, ଚାରିଆଡ଼େ ଦୋକାନ ବଜାର ଓ ଜନବସତି ହୋଇଗଲା । ସେ ସବୁ ଆମର ଦେହସୁହା ହୋଇଗଲା । ଆମେ ସାଧାରଣତଃ ଭୁବନେଶ୍ୱର ସହରବାସୀ ହୋଇ ଚଳିଲୁ ।

ବାଣୀବିହାରରେ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟର ସ୍ଥାନ ନିରୂପଣ, କ୍ୟାମ୍ପସ ପରିସରରେ ରାସ୍ତା ଓ ବିଭିନ୍ନ କିସମର ଗୃହନିର୍ମାଣର ନକ୍ସା ପ୍ରସ୍ତୁତି ଓ ଗୃହ ନିର୍ମାଣ ଏବଂ ସେଠାରେ ବିଶ୍ୱବିଦ୍ୟାଳୟ କର୍ମଚାରୀମାନଙ୍କର ଥଇଥାନ ଏବଂ ବିଶ୍ୱବିଦ୍ୟାଳୟର ଶିକ୍ଷାଦାନ ଏବଂ ପ୍ରଶାସନ କାର୍ଯ୍ୟ ପ୍ରଚଳନରେ ପରିଜାଙ୍କର ଅବଦାନ ସବୁଠାରୁ ଅଧିକ । ନିର୍ମାଣ କାର୍ଯ୍ୟ ଓ ବିଶ୍ୱବିଦ୍ୟାଳୟ ପରିଚାଳନା ଓ ଶିକ୍ଷାଦାନ କାମ ତତ୍ପର କରିବାପାଇଁ ପରିଜା ୧୯୬୨

ମସିହା ଜୁଲାଇ ମାସରେ ସସ୍ତ୍ରୀକ କ୍ୟାମ୍ପସ୍‌ରେ ରହିବାକୁ ଆସିଲେ ଏବଂ ପ୍ରଥମ ଅବସ୍ଥାରେ ଚଳିବାର ସୁବିଧା ଓ ଅସୁବିଧା ନିଜେ ଅନୁଭବ କଲେ । ସେ ବିଭିନ୍ନ ଶ୍ରେଣୀର ବିଶ୍ୱବିଦ୍ୟାଳୟର କର୍ମଚାରୀମାନଙ୍କର ଆପତ୍ତି ଅଭିଯୋଗ ଓ ପରାମର୍ଶ ଶୁଣି କାର୍ଯ୍ୟାନୁଷ୍ଠାନ କରିବାକୁ ଯତ୍ନ କରୁଥିଲେ । କ୍ୟାମ୍ପସର ଘରମାନଙ୍କରେ କର୍ମଚାରୀମାନେ ରହିଲେ, ପିଲାମାନେ ଛାତ୍ରାବାସରେ ରହିଲେ ଏବଂ ସ୍ନାତକୋତ୍ତର ବିଭାଗମାନଙ୍କରେ ଶିକ୍ଷାଦାନ ଚାଲିଲା, କ୍ୟାମ୍ପସ୍‌ରେ ସ୍କୁଲ, ଡାକ୍ତରଖାନା, ବ୍ୟାଙ୍କ୍, ପୋଷ୍ଟଅଫିସ, ଅସ୍ଥାୟୀ କ୍ୟାଣ୍ଟିନ୍ ପ୍ରଭୃତି ଚାଲିଲା ଏବଂ କ୍ୟାମ୍ପସ ବାଟ ଦେଇ କଟକ ଓ ଭୁବନେଶ୍ୱରକୁ ସରକାରୀ ବସ ଯିବା ଆସିବା କଲା । କ୍ୟାମ୍ପସବାସୀଙ୍କ ମଧ୍ୟରେ ଗୋଷ୍ଠୀ ଜୀବନ ଏବଂ ସାମାଜିକ ସମ୍ପର୍କ ଆପେ ଆପେ ପ୍ରତିଷ୍ଠିତ ହେଲା । କ୍ୟାମ୍ପସ୍‌ରେ ଗୋଟିଏ ମହାଦେବ ମନ୍ଦିର ହେଲା ଏବଂ କ୍ୟାମ୍ପସ୍‌ବାସୀମାନେ ଚିରାଚରିତ ପନ୍ଥାରେ ଓଷା ବାର ମାନ ପାଳନ କଲେ ଏବଂ ବିବାହ, ବ୍ରତୋପୟନ ପ୍ରଭୃତି ଉତ୍ସବ ଅନୁଷ୍ଠିତ କଲେ ।

ସ୍ନାତକୋତ୍ତର ଶ୍ରେଣୀମାନଙ୍କର ଛାତ୍ରଛାତ୍ରୀମାନେ ମଧ୍ୟ ଦୈନନ୍ଦିନ ଜୀବନରେ ଅସୁବିଧା ଯୋଗୁଁ ପ୍ରଥମରୁ ଆପତ୍ତି ଅଭିଯୋଗମାନ ଆରମ୍ଭ କଲେ । ସେତେବେଳେ କ୍ୟାମ୍ପସରେ ଅଳ୍ପ ପିଲା ଥିଲେ, ହଷ୍ଟେଲମାନଙ୍କରେ ଅନେକ ରୁମ୍ ଖାଲି ପଡ଼ିଥିଲା । ଛାତ୍ରମାନଙ୍କ ମଧ୍ୟରେ ଇଉନିୟନ ଗଠିତ ହୋଇ ନ ଥିଲା ବା ନିର୍ବାଚନଜନିତ ସଂଘର୍ଷ ନ ଥିଲା । ତଥାପି ୧୯୬୩ ମସିହାରେ ଗୋଟିଏ ସାଧାରଣ କଥାରେ ବଡ଼ ଷ୍ଟ୍ରାଇକ୍ ହେଲା । ଦୁଇ ତିନି ଜଣ ଛାତ୍ର ଏବଂ ଦୁଇ ଜଣ ବିଶ୍ୱବିଦ୍ୟାଳୟ ଅଫିସ କର୍ମଚାରୀଙ୍କ ମଧ୍ୟରେ କଳହ ଓ ବଚସା ଯୋଗୁଁ ପ୍ରଥମେ ଷ୍ଟ୍ରାଇକ୍ ହେଲା ଏବଂ ପରେ ବୃହତ୍ ଆକାର ଧାରଣ କଲା । ସେତେବେଳେ ଅଭିଯୋଗ ହୋଇଥିଲା ଯେ କେତେଜଣ ଅସନ୍ତୁଷ୍ଟ ଶିକ୍ଷକ ଷ୍ଟ୍ରାଇକ୍ ବଢ଼ାଇବାରେ ସାହାଯ୍ୟ କରିଥିଲେ । ସ୍ୱାଧୀନ ଭାରତରେ ଶିକ୍ଷକ ଜୀବନରେ ପିଲାମାନଙ୍କ ଷ୍ଟ୍ରାଇକ୍ ଏବଂ ଘେରାଉରେ କିଛି ନୂତନତ୍ୱ ନାହିଁ । ପରିଜା ରେଭେନ୍ସା କଲେଜରେ ପ୍ରିନ୍ସିପାଲ ଥିବା ସମୟରେ ଯୁଦ୍ଧ ସମୟରେ ବଡ଼ ବଡ଼ ଷ୍ଟ୍ରାଇକ୍‌ର ସମ୍ମୁଖୀନ ହୋଇଥିଲେ । ତଥାପି ବିଶ୍ୱବିଦ୍ୟାଳୟରେ ଆଗରୁ ପ୍ରତ୍ୟକ୍ଷ ଶିକ୍ଷାଦାନୀ ବିଭାଗମାନ ନ ଥିବାରୁ ସେଠାରେ ଷ୍ଟ୍ରାଇକ୍ ନ ଥିଲା । ୧୯୬୩ ମସିହାରେ କ୍ୟାମ୍ପସରେ ପ୍ରଥମେ ଛାତ୍ର ହରତାଳ ଆରମ୍ଭ ହୋଇଥିଲା ଏବଂ ଆଜିଯାଏ ତାହା ବିଶ୍ୱବିଦ୍ୟାଳୟ ଶିକ୍ଷାର ଗୋଟିଏ ପ୍ରଧାନ ଅଙ୍ଗ ହୋଇ ରହିଛି । ପରିଜା କିନ୍ତୁ ସେତେବେଳେ ଅତ୍ୟନ୍ତ ବିରକ୍ତ ହେଲେ ଏବଂ କୁଳପତି ପଦ ତ୍ୟାଗ କରିବାକୁ ଇଚ୍ଛା ପ୍ରକାଶ କଲେ । ମାତ୍ର ରାଜ୍ୟପାଳ ଏବଂ ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧକ୍ରମେ ସେଥିରୁ ନିବୃତ୍ତ ହେଲେ । ପରିଜା ସର୍ବଦା ଜଣେ ଗମ୍ଭୀର ଏବଂ ସ୍ୱାଭିମାନୀ ବ୍ୟକ୍ତି ଥିଲେ । ତାଙ୍କ ଜୀବନ ଆମ ଭାରତୀୟ ପୁରାତନ ମୂଲ୍ୟବୋଧ ଏବଂ ଇଂଲାଣ୍ଡର ଭିକ୍ଟୋରିଆ ଯୁଗର ମୂଲ୍ୟବୋଧରେ ଗଠିତ ହୋଇଥିଲା । ସେ ନିଜର ବଡ଼ପଣ କେବେ ପ୍ରଚାର କରୁ ନ ଥିଲେ କିମ୍ବା କାହାକୁ ତୋଷାମଦ କରି ନିଜର ସୁବିଧା ଲାଭ କରିବାକୁ ଇଚ୍ଛା

କରୁ ନ ଥିଲେ । ସେ ଆମ ସବୁ ଶିକ୍ଷକମାନଙ୍କଠାରୁ ବୟସରେ ଖୁବ୍ ବଡ଼ ଥିଲେ ଏବଂ ଜ୍ଞାନ, ଅଭିଜ୍ଞତା, ଆନ୍ତର୍ଜାତିକ ଖ୍ୟାତି, ସରକାରୀ ଏବଂ ସାମାଜିକ କ୍ଷେତ୍ରରେ ପ୍ରତିଷ୍ଠା ପ୍ରଭୃତି ସବୁ କ୍ଷେତ୍ରରେ ସେ ଆମ୍ଭମାନଙ୍କଠାରୁ ବହୁ ଉଚ୍ଚରେ ଥିଲେ । ତାଙ୍କର ତୁଙ୍ଗ ବ୍ୟକ୍ତିତ୍ୱ ଏବଂ ଶିକ୍ଷା ଓ ସାମାଜିକ କ୍ଷେତ୍ରରେ ସମ୍ମାନ ହେତୁ ସେ ବିଶ୍ୱବିଦ୍ୟାଳୟର ସବୁ ଶ୍ରେଣୀର କର୍ମଚାରୀ ଏବଂ ସମସ୍ତ ଓଡ଼ିଶାବାସୀଙ୍କର ସମ୍ମାନାସ୍ପଦ ଥିଲେ ।

ସେ ବାଣୀବିହାରରେ ୧୯୬୨ ମସିହା ଜୁଲାଇ ମାସରୁ ୧୯୬୬ ମସିହା ଫେବୃଆରୀ ମାସ ପ୍ରାୟ ତିନି ବର୍ଷ ଆଠ ମାସ ରହିଥିଲେ । ପ୍ରଥମେ ଗୋଟିଏ ବର୍ଷ ଆମ ଘର ପାଖ ଗୃହରେ ଥିଲେ ଏବଂ ପରେ ଅଢ଼େଇ ବର୍ଷ କୁଳପତିଙ୍କ ପାଇଁ ଉଦ୍ଦିଷ୍ଟ ବାସଗୃହରେ ରହିଥିଲେ । ତାଙ୍କର ସହଧର୍ମିଣୀ ଶ୍ରୀମତୀ ସୁନ୍ଦରମଣି ପରିଜା ଅତ୍ୟନ୍ତ ସ୍ନେହଶୀଳା ଏବଂ ଅମାୟିକ ସ୍ୱଭାବର ମହିଳା ଥିଲେ । ଆମ ସମସ୍ତଙ୍କ ପରିବାରର ଲୋକ ତାଙ୍କୁ ଅତି ଭଲ ପାଉଥିଲେ । ୧୯୬୩ ମସିହା ଜାନୁଆରୀ ମାସ ୨ ତାରିଖରେ ଭାରତର ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ କ୍ୟାମ୍ପସ ଉନ୍ମୋଚନ କରିଥିଲେ ଏବଂ କ୍ୟାମ୍ପସରେ ପ୍ରଥମ କନ୍‌ଭୋକେସନ ହୋଇଥିଲା । ସେ ବର୍ଷ ଠାରୁ ବହୁ ବର୍ଷ ଧରି କ୍ୟାମ୍ପସରେ ନିୟମିତ ଭାବରେ ବାର୍ଷିକ କନ୍‌ଭୋକେସନ ହେଉଥିଲା । ପରିଜା ୧୯୬୬ ମସିହା ଫେବୃଆରୀ ମାସ ୧୬ ତାରିଖରେ କୁଳପତି ପଦରୁ ଅବସର ନେଲେ ଏବଂ କ୍ୟାମ୍ପସରୁ ବିଦାୟ ନେଲେ । ବିଶ୍ୱବିଦ୍ୟାଳୟର ସବୁ ଶ୍ରେଣୀର କର୍ମଚାରୀ ସଭାସମିତି କରି ତାଙ୍କୁ ଯଥୋଚିତ ସମ୍ମାନ ସହ ବିଦାୟ ଦେଇଥିଲେ ଏବଂ ଅଧ୍ୟାପକମାନେ ତାଙ୍କ ସମ୍ମାନାର୍ଥେ ଗୋଟିଏ ନୈଶଭୋଜିର ଆୟୋଜନ କରିଥିଲେ ।

୧୯୬୬ ମସିହା ଫେବୃଆରୀ ୧୬ ତାରିଖରୁ ଡକ୍ଟର ସଦାଶିବ ମିଶ୍ର ବିଶ୍ୱବିଦ୍ୟାଳୟର କୁଳପତି ହେଲେ ଏବଂ ସପରିବାର କୁଳପତିଙ୍କ ପାଇଁ ଉଦ୍ଦିଷ୍ଟ ବାସଗୃହରେ ରହିଲେ । ସେତେବେଳକୁ କ୍ୟାମ୍ପସର ରହିବା ପ୍ରଣାଳୀ ଏବଂ ଶିକ୍ଷାଦାନ ଓ ଅଫିସ କାର୍ଯ୍ୟରେ ଗତ ପଡ଼ି ଯାଇଥିଲା, ଆଗରୁ ରେଭେନ୍ସା କଲେଜରେ ଯେଉଁ ବିଷୟମାନଙ୍କରେ ସ୍ନାତକୋତ୍ତର ଶିକ୍ଷାର ବ୍ୟବସ୍ଥା ଥିଲା, ସେ ସବୁ ବିଷୟରେ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ବିଭାଗମାନ ହେବ ନାହିଁ ବୋଲି ଯେଉଁ ନୀତିଗତ ନିଷ୍ପତ୍ତି ହୋଇଥିଲା, ସଦାଶିବବାବୁ କୁଳପତି ହୋଇଥିବା ସମୟରେ ତାହା ଉଠିଗଲା । ବାଣୀବିହାରରେ ଗଣିତ, ପଦାର୍ଥ, ରସାୟନ, ପ୍ରାଣୀ ଓ ଉଦ୍ଭିଦବିଜ୍ଞାନ ସହିତ ସବୁ ବିଜ୍ଞାନ ବିଷୟରେ ସ୍ନାତକୋତ୍ତର ବିଭାଗମାନ ଖୋଲା ହେଲା ଏବଂ ସେମାନଙ୍କ ପାଇଁ ସ୍ୱତନ୍ତ୍ର ଗୃହମାନ ନିର୍ମିତ ହେଲା । କଳା ବିଭାଗରେ ଇଂରାଜୀ ଏବଂ ଓଡ଼ିଆ ବିଭାଗ ସହିତ ସମାଜବିଜ୍ଞାନ, ଶ୍ରମ ମଙ୍ଗଳ ବିଭାଗମାନ ଖୋଲାହେଲା । କଟକରୁ ବାଣିଜ୍ୟ ବିଭାଗ ମଧ୍ୟ ବାଣୀବିହାର କ୍ୟାମ୍ପସକୁ ଉଠିଆସିଲା । ସଦାଶିବବାବୁଙ୍କ ସମୟରେ କ୍ୟାମ୍ପସରେ ଦ୍ୱିତୀୟ ପର୍ଯ୍ୟାୟ ନିର୍ମାଣ କାର୍ଯ୍ୟ ହୋଇଥିଲା । ସେ ନିର୍ମାଣ କାର୍ଯ୍ୟ ନୂତନ ବିଭାଗମାନଙ୍କର ଗୃହ, ଛାତ୍ରଛାତ୍ରୀ ନିବାସ ନିର୍ମାଣ ଏବଂ ପ୍ରଥମ

ପର୍ଯ୍ୟାୟର ଅସମ୍ପୂର୍ଣ୍ଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବାରେ ସୀମିତ ଥିଲା । କର୍ମଚାରୀମାନଙ୍କ ପାଇଁ ଅଧିକ ରହିବା ଗୃହ ନିର୍ମିତ ହୋଇ ପାରି ନ ଥିଲା । ସଦାଶିବବାବୁଙ୍କ ସମୟରେ ମଧ୍ୟ ନିୟମିତ ଶିକ୍ଷାଦାନ, ପରୀକ୍ଷା ଏବଂ କନ୍‌ଭୋକେସନ୍ କାର୍ଯ୍ୟମାନ ଚାଲିଥିଲା ଏବଂ ପ୍ରାୟ ପାଞ୍ଚବର୍ଷ କ୍ୟାମ୍ପସ୍‌ରେ ଛାତ୍ର ଓ କର୍ମଚାରୀମାନଙ୍କ ମଧ୍ୟରେ କୌଣସି ଗଣ୍ଡଗୋଳ ହୋଇ ନ ଥିଲା । ୧୯୬୮ ମସିହାରେ ବିଶ୍ୱବିଦ୍ୟାଳୟର ରୌପ୍ୟ ଜୁବୁଲି ଉତ୍ସବ ସମାରୋହରେ ପାଳିତ ହୋଇଥିଲା ଏବଂ ସେହି ଅବସରରେ ବହୁ ପ୍ରକାର ନୃତ୍ୟଗୀତର ଆୟୋଜନ କରା ହୋଇଥିଲା ।

୧୯୭୧ ମସିହା ଫେବୃଆରୀ ମାସରେ ସଦାଶିବବାବୁଙ୍କର ପ୍ରଥମ ଥର କୁଳପତି ନିଯୁକ୍ତି କାର୍ଯ୍ୟକାଳ ଶେଷରେ ସେ ଦ୍ୱିତୀୟଥର ପାଇଁ ନିଯୁକ୍ତି ପାଇଥିଲେ । ଦ୍ୱିତୀୟ ଥର ନିଯୁକ୍ତି ପାଞ୍ଚ ବର୍ଷ ଶେଷ କରିବାକୁ ତାଙ୍କର ବୟସ ନ ଥିଲା । କାରଣ କୁଳପତି ଚାକିରି ବୟସ ସୀମା ୬୫ ବର୍ଷରୁ ତାଙ୍କର ପ୍ରାୟ ସାଢ଼େ ତିନି ବର୍ଷ ବାକି ଥିଲା । ଆମ ଅଧ୍ୟାପକମାନଙ୍କ ମଧ୍ୟରୁ ଜଣେ କୁଳପତି ହେବାପାଇଁ ଚେଷ୍ଟା କରୁଥିଲେ । ତାଙ୍କୁ କେତେକ ସିନେଟ ମେମ୍ବର ସାହାଯ୍ୟ କରୁଥିଲେ । ତାଙ୍କ ମଧ୍ୟରୁ ଜଣେ ସଦାଶିବବାବୁଙ୍କ ନିଯୁକ୍ତି ପୂର୍ଣ୍ଣ ପାଞ୍ଚବର୍ଷ ହୋଇ ନ ପାରିବା ହେତୁ ତାଙ୍କ ନିଯୁକ୍ତି ବିରୋଧରେ ହାଇକୋର୍ଟରେ ମକଦ୍ଦମା କଲେ ଏବଂ ସିନେଟରେ ବିରୋଧ କଲେ । ଏଥି ମଧ୍ୟରେ ୧୯୭୧ ମସିହା ବାର୍ଷିକ ବି.ଏ. ପରୀକ୍ଷାରେ ବିଭିନ୍ନ କଲେଜରେ ବ୍ୟାପକ କପି ହେଲା । ବିଶ୍ୱବିଦ୍ୟାଳୟରେ ପରୀକ୍ଷା କପି ବିଷୟରେ ରିପୋର୍ଟସବୁ ପହଞ୍ଚିବା ପରେ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ଅତ୍ୟନ୍ତ ବ୍ୟଥିତ ହୋଇ ସେ ବର୍ଷ ବାର୍ଷିକ ବି.ଏ. ପରୀକ୍ଷାକୁ ବାତିଲ କରି ପୁନର୍ବାର ପରୀକ୍ଷା କରିବାକୁ ସ୍ଥିର କଲେ । ସେଥିରେ ଉତ୍‌କ୍ଷିପ୍ତ ହୋଇ ବିଭିନ୍ନ କଲେଜରୁ ବହୁ ପିଲା ଆସି ବିଶ୍ୱବିଦ୍ୟାଳୟ ଅଫିସ ଏବଂ କୁଳପତିଙ୍କ ବାସଭବନରେ ବିକ୍ଷୋଭ ପ୍ରଦର୍ଶନ କଲେ । ସେ ସମୟ ଇନ୍ଦିରାଗାନ୍ଧୀଙ୍କ ଭାରତବର୍ଷରେ ଜରୁରୀ ଅବସ୍ଥା ଘୋଷଣାର ପୂର୍ବ ସମୟ ଥିଲା । ଭାରତବର୍ଷର ବିଭିନ୍ନ ରାଜ୍ୟରେ ଦୁର୍ନୀତି ବିରୋଧରେ ଜୟପ୍ରକାଶଙ୍କ ନେତୃତ୍ୱରେ ଆନ୍ଦୋଳନମାନ ହେଉଥାଏ । ପଶ୍ଚିମବଙ୍ଗ, ବିହାର, ଉତ୍ତରପ୍ରଦେଶ ଏବଂ ମଧ୍ୟପ୍ରଦେଶର ସ୍କୁଲ କଲେଜ ପରୀକ୍ଷାରେ ବ୍ୟାପକ କପି ହେଉଥାଏ ଏବଂ ସ୍କୁଲ କଲେଜ କର୍ତ୍ତୃପକ୍ଷ ତାହାକୁ ନିୟନ୍ତ୍ରିତ କରିପାରୁ ନ ଥାନ୍ତି । ଓଡ଼ିଶାରେ ତାହାର ପ୍ରଭାବ ନିଶ୍ଚିତ ଭାବରେ ପଡ଼ିଥିଲା । ଓଡ଼ିଶାରେ ବି.ଏ. ପରୀକ୍ଷା ବାତିଲ ହେଲେ ବିଭିନ୍ନ ଜିଲ୍ଲାରେ ବ୍ୟାପକ ଗଣ୍ଡଗୋଳ ହେବା ଆଶଙ୍କା କରି ଓଡ଼ିଶା ସରକାର ବିଶ୍ୱବିଦ୍ୟାଳୟକୁ ପରୀକ୍ଷା ବାତିଲ ନ କରିବାକୁ ମୌଖିକ ଅନୁରୋଧ କଲେ । ପରୀକ୍ଷା ବାତିଲ ବିଷୟ ସିଣ୍ଡିକେଟ୍‌ରେ ପୁନର୍ବିଚାର ପାଇଁ ପଡ଼ିଲା । ମୁଁ ସେତେବେଳେ ସିଣ୍ଡିକେଟ୍‌ରେ ସଭ୍ୟ ଥିଲି । ପରୀକ୍ଷା ବାତିଲ କରିବାକୁ ଥରେ ସ୍ଥିର କରି ପୁନର୍ବାର ତାକୁ ନ କରିବା ନିଷ୍ପତ୍ତିକୁ ବହୁ ସିଣ୍ଡିକେଟ୍ ସଭ୍ୟ ବିରୋଧ କଲେ । ବହୁ ବାଦାନୁବାଦ ପରେ ପରୀକ୍ଷା ବାତିଲ ନ କରିବାକୁ ସ୍ଥିର ହେଲା । ଗୋଟିଏ ଦିଗରେ

ତାଙ୍କର ପୁନର୍ନିଯୁକ୍ତି ବିରୋଧରେ ହାଇକୋର୍ଟରେ ମକଦ୍ଦମା ଏବଂ ପରୀକ୍ଷା ବାତିଲ୍ ବିଷୟରେ ରାଜ୍ୟ ସରକାର ଏବଂ ଇଉନିଭର୍ସିଟି ସିଣ୍ଡିକେଟ ମଧ୍ୟରେ ବାଦାନୁବାଦ ଏବଂ ଏ ସବୁ ବିଷୟରେ ସାଧାରଣ ଲୋକଙ୍କ ସମାଲୋଚନା ହେତୁ ସଦାଶିବବାବୁ ବ୍ୟଥିତ ହୋଇ କୁଳପତି ପଦରୁ ଇସ୍ତଫା ଦେଇଦେଲେ । ସେତେବେଳେ ବିଶ୍ୱନାଥ ଦାସ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ସେ ଏବଂ ରାଜ୍ୟପାଳ ସଦାଶିବବାବୁଙ୍କୁ ଇସ୍ତଫା ପ୍ରତ୍ୟାହାର କରିନେବାକୁ ବହୁତ ବୁଝାଇଲେ, ମାତ୍ର ସେ ତାହା କରିବାକୁ ରାଜି ହେଲେ ନାହିଁ । ଏହିପରି ଅପ୍ରୀତିକର ପରିସ୍ଥିତିରେ ସଦାଶିବବାବୁ କ୍ୟାମ୍ପସରୁ ୧୯୭୧ ମସିହା ମଇ ମାସରେ ବିଦାୟ ନେଲେ । ତାଙ୍କର ପାଞ୍ଚବର୍ଷ କାର୍ଯ୍ୟକାଳ ମଧ୍ୟରେ ବିଶ୍ୱବିଦ୍ୟାଳୟରେ ଅନେକ ବିଜ୍ଞାନ ଓ କଳା ବିଷୟରେ ବିଭାଗମାନ ବିଶ୍ୱବିଦ୍ୟାଳୟରେ ପ୍ରତିଷ୍ଠିତ ହେବା ଏବଂ ସେଗୁଡ଼ିକ ପାଇଁ ଗୃହ, କ୍ୟାମ୍ପସର ଅତିଥି ଭବନ ନିର୍ମାଣ ଏବଂ ବିଶ୍ୱବିଦ୍ୟାଳୟର ଅଡ଼ିଟୋରିୟମ କାର୍ଯ୍ୟକାରୀ କରାଇବା ବିଶେଷ ଉନ୍ନୟନମୂଳକ କାର୍ଯ୍ୟ ଥିଲା । ତାଙ୍କରି ସମୟରେ ମଧ୍ୟ ୧୯୬୭ ମସିହା ଜାନୁଆରୀ ମାସ ପହିଲାରୁ ଓଡ଼ିଶା ସରକାର ସମ୍ବଲପୁର ଓ ବ୍ରହ୍ମପୁର ଠାରେ ଆଉ ଦୁଇଗୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ପରେ ବାଣୀବିହାର ପରି ଜ୍ୟୋତିବିହାର ଓ ଭଞ୍ଜବିହାରଠାରେ ସେ ବିଶ୍ୱବିଦ୍ୟାଳୟ ଦୁଇଟିର କ୍ୟାମ୍ପସ ନିର୍ମାଣ କରିବାକୁ ସ୍ଥିର ହୋଇଥିଲା । ସଦାଶିବବାବୁ ଜଣେ ବିଚକ୍ଷଣ ବୁଦ୍ଧିଜୀବୀ ଏବଂ ଶିକ୍ଷାବିତ୍ ଥିଲେ ଏବଂ ତାଙ୍କ ସମୟରେ ବିଶ୍ୱବିଦ୍ୟାଳୟ ଏବଂ ବାଣୀବିହାର କ୍ୟାମ୍ପସର ବିଶେଷ ପ୍ରଗତି ହୋଇଥିଲା ।

ସଦାଶିବବାବୁ ଇସ୍ତଫା ଦେବା ପରେ ଚାନ୍ସେଲର ଡକ୍ଟର ଘନଶ୍ୟାମ ମହାପାତ୍ରଙ୍କୁ ଅସ୍ଥାୟୀ ଭାବରେ ଛଅ ମାସ ପାଇଁ କୁଳପତି ରୂପେ ନିଯୁକ୍ତ କରିଥିଲେ ଏବଂ ସ୍ଥାୟୀ କୁଳପତି ନିଯୁକ୍ତି ପାଇଁ ପଦକ୍ଷେପ ନେଉଥିଲେ । ଘନଶ୍ୟାମବାବୁ ଭୁବନେଶ୍ୱରରେ ତାଙ୍କ ନିଜ ଘରେ ରହୁଥିଲେ । ସେ କୁଳପତି ହେବାର ଦୁଇ ତିନି ମାସ ଭିତରେ ଗୋଟିଏ ଘଟଣାରେ ଦିନେ କେତେକ ଅଧ୍ୟାପକ ଏବଂ ଛାତ୍ରଙ୍କ ସହିତ ରେଜିଷ୍ଟ୍ରାର ଦୁର୍ଗାପ୍ରସାଦ ବରାଇଙ୍କର କଳହ ହୋଇଥିଲା । ସେହି କଳହରେ ଉତ୍ୟକ୍ତ ହୋଇ ହଷ୍ଟେଲର ଅନେକ ଛାତ୍ର ରାତିରେ ବରାଇଙ୍କ ଘର ଘେରାଉ କରି ତାଙ୍କର ଇସ୍ତଫା ଦାବି କଲେ । ରାତିଯାକ ବରାଇଙ୍କର ପରିବାର ଆତଙ୍କିତ ଅବସ୍ଥାରେ ରହିଲେ । ସକାଳେ ଘନଶ୍ୟାମବାବୁ ବରାଇଙ୍କ ଘରକୁ ଆସିଲେ । ଆମ୍ଭେମାନେ କେତେକ ଅଧ୍ୟାପକ ମଧ୍ୟ ତାଙ୍କ ଘରେ ଉପସ୍ଥିତ ଥିଲୁ । ଆମେ ସମସ୍ତେ ପିଲାମାନଙ୍କୁ ବହୁତ ବୁଝାଇଲୁ । ମାତ୍ର ସେଥିରେ କିଛି ଫଳ ହେଲା ନାହିଁ । କ୍ୟାମ୍ପସ୍‌କୁ ପୁଲିସ ଡାକି ଆହୁରି ବିରାଟ ଆନ୍ଦୋଳନ କରାଇବାକୁ ଘନଶ୍ୟାମବାବୁ ଚାହିଁଲେ ନାହିଁ । ବରାଇ ଅସହାୟ ହୋଇ ଇସ୍ତଫା ପତ୍ର ଲେଖିଦେଲେ । ଆମ୍ଭେମାନେ ଆଶା କରୁଥିଲୁ ଯେ ଚାନ୍ସେଲର ପରିସ୍ଥିତିକୁ ବିଚାର କରି ତାଙ୍କ ଇସ୍ତଫାପତ୍ର ଗ୍ରହଣ କରିବେ ନାହିଁ । କିନ୍ତୁ ଚାନ୍ସେଲର ଆକବର ଅଲି ତାଙ୍କ ଇସ୍ତଫାପତ୍ର ଗ୍ରହଣ କରିନେଲେ । ବରାଇ ହାଇକୋର୍ଟରେ ମକଦ୍ଦମା କଲେ । ମାତ୍ର ମକଦ୍ଦମା ପାଞ୍ଚ ଛଅ ବର୍ଷ ଲାଗିଯିବାରୁ

ତାଙ୍କ ପରିବାର ବହୁ ଅସୁବିଧାରେ ପଡ଼ିଥିଲେ । ଶେଷରେ ହାଇକୋର୍ଟ ତାଙ୍କ ଇସ୍ତଫା ଗ୍ରହଣ ନାକଚ କରିଦେଲେ । ସେତେବେଳକୁ ତାଙ୍କର ଅବସର ଗ୍ରହଣ କରିବା ବୟସ ହୋଇଯାଇଥିଲା । ମୁଁ ଭାଇସଚାନ୍ସେଲର ଥିବାବେଳେ, ସେ ତାଙ୍କର ପ୍ରାପ୍ୟ ବିଶ୍ୱବିଦ୍ୟାଳୟରୁ ପାଇଥିଲେ । ଘନଶ୍ୟାମବାବୁ ଅସ୍ଥାୟୀ ଭାବରେ କୁଳପତି ଥିବା ସମୟରେ ପରୀକ୍ଷାରେ କପି ଏବଂ ପରୀକ୍ଷା ବାତିଲ୍ ବିଷୟରେ ବିଭିନ୍ନ କଲେଜର ପିଲା ତାଙ୍କୁ ଅନେକଥର ଘେରାଉ କରିଥିଲେ । ସେ ଅତ୍ୟନ୍ତ ଶାନ୍ତିପ୍ରିୟ ବ୍ୟକ୍ତି ଥିଲେ । ବିଶ୍ୱବିଦ୍ୟାଳୟରେ ଏପରି ଘେରାଉ ଏବଂ ଗଣ୍ଡଗୋଳ ହେତୁ ସେ ସ୍ଥାୟୀ ଭାବରେ କୁଳପତି ହେବାକୁ ଚାହୁଁ ନ ଥିଲେ । ଶେଷରେ ୧୯୭୧ ମସିହା ନଭେମ୍ବର ମାସରେ ଡକ୍ଟର ରମାନାଥ ମହାନ୍ତି ବିଶ୍ୱବିଦ୍ୟାଳୟର ସ୍ଥାୟୀ କୁଳପତି ହେଲେ ।

ରମାନାଥବାବୁ ଅତ୍ୟନ୍ତ ଧୀରସ୍ଥିର ଏବଂ ବିଦ୍ୱାନ ଲୋକ ଥିଲେ । ମାତ୍ର ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ସଦାଶିବବାବୁଙ୍କ ଇସ୍ତଫା ଦେବା ସମୟରୁ, ବିଶେଷତଃ ପରୀକ୍ଷା ତାରିଖ ଘୁଞ୍ଚାଇବା ଏବଂ କପି ପ୍ରଭୃତି ହେତୁ ପରୀକ୍ଷା ବାତିଲ କରାଇବା ବିଷୟରେ ବରାବର ଗଣ୍ଡଗୋଳ ଲାଗି ରହିଥିଲା । ରମାନାଥବାବୁ ପରିବାର ସହ କ୍ୟାମ୍ପସ୍‌ରେ କୁଳପତି ଭବନରେ ମୋଟେ ରହି ନାହାନ୍ତି । ବିଭିନ୍ନ ବିଷୟରେ ପିଲାମାନେ ତାଙ୍କୁ ବରାବର ଘେରାଉ କରୁଥାନ୍ତି । କେତେଥର ବିଶ୍ୱବିଦ୍ୟାଳୟ କର୍ମଚାରୀ ସଂଘ ମଧ୍ୟ ସେମାନଙ୍କର ଚାକିରି ସର୍ତ୍ତ ବିଷୟରେ ତାଙ୍କୁ ଘେରାଉ କରିଥିଲେ । ମୁଁ ସେତେବେଳେ ସିଣ୍ଡିକେଟ୍‌ର ସଭ୍ୟ ଥିଲି ଏବଂ ବିଭିନ୍ନ ବିଷୟରେ ସେ ମୋର ପରାମର୍ଶ ଲୋଡ଼ୁଥିଲେ । ସେ ସମୟରେ ଅନେକଥର ମଧ୍ୟ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଶ୍ରେଣୀ ପିଲା ଏବଂ ଅନ୍ୟ କଲେଜ ପିଲା ପୂରା ସିଣ୍ଡିକେଟକୁ ଘଣ୍ଟା ଘଣ୍ଟା ଧରି ଘେରାଉ କରୁଥିଲେ ଏବଂ ଆମ୍ଭେମାନେ ପୁଲିସ ସାହାଯ୍ୟରେ ଘେରାଉରୁ ମୁକୁଳି ଘରକୁ ଯାଉଥିଲୁ । କୁଳପତି ହେବାର କେତେକ ମାସ ପରେ ଥରେ ଖଟରୁ ପଡ଼ି ରମାନାଥବାବୁଙ୍କ ଗୋଡ଼ ଭାଙ୍ଗିଗଲା ଏବଂ କଟକରେ ସେ ନିଜ ଘରେ ରହି ଅଫିସ କାମ କରୁଥିଲେ । ସେଠାରେ ତାଙ୍କର ଅସୁସ୍ଥ ଅବସ୍ଥାରେ ମଧ୍ୟ ଗୋଟିଏ ରାତି ପିଲା ପରୀକ୍ଷା ତାରିଖ ଘୁଞ୍ଚାଇବା ପାଇଁ ତାଙ୍କୁ ଘେରାଉ କରିଥିଲେ । ମୁଁ ସେଦିନ ଗୋଟିଏ ମିଟିଂରେ ଯୋଗ ଦେବାକୁ ତାଙ୍କ ଘରକୁ ଯାଇଥିଲି । ମୁଁ ମଧ୍ୟ ସେ ଘେରାଉରେ ସେଠାରେ ରାତିଯାକ ରହିଯାଇଥିଲି । ଆଉ ଥରେ ବାଣୀବିହାର ହଷ୍ଟେଲ ପିଲାମାନେ ସାତ ଆଠଟା ଲାଇନ୍ ବସ କ୍ୟାମ୍ପସ୍ ଭିତରେ ଅଟକାଇ ରଖି ନେଇଥିଲେ । ଅନେକ ଘଣ୍ଟା ବୁଝାଇବା ପରେ ବସ୍ ସବୁ ମୁକୁଳିଥିଲା । ତାହାପରଠାରୁ ବସ କର୍ତ୍ତୃପକ୍ଷ କ୍ୟାମ୍ପସ ମଧ୍ୟ ଦେଇ ଲାଇନ୍ ବସ୍ ସବୁ ଚଳାଇ ନ ଥିଲେ । ସେ ସମୟରେ ଦୁଇ ତିନି ବର୍ଷ ବରାବର କ୍ୟାମ୍ପସରେ ଏହିପରି ଗଣ୍ଡଗୋଳ ହେଉଥିଲା । ଶେଷରେ ୧୯୭୪ ମସିହା ଜୁଲାଇ ମାସରେ ରାଜ୍ୟ ସରକାର ବିଶ୍ୱବିଦ୍ୟାଳୟ ଆଇନ ସଂଶୋଧନ କରି ବିଶ୍ୱବିଦ୍ୟାଳୟ ଶାସନକୁ ହାତକୁ ନେଇଥିଲେ ଏବଂ ଜଣେ ସିନିଅର କମିସନର ପଦବୀର

ଅଫିସର ଜ୍ଞାନଚାନ୍ଦଙ୍କୁ ବିଶ୍ୱବିଦ୍ୟାଳୟ ପ୍ରଶାସକ କରି ପଠାଇଲେ । ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟକୁ ଭାଙ୍ଗି ଦିଆଯାଇଥିଲା । ସିନେଟ୍, ସିଣ୍ଡିକେଟ ଏବଂ ଭାଇସ୍ ଚାନ୍ସେଲର ସବୁ ସଂଗଠନର କ୍ଷମତା ପ୍ରଶାସକଙ୍କ ଉପରେ ନ୍ୟସ୍ତ ଥିଲା । ବିଶ୍ୱବିଦ୍ୟାଳୟ ଆଇନରେ ଏପରି ବ୍ୟବସ୍ଥା ନ ଥିଲା । ସେଥିପାଇଁ ସେ ଆଇନର ସଂଶୋଧନ କରାଯାଇଥିଲା ଏବଂ ବିଶ୍ୱବିଦ୍ୟାଳୟ ଆରମ୍ଭ ହେବାଠାରୁ ତିରିଶ ବର୍ଷପରେ ପ୍ରଥମଥର ପାଇଁ ବିଶ୍ୱବିଦ୍ୟାଳୟର ଶାସନ ରାଜ୍ୟ ସରକାରଙ୍କ ହାତକୁ ଯାଇଥିଲା । ରମାନାଥବାବୁ ପ୍ରାୟ ଅଢ଼େଇ ବର୍ଷ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ସେହି ସମୟ ମଧ୍ୟରେ ବିଭିନ୍ନ ଗଣ୍ଡଗୋଳ ହେତୁ, କେବଳ କେତେଗୋଟି ଅଧ୍ୟାପକଙ୍କ ବାସଭବନ ନିର୍ମାଣ ବ୍ୟତୀତ କ୍ୟାମ୍ପସ୍‌ରେ ଗୃହ ନିର୍ମାଣ ଏବଂ ଅନ୍ୟ କାର୍ଯ୍ୟରେ ପ୍ରଗତି ହୋଇ ପାରି ନ ଥିଲା ।

ପ୍ରଶାସକ ଜ୍ଞାନଚାନ୍ଦ ଜଣେ ଭଲ ମଣିଷ ଥିଲେ । ସେ ତାଙ୍କ ନିଯୁକ୍ତିର ପ୍ରଥମରୁ ଆସି କ୍ୟାମ୍ପସ୍‌ରେ କୁଳପତି ଭବନରେ ପରିବାର ସହ ରହିଥିଲେ । ପ୍ରଥମରେ କେତେକ ପିଲା କେତେକ ଅଧ୍ୟାପକଙ୍କ ପ୍ରରୋଚନାରେ ତାଙ୍କୁ ଅପମାନିତ କରିଥିଲେ । ମାତ୍ର ଚତୁରତା ସହିତ ବିଶେଷ ଗଣ୍ଡଗୋଳକୁ ପ୍ରଶ୍ରୟ ନ ଦେଇ ସେ ତାହା ସମାଧାନ କରିଥିଲେ । ସେ ଆମ୍ଭମାନଙ୍କ ସମେତ କେତେକ ଅଧ୍ୟାପକଙ୍କୁ ବିଶ୍ୱାସକୁ ନେଇଥିଲେ । ଆମ୍ଭେମାନେ ତାଙ୍କୁ ବିଶ୍ୱବିଦ୍ୟାଳୟର ପରୀକ୍ଷାମାନଙ୍କର ସୁଚାରୁ ନିୟନ୍ତ୍ରଣ ସହିତ ବିଶ୍ୱବିଦ୍ୟାଳୟର ଜମି ରେଜିଷ୍ଟ୍ରେସନ ଏବଂ କୋଠାବାଡ଼ି ନିର୍ମାଣ କାର୍ଯ୍ୟ ଆଗେଇନେବାକୁ ଅନୁରୋଧ କରିଥିଲୁ । ତାଙ୍କ ସମୟରେ ପରୀକ୍ଷାମାନ ନିୟନ୍ତ୍ରିତ ହୋଇଥିଲା । କ୍ୟାମ୍ପସ୍ ଜମି ରେଜିଷ୍ଟ୍ରି ହୋଇଥିଲା ଏବଂ କ୍ୟାମ୍ପସ୍‌ରେ ଦ୍ୱିତୀୟ ଆର୍ଟସ ବ୍ଲକ, ପ୍ରଶାସନିକ ଅଫିସ ଗୃହର ଦ୍ୱିତୀୟ ବ୍ଲକ ଏବଂ ଛାତ୍ରମାନଙ୍କ ପାଇଁ ଚତୁର୍ଥ ଛାତ୍ରାବାସ ଓ ଜିମ୍ନାସିୟମ ନିର୍ମିତ ହୋଇପାରିଥିଲା । ବିଶ୍ୱବିଦ୍ୟାଳୟ ଶାସନ କ୍ଷେତ୍ରରେ ସେ ବାଧ୍ୟହୋଇ ଅଧ୍ୟାପକ ଶ୍ରୀରାମ ଚନ୍ଦ୍ର ଦାଶ ଏବଂ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର କାଳିଚରଣ ମିଶ୍ରଙ୍କୁ ବାଧ୍ୟତାମୂଳକ ଭାବରେ ଅବସର ଗ୍ରହଣ କରାଇଥିଲେ । ମୋ ଜାଣିବାରେ ସେ ନିଜେ ଏଥିପାଇଁ ବିଶେଷ ଦୁଃଖିତ ଥିଲେ । ତାଙ୍କର ମୋ ଉପରେ ବିଶ୍ୱାସ ଥିଲା । ସେ ତେଇଶ ଦିନ ଛୁଟିରେ ଯାଇଥିବା ସମୟରେ ଚାନ୍ସେଲରଙ୍କ ନୋଟିଫିକେସନ୍ ଦ୍ୱାରା ମୋତେ ବିଶ୍ୱବିଦ୍ୟାଳୟର ପ୍ରଶାସକ ପଦରେ ରଖିଥିଲେ । ତାଙ୍କ ସମୟରେ ମଧ୍ୟ ମୁଁ ଆମ ବିଶ୍ୱବିଦ୍ୟାଳୟରେ ଭାରତୀୟ ଅର୍ଥନୀତି ସଂସଦର ବାର୍ଷିକ ଅଧିବେଶନ କରାଇଥିଲି ।

ତାଙ୍କ ସମୟରେ ଦୁଇଟି ସ୍ୱଳ୍ପ ସମୟ ବିଶିଷ୍ଟ ଛାତ୍ର ଗଣ୍ଡଗୋଳ ଉଲ୍ଲେଖଯୋଗ୍ୟ । ଦିନେ ଏକାଡେମିକ୍ କାଉନ୍ସିଲ୍‌ରେ ସେ ସଭାପତିତ୍ୱ କରୁଥିବା ସମୟରେ ମଧୁସୂଦନ ଆଇନ କଲେଜର କେତେକ ଛାତ୍ର ଆସି ତାଙ୍କୁ କୌଣସି ସମସ୍ୟାରେ ଘେରାଉ କଲେ । ବୁଝାବୁଝି ପରେ ପିଲାମାନେ ନ ଯିବାରୁ, ସେ ସଭା ପରବର୍ତ୍ତୀ ସମୟକୁ ଘୁଞ୍ଚାଇ ଦେଇଥିଲେ । ପରେ ସେ ପିଲାମାନଙ୍କ ସହିତ ଆଲୋଚନା କରି ଯାହା ସମାଧାନ

କରିଥିବେ । ତାପ ଦୁଇଦିନ ପରେ ମୁଁ ତାଙ୍କୁ ପଚାରିଥିଲି, ''ମିଷ୍ଟର ଜ୍ଞାନଚାନ୍ଦ, ଆପଣଙ୍କ ହାତରେ ସିନେଟ୍, ସିଣ୍ଡିକେଟ ଏବଂ ଭାଇସ୍ ଚାନ୍ସେଲରଙ୍କ କ୍ଷମତା ଥାଇ ଆପଣ ଯଦି ସେ ପିଲାମାନଙ୍କ ଘେରାଉ ବନ୍ଦ କରିପାରିଲେ ନାହିଁ ବା ସେମାନଙ୍କୁ କୌଣସି ଦଣ୍ଡ ଦେଇପାରିଲେ ନାହିଁ, ଆମ୍ଭମାନଙ୍କ ହାତରେ କିଛି କ୍ଷମତା ନ ଥାଇ ଆମେ ସେମାନଙ୍କୁ କିପରି ନିୟନ୍ତ୍ରିତ କରିବୁ ?'' ସେ କହିଲେ, ''ବିଦ୍ୟାଧରବାବୁ ମୁଁ ସେଦିନ ସନ୍ଧ୍ୟାବେଳେ ଶିକ୍ଷାମନ୍ତ୍ରୀଙ୍କ ଘରକୁ କଥାବାର୍ତ୍ତା କରିବାକୁ ଯାଇଥିଲି । ଦେଖିଲି ସେହି ପିଲାମାନଙ୍କ ମଧ୍ୟରୁ କେତେକ ତାଙ୍କ ଘରେ ବସି ଚା' ପିଉଥିଲେ ।'' ଏଇଟା ଆମ ଇଉନିଭର୍ସିଟିମାନଙ୍କର ଦୁର୍ଭାଗ୍ୟ । ଯେଉଁ ଦୁଷ୍ଟ ପିଲାମାନେ ବିଶ୍ୱବିଦ୍ୟାଳୟରେ ଗଣ୍ଡଗୋଳ କରନ୍ତି, ସେମାନଙ୍କର ସରକାରୀ ଦଳର କିମ୍ବା ବିରୋଧୀ ଦଳର ରାଜନୀତିଜ୍ଞମାନଙ୍କ ସହିତ ସହୃଦୟତା ଥାଏ । ସେଥିଯୋଗୁଁ ସହଜରେ ସେମାନଙ୍କୁ ଦଣ୍ଡ ଦେଇ ହୁଏ ନାହିଁ ।

ଅନ୍ୟ ଗୋଟିଏ ଘଟଣା ହେଲା, ବିଶ୍ୱବିଦ୍ୟାଳୟ ସରକାର ହାତକୁ ନେଇଥିବାରୁ କେତେ ପିଲା ବିଭିନ୍ନ ସୂତ୍ରରୁ ପ୍ରରୋଚନା ପାଇ, ମୁଖ୍ୟମନ୍ତ୍ରୀ ଏବଂ ରାଜ୍ୟପାଳଙ୍କର କ୍ୟାମ୍ପସ୍‌ରେ ପ୍ରବେଶକୁ ବିରୋଧ କରୁଥିଲେ । ମୁଖ୍ୟମନ୍ତ୍ରୀ ଏବଂ ରାଜ୍ୟପାଳ କ୍ୟାମ୍ପସ୍‌ରେ ପ୍ରବେଶ କରି ଛାତ୍ରଛାତ୍ରୀମାନଙ୍କ ସଭାରେ ଭାଷଣ ଦେବାକୁ ଚାହିଁଲେ । ସେତେବେଳେ ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଏବଂ ଆକ୍‌ବର ଅଲି ରାଜ୍ୟପାଳ ଥିଲେ । ଜ୍ଞାନଚାନ୍ଦ ଗୋଟିଏ ସଭାର ଆୟୋଜନ କଲେ ଏବଂ ସେଥିରେ ସହଯୋଗ କରିବାକୁ ଆମ୍ଭମାନଙ୍କୁ ଅନୁରୋଧ କଲେ । ସରକାରଙ୍କର ପରିକଳ୍ପନା ଥାଏ ଯେ ପିଲାମାନେ ମୁଖ୍ୟମନ୍ତ୍ରୀ ଏବଂ ରାଜ୍ୟପାଳଙ୍କର କ୍ୟାମ୍ପସରେ ପ୍ରବେଶକୁ ବିରୋଧ କଲେ ପିଲାଙ୍କୁ ଆଡ଼େଇ ଦିଆଯିବ । ସେଥିପାଇଁ ଆବଶ୍ୟକ ସଂଖ୍ୟାରେ ପୁଲିସ୍ ସହିଦନଗର ଥାନାରେ ଉପସ୍ଥିତ ଥିଲେ । ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳ ଆସିବାବେଳେ ଜ୍ଞାନଚାନ୍ଦଙ୍କ ସହ ଆମେ କେତେଜଣ ଅଧ୍ୟାପକ କ୍ୟାମ୍ପସ୍‌ର ପ୍ରଧାନ ଫାଟକ ପାଖରେ ଉପସ୍ଥିତ ଥିଲୁ । ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳ ଆସିଲାବେଳେ ଫାଟକ ପାଖରେ କେତେକ ପିଲା ଧ୍ୱନି ଦେଇ ତାଙ୍କୁ ବିରୋଧ କଲେ । ମାତ୍ର ବାହାରୁ ଆସିଥିବା କେତେକ ଲୋକ ସେମାନଙ୍କୁ ବଳ ପ୍ରୟୋଗ କରି ଆଡ଼େଇଦେଲେ । ପୁଲିସ୍ ମୋଟେ ସେ ସ୍ଥାନକୁ ଆସି ନ ଥିଲେ କିମ୍ବା କୌଣସି ବଳ ପ୍ରୟୋଗ କରି ନ ଥିଲେ । ଗୋଟିଏ ପିଲା ବାହାର ଲୋକଙ୍କ ଦ୍ୱାରା ମାଡ଼ ଖାଇଥିବାର ଆମେ ଦେଖିଲୁ । ଏହା ବୋଧହୁଏ ଆଗରୁ ପରିକଳ୍ପିତ ଥିଲା । ଏପରି ପରିସ୍ଥିତିରେ ଆମେ ଅତି ବିରକ୍ତ ହେଲୁ । ଜ୍ଞାନଚାନ୍ଦ ମଧ୍ୟ ବାହାର ଲୋକଙ୍କୁ ପିଲାମାନଙ୍କ ଉପରେ ବଳ ପ୍ରୟୋଗ କରିବାକୁ ବାଧା ଦେଉଥିଲେ । ଆମେ ବିରକ୍ତ ହୋଇ ସଭାକୁ ନ ଯାଇ ଘରକୁ ଫେରିଲୁ । ପରେ ଶୁଣିଲୁ ଯେ, ସେ ସଭାରେ ପିଲାମାନେ ନ ଥିଲେ । ମାତ୍ର ବାହାର ଲୋକଦ୍ୱାରା ସଭାଗୃହ ପୂର୍ଣ୍ଣ ହୋଇଥିଲା । ମୁଖ୍ୟମନ୍ତ୍ରୀ ଓ ରାଜ୍ୟପାଳ ଚାଲିଯିବା ପରେ ହଷ୍ଟେଲର ବହୁ ପିଲା ବିଜୁ ପଟ୍ଟନାୟକଙ୍କୁ ଡାକିଆଣି ସେହି ରାତିରେ ଆଉ ଗୋଟିଏ ସଭା

କଲେ । ଆମ୍ଭେମାନେ ସେ ସଭା ହେବାର ଜାଣି ନ ଥିଲୁ କିମ୍ବା ସେଥିରେ ଯୋଗ ଦେଇ ନ ଥିଲୁ । ସେଦିନ କ୍ୟାମ୍ପସ୍‌ରେ ରାଜନୀତିର ଏହିପରି ଖେଳ ହୋଇଥିଲା । ଆମ୍ଭେମାନେ ମୁଖ୍ୟମନ୍ତ୍ରୀଙ୍କ ସଭାକୁ ଯାଇ ନ ଥିବାରୁ ଜ୍ଞାନଚାନ୍ଦ ଆମ ଉପରେ ବିରକ୍ତ ହୋଇ ନ ଥିଲେ । ଏ ଘଟଣା ପରେ କ୍ୟାମ୍ପସ୍‌ରେ ଅନ୍ୟ କିଛି ଗଣ୍ଡଗୋଳ ହୋଇ ନ ଥିଲା । ଜ୍ଞାନଚାନ୍ଦ ଅନ୍ୟଦିନେ ମୁଖ୍ୟମନ୍ତ୍ରୀଙ୍କୁ ନିମନ୍ତ୍ରଣ କରି ଗୋଟିଏ ସଭା କରାଇଥିଲେ । ସେଥିରେ ପିଲାମାନଙ୍କ ସହିତ ଆମ୍ଭେମାନେ ଯୋଗ ଦେଇଥିଲୁ ।

ଜ୍ଞାନଚାନ୍ଦ ବିଶ୍ୱବିଦ୍ୟାଳୟରେ ୧୯୭୪ ମସିହା ଜୁଲାଇ ମାସରୁ ୧୯୭୬ ମସିହା ମଇ ମାସ ୨୫ ତାରିଖ ପର୍ଯ୍ୟନ୍ତ ପ୍ରାୟ ଦୁଇ ବର୍ଷ ପ୍ରଶାସକ ଥିଲେ । ସେ କ୍ୟାମ୍ପସ୍‌ର ସବୁ ଶ୍ରେଣୀର ଲୋକଙ୍କ ସହିତ ମିଳାମିଶା କରୁଥିଲେ । ତାଙ୍କ ସମୟରେ ବିଶ୍ୱବିଦ୍ୟାଳୟର ନିୟମିତ କାର୍ଯ୍ୟ ଓ ପ୍ରଗତି ବାଧାପ୍ରାପ୍ତ ହୋଇ ନ ଥିଲା । ୧୯୭୬ ମସିହା ମଇ ମାସ ୨୬ ତାରିଖରେ ଓଡ଼ିଶା ସରକାରଙ୍କ ଦ୍ୱାରା ନିଯୁକ୍ତି ପାଇ ପ୍ରଫେସର ଗୌତମ ମାଥୁର ଜ୍ଞାନଚାନ୍ଦଙ୍କ ସ୍ଥାନରେ ବିଶ୍ୱବିଦ୍ୟାଳୟର ପ୍ରଶାସକ ହେଲେ । ତାହା ପୂର୍ବରୁ ସେ ହାଇଦରାବାଦରେ ଓସ୍‌ମାନିଆ ବିଶ୍ୱବିଦ୍ୟାଳୟରେ ଅର୍ଥନୀତି ଅଧ୍ୟାପକ ଥିଲେ । ସେ ଆମ ବିଶ୍ୱବିଦ୍ୟାଳୟରେ କୁଳପତି ହେବାକୁ ଉଦ୍ୟମ କରିଥିଲେ ଏବଂ ଓଡ଼ିଶା ସରକାର ତାଙ୍କୁ ପ୍ରଥମେ ଛଅ ମାସ ବିଶ୍ୱବିଦ୍ୟାଳୟର ପ୍ରଶାସକ ଭାବରେ ନିଯୁକ୍ତି ଦେଇ ଆଉ ଛଅ ମାସ ଭାଇସଚାନ୍‌ସେଲର କରାଇଥିଲେ । ଅଧ୍ୟାପକ ମାଥୁରଙ୍କର ଆମ ବିଶ୍ୱବିଦ୍ୟାଳୟ ବିଷୟରେ କୌଣସି ଜ୍ଞାନ ନ ଥିଲା କିମ୍ବା ସେ ଆମ ବିଶ୍ୱବିଦ୍ୟାଳୟର କୌଣସି ଉନ୍ନତି କରିବାକୁ କଳ୍ପନା କରି ନ ଥିଲେ । ତାଙ୍କ ନିଜ ଉଚ୍ଚ ଆଶାରେ, ସେ ଏଠାରେ କୁଳପତି ପଦରେ କାର୍ଯ୍ୟ କରିବାକୁ ଆସିଥିଲେ । ମାତ୍ର ଅଳ୍ପ କାଳ ପରେ ତାଙ୍କ କାର୍ଯ୍ୟ ପ୍ରଣାଳୀରେ କ୍ଷୁବ୍ଧ ହୋଇ ବିଶ୍ୱବିଦ୍ୟାଳୟର ସବୁ ଶ୍ରେଣୀର ଲୋକ ତାଙ୍କର ବିରୋଧ କଲେ । ସେ ଗୋଟିଏ ବର୍ଷ ଆମ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରିଥିଲେ । ତାଙ୍କ ସମୟରେ ବିଶ୍ୱବିଦ୍ୟାଳୟର କୌଣସି ପ୍ରଗତି ହୋଇ ନ ଥିଲା । କେବଳ ଆଗରୁ ସ୍ଥିର ହୋଇଥିବା ଭାରତୀୟ ବିଜ୍ଞାନ କଂଗ୍ରେସର ବାର୍ଷିକ ଅଧିବେଶନ ୧୯୭୭ ମସିହା ଜାନୁଆରୀ ମାସରେ ଆମ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହୋଇଥିଲା । ଅଧ୍ୟାପକ ମାଥୁର ୧୯୭୭ ମସିହା ଜୁଲାଇ ମାସ ୯ ତାରିଖରେ ବିଦାୟ ନେଲେ ଏବଂ ସେହିଦିନ ଠାରୁ ସେପ୍ଟେମ୍ବର ମାସ ୧୩ ତାରିଖ ପର୍ଯ୍ୟନ୍ତ ରାଜ୍ୟର ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଅଧ୍ୟାପକ ବିଧୁଭୂଷଣ ଦାସ ତାଙ୍କ ନିଜ କାର୍ଯ୍ୟ ସହ ବିଶ୍ୱବିଦ୍ୟାଳୟର କୁଳପତି କାର୍ଯ୍ୟ ଦାୟିତ୍ୱ ବହନ କରିଥିଲେ । ୧୯୭୭ ମସିହା ସେପ୍ଟେମ୍ବର ମାସ ୧୪ ତାରିଖ ଠାରୁ ମୁଁ ତିନି ବର୍ଷ ପାଇଁ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ନିଯୁକ୍ତ ହୋଇଥିଲି ।

ସେତେବେଳକୁ ମୁଁ କ୍ୟାମ୍ପସ୍‌ରେ ପନ୍ଦର ବର୍ଷ ଦୁଇମାସ ରହି ସାରିଥିଲି ଏବଂ ସାହିପଡ଼ିଶା ହିସାବରେ ସବୁ କ୍ୟାମ୍ପସ ବାସିନ୍ଦାଙ୍କ ସାମାଜିକ ଜୀବନ ଏବଂ ସୁଖଦୁଃଖର

ଭାଗୀ ହୋଇଥିଲି । ବିଶ୍ୱବିଦ୍ୟାଳୟର ପ୍ରଫେସର ଏବଂ କ୍ୟାମ୍ପସ ବାସିନ୍ଦାମାନଙ୍କ ମଧ୍ୟରେ ମୁଁ ପ୍ରଥମେ କୁଳପତି ହୋଇଥିଲି । ତା ପୂର୍ବରୁ ପ୍ରାୟ ତିରିଶ ବର୍ଷ କାଳ ମୁଁ ବିଶ୍ୱବିଦ୍ୟାଳୟର ଶିକ୍ଷା ଏବଂ ପ୍ରଶାସକ କାର୍ଯ୍ୟ ସହିତ ଓତପ୍ରୋତ ଭାବରେ ଜଡ଼ିତ ଥିବାରୁ ଏବଂ ଛଅ ବର୍ଷକାଳ ସିଣ୍ଡିକେଟ୍‌ର ସଭ୍ୟ ଥିବାରୁ, ବିଶ୍ୱବିଦ୍ୟାଳୟର ସବୁ ସମସ୍ୟା ଏବଂ ବିଭିନ୍ନ ଶ୍ରେଣୀର କର୍ମଚାରୀମାନଙ୍କର ଅଭାବ ଅସୁବିଧା ସବୁ ଜାଣିଥିଲି । ସଦାଶିବବାବୁ, ରମାନାଥବାବୁ, ଘନଶ୍ୟାମ ମହାପାତ୍ର ଏବଂ ଜ୍ଞାନଚାନ୍ଦ ବିଶ୍ୱବିଦ୍ୟାଳୟର ଶାସନ ଦାୟିତ୍ୱରେ ଥିବାବେଳେ ଅନେକ ବିଷୟରେ ସେମାନେ ମୋର ପରାମର୍ଶ ଲୋଡୁଥିଲେ ।

୧୯୭୧ ମସିହାରେ ସଦାଶିବବାବୁ ଇସ୍ତଫା ଦେଇ ବିଶ୍ୱବିଦ୍ୟାଳୟର କୁଳପତି ପଦରୁ ଯିବା ଦିନଠାରୁ ବିଶ୍ୱବିଦ୍ୟାଳୟ କ୍ୟାମ୍ପସରେ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଅଶାନ୍ତ ପରିବେଶ ଲାଗି ରହିଥିଲା । ଏମ୍.ଏ. ଓ ଏମ୍.ଏସ୍‌ସି. ପରୀକ୍ଷା ସବୁ ବର୍ଷ ନଭେମ୍ବର ମାସକୁ ଘୁଞ୍ଚି ଯାଉଥିଲା । ତାହା ଫଳରେ ନାମଲେଖା ଦିନଠାରୁ ଏମ.ଏ., ଏମ୍.ଏସ୍‌ସି. ପରୀକ୍ଷା ଫଳ ବାହାରିବାକୁ ତିନିବର୍ଷ ହୋଇଯାଉଥିଲା । ନୂତନ ପିଲାମାନେ ନାମ ଲେଖାଇବା ପରେ ସାତ ଆଠ ମାସ ଯାଏ ହଷ୍ଟେଲମାନଙ୍କରେ ରହିବାକୁ ସ୍ଥାନ ପାଉ ନ ଥିଲେ । ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ବିଭିନ୍ନ କଲେଜମାନଙ୍କରେ ଆଇ.ଏ. ଏବଂ ବି.ଏ. ପ୍ରଭୃତି ପରୀକ୍ଷାମାନଙ୍କରେ ବ୍ୟାପକ କପି ହେଉଥିଲା । ବିଶ୍ୱବିଦ୍ୟାଳୟର କନ୍‌ଭୋକେସନ୍ ପ୍ରାୟ ପାଞ୍ଚବର୍ଷ ହେଲା ହୋଇ ନ ଥିଲା ଏବଂ ଡିଗ୍ରୀ ସାର୍ଟିଫିକେଟ୍ ଏବଂ ମେଡାଲ ପ୍ରଭୃତି ଛାତ୍ରଛାତ୍ରୀଙ୍କ ମଧ୍ୟରେ ବଣ୍ଟା ଯାଇ ପାରି ନ ଥିଲା । ଏ ସବୁ ନିୟମିତ ଏବଂ ନିୟନ୍ତ୍ରିତ କରିବା ବିଶ୍ୱବିଦ୍ୟାଳୟର ଅତ୍ୟନ୍ତ ଜରୁରୀ କାର୍ଯ୍ୟ ଥିଲା । ଏ ସବୁ ନିୟନ୍ତ୍ରିତ କରିବାକୁ ସେତେବେଳେ ଭାରତର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C) ବିଶ୍ୱବିଦ୍ୟାଳୟମାନଙ୍କରେ ସ୍ନାତକୋତ୍ତର ବିଭାଗମାନଙ୍କରେ ସେମେଷ୍ଟର ପ୍ରଣାଳୀ ପ୍ରବର୍ତ୍ତନ ଏବଂ କଲେଜମାନଙ୍କରେ ବାର୍ଷିକ ପରୀକ୍ଷା ପ୍ରଭୃତି ପରୀକ୍ଷା ସଂସ୍କାର ପଦ୍ଧତି ପ୍ରବର୍ତ୍ତନ କରିବାକୁ ଚାହୁଁଥିଲେ । ଏ ସବୁ ପରୀକ୍ଷା ସଂସ୍କାର ଆମ୍ଭେମାନେ ଆମ ବିଶ୍ୱବିଦ୍ୟାଳୟରେ ପ୍ରବର୍ତ୍ତନ କରିବାକୁ ନିୟମ କରିଥିଲୁ ଏବଂ ସେସବୁ ସଫଳ କରିବାକୁ ଆପ୍ରାଣ ଚେଷ୍ଟା କରିଥିଲୁ । ମାତ୍ର ସାଧାରଣତଃ ନିୟମିତ ଭାବରେ ପଢୁ ନ ଥିବା, ଅମନୋଯୋଗୀ ଏବଂ ପରୀକ୍ଷାଭୟାଳୁ ଛାତ୍ରଛାତ୍ରୀମାନେ ଏ ସଂସ୍କାରର ଘୋର ବିରୋଧ କଲେ । ଫଳରେ ମୋର ପ୍ରଥମ ବର୍ଷ ଶେଷରେ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗମାନଙ୍କରେ ବିରାଟ ଷ୍ଟ୍ରାଇକ୍ ହୋଇଥିଲା । ସେତେବେଳେ ଅବଶ୍ୟ ଆମେ ଦୃଢ଼ ରହି ଷ୍ଟ୍ରାଇକ୍ ବନ୍ଦ କରିଥିଲୁ । ମାତ୍ର ଶେଷରେ ପରବର୍ତ୍ତୀ କାଳରେ ସେ ସଂସ୍କାର ସବୁ ବନ୍ଦ ହୋଇଯାଇ ବର୍ତ୍ତମାନ ପୁରୁଣା ପଦ୍ଧତି ଚାଲିଛି । ସେ ସଂସ୍କାର ସବୁ କାର୍ଯ୍ୟକାରୀ କରିବାକୁ ଆମ ବିଶ୍ୱବିଦ୍ୟାଳୟ ଏବଂ କଲେଜମାନଙ୍କରେ ଆବଶ୍ୟକ ବାତାବରଣ ଓ ପ୍ରଶାସନିକ ସୁବିଧା ନ ଥିଲା । ମାତ୍ର ଏ ସଂସ୍କାର ସବୁ ପ୍ରବର୍ତ୍ତନ କରିବାକୁ ଏବଂ କଲେଜମାନଙ୍କରେ ବ୍ୟାପକ କପି ବନ୍ଦ କରିବାକୁ ମୁଁ

ଦୁଇ ତିନିବର୍ଷ ସଂଗ୍ରାମ କରିଥିଲି । କିନ୍ତୁ ସେଥିରେ ସଫଳ ହୋଇ ନ ଥିଲି । ବିଶ୍ୱବିଦ୍ୟାଳୟର କନ୍‌ଭୋକେସନ୍ କିନ୍ତୁ ନିୟମିତ ହୋଇଯାଇଥିଲା ଏବଂ ଛାତ୍ରଛାତ୍ରୀମାନଙ୍କୁ ସାର୍ଟିଫିକେଟ ସବୁ ବଣ୍ଟାଯାଇ ପାରିଥିଲା ଏବଂ ଡିଗ୍ରୀ ସାର୍ଟିଫିକେଟ ସବୁ ଓଡ଼ିଆ ଓ ଇଂରାଜୀରେ ଲେଖା ହୋଇଥିଲା । ବିଶ୍ୱବିଦ୍ୟାଳୟର ବିଭିନ୍ନ ଶ୍ରେଣୀର କର୍ମଚାରୀମାନଙ୍କର ଅବସର ସମୟ ପରେ ସରକାରୀ କର୍ମଚାରୀମାନଙ୍କ ପରି ପେନ୍‌ସନ୍ ପ୍ରଭୃତି ପାଇବାର ସୁବିଧା ନ ଥିଲା । ତାହାର ସୁବିଧା ମୁଁ କରାଇ ପାରିଥିଲି । କର୍ମଚାରୀମାନଙ୍କର ବାସଗୃହର ଘୋର ଅଭାବ ଥିଲା । ପନ୍ଦର ବର୍ଷ ତଳେ ପ୍ରଥମ ପର୍ଯ୍ୟାୟ ନିର୍ମାଣ ପରେ ଦୁଇ ଚାରିଟା ବାସଗୃହ ବ୍ୟତୀତ ଆଉ ବାସଗୃହ ନିର୍ମାଣ ହୋଇ ନ ଥିଲା କହିଲେ ଚଳେ । ମୋର ବ୍ୟକ୍ତିଗତ ଉଦ୍ୟମରେ କେନ୍ଦ୍ର ସରକାରଙ୍କର ହାଉସିଂ ବୋର୍ଡ୍, ଓଡ଼ିଶା ରାଜ୍ୟର ହାଉସିଂ ବୋର୍ଡ୍ ଏବଂ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଆର୍ଥିକ ସାହାଯ୍ୟରେ ଆମେ ପ୍ରାୟ ଦେଢ଼ଶହ ଅଧ୍ୟାପକ ଓ କର୍ମଚାରୀମାନଙ୍କ ବାସଗୃହ ନିର୍ମାଣ କରିବାକୁ ସଫଳ ହୋଇଥିଲୁ । ଶିକ୍ଷାଦାନୀ ବିଭାଗମାନଙ୍କ ପାଇଁ ଗୃହ ନିର୍ମାଣ ମଧ୍ୟରେ ସ୍ନାତକୋତ୍ତର ଆଇନ ବିଭାଗ ଗୃହର ନିର୍ମାଣ ଶେଷ ହୋଇଥିଲା । ଭୂତତ୍ତ୍ୱ ଗୃହ ନିର୍ମାଣ ଚାଲିଥିଲା ଏବଂ ପତ୍ରବିନିମୟ ଶିକ୍ଷା ବିଭାଗର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା । କ୍ୟାମ୍ପସ୍ ବାସିନ୍ଦାଙ୍କ କଲ୍ୟାଣପାଇଁ କ୍ୟାମ୍ପସ୍ ହାଇସ୍କୁଲ ଗୃହ ବର୍ଦ୍ଧିତ କରି ପ୍ରାଥମିକ ବିଦ୍ୟାଳୟ ଠାରୁ ହାଇସ୍କୁଲ ପର୍ଯ୍ୟନ୍ତ ଗୋଟିଏ ଗୃହରେ ଅବସ୍ଥାପିତ କରାଯାଇପାରିଥିଲା ଏବଂ ସେଥିପାଇଁ ଆଗରୁ ବ୍ୟବହୃତ ହେଉଥିବା ଅଧ୍ୟାପକମାନଙ୍କ ବାସଗୃହ ସବୁ ଖାଲି କରି ଦିଆଯାଇଥିଲା । ଡାକ୍ତରଖାନା ଗୃହ ମଧ୍ୟ ବଢ଼ାଇ ଦିଆଯାଇଥିଲା । କ୍ୟାମ୍ପସ୍ ବାସିନ୍ଦାମାନଙ୍କର ଦୁର୍ଗାପୂଜା ପାଇଁ ପାଣିଟାଙ୍କି ପାଖରେ ଦୁଇ ତିନିଗୋଟି ଛୋଟ କୋଠରି ସହିତ ଗୋଟିଏ ପୂଜାମଣ୍ଡପ ନିର୍ମିତ ହୋଇଥିଲା । କ୍ୟାମ୍ପସ୍‌ର ପୂର୍ବ, ପଶ୍ଚିମ ଓ ଉତ୍ତର ସୀମାରେ ପାଚେରି କରିବା ପାଇଁ ଅର୍ଥ ବରାଦ କରିହେଲା ନାହିଁ । କେବଳ ବେଆଇନ୍ ଅଧିକାର ବନ୍ଦ କରିବାକୁ ଏନ୍.ଏସ୍.ଏସ୍. ଛାତ୍ର ସ୍ୱେଚ୍ଛାସେବକମାନଙ୍କ ଦ୍ୱାରା ତିନିପାଖରେ ନିଅଁ ଖୋଳା ହୋଇ ଯାଇଥିଲା । ସେଥିପାଇଁ ବ୍ୟକ୍ତିଗତ ଭାବରେ ମୋତେ ପୁଲିସ ଏତଲାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ବିଶ୍ୱବିଦ୍ୟାଳୟ ଲାଇବ୍ରେରୀ ସଂଗଠିତ କରିବା ପାଇଁ ରିଡ଼ିଂ ରୁମ୍‌ରେ ଅଧିକ ଚୌକି ଟେବୁଲ ଦିଆଯାଇଥିଲା ଏବଂ ଲାଇବ୍ରେରୀକୁ ପରିଜାଙ୍କ ନାମରେ ନାମିତ କରାହୋଇଥିଲା । ସେଥିପାଇଁ ପରିଜାଙ୍କ କଟକ ବାସଗୃହରେ ଗୋଟିଏ ଛୋଟ ଉତ୍ସବ କରାହୋଇଥିଲା । ମୁଁ କୁଳପତି ହେବାର ପ୍ରାୟ ଆଠ ମାସ ପରେ ପରିଜାଙ୍କର ଦେହାନ୍ତ ହେଲା । ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ରାଜ୍ୟସରକାରଙ୍କ ସହାୟତାରେ ବଟାନି ବିଭାଗରେ ଗୋଟିଏ ଅଧ୍ୟାପକ ଓ ଗବେଷଣା ଫେଲୋସିପ୍ ସୃଷ୍ଟି କରାଯାଇଥିଲା ଏବଂ ପ୍ରତିବର୍ଷ ତାଙ୍କର ସ୍ମାରକୀ ବକ୍ତୃତାମାଳା ପାଇଁ ଅର୍ଥ ବରାଦ କରାହୋଇଥିଲା । ଲାଇବ୍ରେରୀକୁ ସଂପୂର୍ଣ୍ଣରୂପେ ପୁନର୍ଗଠିତ କରି ବହି ଚୋରି

ପ୍ରଭୃତି ବନ୍ଦ କରିବା ପାଇଁ ଏବଂ ଲାଇବ୍ରେରୀକୁ ଛାତ୍ରଛାତ୍ରୀ ଏବଂ ଶିକ୍ଷକମାନଙ୍କ ପାଇଁ ଅଧିକ ଉପଯୋଗୀ କରିବା ପାଇଁ ମୁଁ କଲିକତାର ବ୍ରିଟିଶ୍ କାଉନସିଲ୍ ଏବଂ ଆମେରିକାନ୍ ଇନ୍‌ଫରମେସନ ସର୍ଭିସର ସାହାଯ୍ୟ ଲୋଡ଼ିଥିଲି । ମାତ୍ର ସେଥିରେ ସଫଳ ହୋଇ ନ ଥିଲି ।

କ୍ୟାମ୍ପସ୍‌ରେ ଆଉ ଦୁଇଗୋଟି ନିର୍ମାଣ କାର୍ଯ୍ୟ କରିବାକୁ ମୁଁ ଅତ୍ୟନ୍ତ ଆଗ୍ରହୀ ଥିଲି । ଅଡ଼ିଟୋରିଅମ୍ ପାଖରେ ଗୋଟିଏ ଓପନ୍ ଏୟାର ସଭାସ୍ଥଳ ସ୍ଥାପନ ପାଇଁ ଯୋଜନା କରିଥିଲି । ସେଥିପାଇଁ ସେ ସମୟର ରାଜ୍ୟର ସୂଚନାମନ୍ତ୍ରୀ ଝସକେତନ ସାହୁ ସାଧାରଣ ସଭାରେ ପଚାଶହଜାର ଟଙ୍କା ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ପରେ କିନ୍ତୁ ତାଙ୍କ ବିଭାଗ ସେ ଟଙ୍କା ନ ଦେବାରୁ ସେ ସଭାସ୍ଥଳ ହୋଇପାରି ନ ଥିଲା । ମୁଁ ଆସିବା ପରେ ସେଠାରେ ଗୋଟିଏ ସେପରି ସଭାସ୍ଥଳ ନିର୍ମିତ ହୋଇଛି । ଦ୍ୱିତୀୟରେ ମୁଁ କ୍ୟାମ୍ପସ୍‌ରେ ବାଣୀଭବନ ନାମରେ ଗୋଟିଏ ବଡ଼ ହଲ୍ କରିବାକୁ ଚାହୁଁଥିଲି । ପିଲାନିରେ ବିରଳା କମ୍ପାନୀ ମାର୍ବଲ ପଥରରେ ଗୋଟିଏ ବଡ଼ ସରସ୍ୱତୀ ମନ୍ଦିର ଗଢ଼ିଛନ୍ତି । ବାରାଣସୀ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌ରେ ଗୋଟିଏ ବଡ଼ ବିଶ୍ୱେଶ୍ୱର ମନ୍ଦିର ଅଛି । ସେସବୁ ମୁଁ ଦେଖିଥିଲି । ସେହି ଢାଞ୍ଚାରେ ବାଣୀବିହାରରେ ଗୋଟିଏ ବାଣୀଭବନ ନିର୍ମାଣ କରିବାକୁ ମୁଁ ଇଚ୍ଛା କରୁଥିଲି । ସେଥିପାଇଁ ବିରଳା କମ୍ପାନିକୁ ସାହାଯ୍ୟ ପାଇଁ ଲେଖିଥିଲି । ଅମରସିଂହ ସେତେବେଳେ ଭୁବନେଶ୍ୱରରେ ବିରଳା କମ୍ପାନିର ଯୋଗାଯୋଗ ଅଫିସର ଥିଲେ । ତାଙ୍କୁ ଦିନେ ଆଣି କ୍ୟାମ୍ପସ୍‌ରେ ବୁଲାଇ ବାଣୀବିହାର ପ୍ରଧାନ ଫାଟକର ପଶ୍ଚିମ ପାଖ ପଡ଼ିଆରେ ବାଣୀଭବନ ନିର୍ମାଣ ସ୍ଥାନ ଦେଖାଇଥିଲି । ସେ ଖୁସି ହୋଇ ଏଥିପାଇଁ ଉଦ୍ୟମ କରିବେ ବୋଲି କହିଥିଲେ । ମାତ୍ର ସେ କାର୍ଯ୍ୟ ସଫଳ ହୋଇ ନ ଥିଲା । ତାହା କେବଳ କଳ୍ପନାରେ ରହିଗଲା । ସେହିପରି କ୍ୟାମ୍ପସ୍‌ରେ ଷ୍ଟାଡ଼ିୟମ କରିବା, କ୍ୟାମ୍ପସ୍ ହ୍ରଦକୁ ପରିଷ୍କାର ଏବଂ ବ୍ୟବହାର ଯୋଗ୍ୟ କରିବା ପ୍ରଭୃତି ବହୁ ସ୍ୱପ୍ନ ସ୍ୱପ୍ନରେ ରହିଗଲା । କ୍ୟାମ୍ପସ୍‌ରେ ବିଭିନ୍ନ କାର୍ଯ୍ୟ ପାଇଁ ଅଧିକ ନୂତନ ଗୃହ ନିର୍ମାଣ ମୁଁ ଚାହୁଁଥିଲି । ପୁରୁଣା ଘରଗୁଡ଼ାକୁ ନୂତନ ନାମ ଦେବାକୁ ମୁଁ ଉନ୍ନୟନ କାର୍ଯ୍ୟ ବୋଲି ବିଚାର କରେ ନାହିଁ । ଇଉ.ଜି.ସି.ର ଗୋଟିଏ ସାର୍କୁଲାର ଥିଲା ଯେ ତାଙ୍କ ଅର୍ଥ ସହାୟତାରେ ଯେଉଁ ଘର ସବୁ ନିର୍ମିତ ହେବ, ସେସବୁ କୌଣସି ବ୍ୟକ୍ତିବିଶେଷଙ୍କ ନାମରେ ନାମିତ ହେବ ନାହିଁ । ସେଥିଯୋଗୁଁ ଛାତ୍ରାବାସ ନାମ ସବୁ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଏବଂ ଅଡ଼ିଟୋରିୟମ୍‌ର ନାମ ବିଶ୍ୱବିଦ୍ୟାଳୟ ଅଡ଼ିଟୋରିୟମ ହୋଇଥିଲା । ଆମ ସମୟ ପରେ ସେଗୁଡ଼ିକ ଉତ୍କଳର ବରପୁତ୍ରଙ୍କ ନାମରେ ନାମିତ ହୋଇଅଛି । ସେଥିରେ କିଛି କ୍ଷତି ନାହିଁ । କିନ୍ତୁ ମୋ ବିଚାରରେ ତାହା ଉନ୍ନୟନ କାର୍ଯ୍ୟ ନୁହେଁ । ନୂତନ ଗୃହ ନିର୍ମାଣ କରି ନୂତନ ନାମ ଦେବା ଶ୍ରେୟସ୍କର ।

ସଦାଶିବବାବୁଙ୍କ ବିଦାୟ ନେବା ସମୟରୁ ମୋ ସମୟ ପର୍ଯ୍ୟନ୍ତ କ୍ୟାମ୍ପସ୍‌ରେ ଷ୍ଟ୍ରାଇକ୍, ଘେରାଉ ପ୍ରଭୃତିର ବିରାମ ନ ଥିଲା କିମ୍ବା ବିଶ୍ୱବିଦ୍ୟାଳୟ ଅଧୀନ ବିଭିନ୍ନ କଲେଜରେ

ବ୍ୟାପକ କପି ବନ୍ଦ ହୋଇ ନ ଥିଲା । ମୁଁ ତିନିବର୍ଷ କୁଳପତି ଥିବା ସମୟରେ ସେମେଷ୍ଟର ପ୍ରଣାଳୀ ବନ୍ଦ କରିବା ପାଇଁ, ପରୀକ୍ଷାମାନଙ୍କର ତାରିଖ ଘୁଞ୍ଚାଇବା ପାଇଁ, କପି ପାଇଁ ପରୀକ୍ଷା ବାତିଲ୍ ନ କରିବା ପାଇଁ, ବିଭିନ୍ନ ଦଳ ଛାତ୍ରମାନଙ୍କ ମଧ୍ୟରେ ସଂଘର୍ଷ ପାଇଁ, ବିଭିନ୍ନ ବିଭାଗ ଓ କଲେଜର ପିଲାମାନଙ୍କ ଦ୍ୱାରା ବହୁଥର ଗଣ୍ଡଗୋଳ ଏବଂ ଘେରାଉ ହେଉଥିଲା । ବିଶେଷତଃ ଛାତ୍ର ଇଉନିୟନ ନିର୍ବାଚନବେଳେ ସେସବୁ ଗଣ୍ଡଗୋଳ ବେଶୀ ହୁଏ । ସେଗୁଡ଼ିକ ମୋର ଦେହସୁହା ହୋଇଯାଇଥିଲା । ସେଗୁଡ଼ିକ ବୃତ୍ତିଗତ ବିପଦ ବୋଲି ମୁଁ ଭାବୁଥିଲି । ସମୁଦ୍ରରେ ମାଛ ଧରିବାକୁ ଗଲେ ଢେଉର ଆଘାତ ସହିବା ସ୍ୱାଭାବିକ ।

ଏହିପରି ଘାତପ୍ରତିଘାତ ଏବଂ ଶାନ୍ତ ଅଶାନ୍ତ ପରିବେଶ ମଧ୍ୟରେ ତିନିବର୍ଷ ବିତି ଯାଇଥିଲା । ସେହି ପରିବେଶ ମଧ୍ୟରେ ଉନ୍ନୟନ କାର୍ଯ୍ୟ ଏବଂ ନିୟମିତ ଶିକ୍ଷା କାର୍ଯ୍ୟମାନ ହୋଇଥିଲା । ସେହି ସମୟ ମଧ୍ୟରେ ମୁଁ କାନାଡ଼ାରେ କମନଓ୍ୱେଲଥ ବିଶ୍ୱବିଦ୍ୟାଳୟମାନଙ୍କର କୁଳପତିମାନଙ୍କର କନ୍‌ଫରେନ୍ସରେ ଯୋଗ ଦେବାକୁ ଯାଇଥିଲି ଏବଂ ଏକମାସ ଯୁକ୍ତରାଷ୍ଟ୍ର ଆମେରିକାର ପ୍ରଧାନ ବିଶ୍ୱବିଦ୍ୟାଳୟମାନ ବୁଲି ଦେଖିଥିଲି । ସେହି ସମୟରେ ମଧ୍ୟ ପାଟିଆଲା, ରାଜକୋଟ, ବର୍ଦ୍ଧମାନ ପ୍ରଭୃତି ବିଶ୍ୱବିଦ୍ୟାଳୟରେ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କର ଆସୋସିଏସନର କୁଳପତିମାନଙ୍କର କନ୍‌ଫରେନ୍ସରେ ଯୋଗ ଦେଇଥିଲି । ସେହି ସମୟ ମଧ୍ୟରେ ଭାରତର ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ଆମ ବିଶ୍ୱବିଦ୍ୟାଳୟର କନ୍‌ଭୋକେସନ୍‌ରେ ଭାଷଣ ଦେଇଥିଲେ । କେନ୍ଦ୍ର ସରକାରଙ୍କର ବହୁ ମନ୍ତ୍ରୀ ଏବଂ କମନଓ୍ୱେଲଥ ବିଶ୍ୱବିଦ୍ୟାଳୟମାନଙ୍କର ଆସୋସିଏସନର ସେକ୍ରେଟାରୀ, ଇଉ.ଜି.ସି. ଚେୟାରମ୍ୟାନ୍ ପ୍ରଭୃତି ଆମ ବିଶ୍ୱବିଦ୍ୟାଳୟ ପରିଦର୍ଶନରେ ଆସିଥିଲେ ଏବଂ ଭାରତୀୟ ଇତିହାସ କଂଗ୍ରେସର ବାର୍ଷିକ ଅଧିବେଶନ ଆମ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହୋଇଥିଲା । ସେହି ସମୟ ମଧ୍ୟରେ ଡକ୍ଟର ପରିଜା ଏବଂ ପ୍ରଫେସର ସାଧୁଚରଣ ଦାସଙ୍କ ଦେହାନ୍ତ ହୋଇଥିଲା ଏବଂ ଗଣିତ ଅଧ୍ୟାପକ ଡକ୍ଟର ଶଙ୍କର ପ୍ରସାଦ ମିଶ୍ରଙ୍କର ଦୁର୍ଘଟଣାରେ ଅକାଳରେ ବିୟୋଗ ହୋଇଥିଲା । ତିନିବର୍ଷର ଶେଷ ପର୍ଯ୍ୟାୟରେ ମୋର ମନ ତିକ୍ତ ହୋଇଯାଇଥିଲା । ମୁଁ ଅନୁଭବ କରୁଥିଲି ଯେ ବିଶ୍ୱବିଦ୍ୟାଳୟର ସମସ୍ତ ଉନ୍ନୟନ କାର୍ଯ୍ୟ ରାଜ୍ୟ ସରକାର ଏବଂ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଆର୍ଥିକ ସାହାଯ୍ୟ ଉପରେ ନିର୍ଭର କରେ । ସେ ସବୁର ଅଭାବରୁ କଳ୍ପିତ ଉନ୍ନୟନ କାର୍ଯ୍ୟ କରି ହେଉ ନ ଥିଲା । ବିଶ୍ୱବିଦ୍ୟାଳୟର ଶୃଙ୍ଖଳା, ଶିକ୍ଷା ଓ ପରୀକ୍ଷା ପଦ୍ଧତିର ପୁନର୍ଗଠନ ଏବଂ ଉନ୍ନତି ଛାତ୍ରଛାତ୍ରୀମାନଙ୍କର ସହଯୋଗ ଏବଂ ରାଜ୍ୟ ସରକାରଙ୍କର ମନୋଭାବ ଉପରେ ନିର୍ଭର କରେ । ସେଗୁଡ଼ିକର ଅଭାବ ହେତୁ ସେ ଦିଗରେ ବିଶେଷ ପ୍ରଗତି ହୋଇ ପାରୁ ନ ଥିଲା । ବିଶ୍ୱବିଦ୍ୟାଳୟ କ୍ୟାମ୍ପସରେ ମୁଁ ଆଗରୁ ବହୁକାଳ ରହିଥିଲି ଏବଂ ସବୁ ବାସିନ୍ଦା ମୋର ପ୍ରିୟ ଥିଲେ । କୁଳପତି ଭାବରେ ମୁଁ ଅନେକ ଲୋକଙ୍କର ଅଯୌକ୍ତିକ ଆଶା ପୂରଣ କରିବାକୁ

ସମର୍ଥ ନ ଥିଲି । ଏ ସମସ୍ତ ବିଷୟ ଏବଂ ପିଲାମାନଙ୍କର ଘନ ଘନ ଅହେତୁକ ଗଣ୍ଡଗୋଳ ମୋ ମନକୁ ତିକ୍ତ ଏବଂ ଜର୍ଜରିତ କରିଥିଲା । ମୁଁ ଦ୍ୱିତୀୟଥର କୁଳପତି ହେବାକୁ ଇଚ୍ଛା କରି ନ ଥିଲି । ନିର୍ଦ୍ଧାରିତ ତିନି ବର୍ଷ ସମୟ ପୂରିବା ପୂର୍ବରୁ ଦୁଇମାସ ଛୁଟି ନେଇ ମୁଁ ବିଶ୍ୱବିଦ୍ୟାଳୟ କାର୍ଯ୍ୟ ଏବଂ ବାଣୀବିହାରରୁ ବିଦାୟ ନେଇଥିଲି । ବାଣୀବିହାରରେ ମୁଁ ଅଠରବର୍ଷ ରହିଥିଲି । ମୋ ଜୀବନରେ ମୁଁ ଅନ୍ୟ ଯେଉଁ ସ୍ଥାନମାନଙ୍କରେ କାର୍ଯ୍ୟ କରିଥିଲି, ସେସବୁ ସ୍ଥାନ ଅପେକ୍ଷା ବାଣୀବିହାରରେ ରହିବା କାଳ ଅଧିକ ଥିଲା । ସେହି ସ୍ଥାନରେ ବହୁ ବନ୍ଧୁ ମେଳରେ ମୋର ଜୀବନର ବହୁ ସୁଖଦୁଃଖର ସ୍ମୃତି ଜୀବନର ଶେଷ ପର୍ଯ୍ୟନ୍ତ ରହିଛି ।

# ସ୍ରୋତର ଶେଷଧାର ଓ ଜଗତ୍‌ସିଂହପୁର କଲେଜ

ବିଶ୍ୱର ବହୁଦେଶର ସାହିତ୍ୟରେ ମନୁଷ୍ୟ ଜୀବନକୁ ଏକ ନଦୀସ୍ରୋତ ସହିତ ଏବଂ ମୃତ୍ୟୁକୁ ମହାସିନ୍ଧୁ ସହିତ ତୁଳନା କରାଯାଇଛି । ନଦୀସ୍ରୋତ ନିର୍ଜନ ଗିରିକନ୍ଦରରୁ ଜାତ ହୋଇ ବିଭିନ୍ନ ପଥରେ ବହୁଜନପଦ ମଧ୍ୟରେ ଗତି କରି ଶେଷରେ ସିନ୍ଧୁ ଶରୀରରେ ଲୀନ ହୋଇଯାଏ । ପ୍ରତ୍ୟେକ ମନୁଷ୍ୟ ସେହିପରି ଜୀବନର ଗତିପଥରେ ବହୁପ୍ରକାର ପରିସ୍ଥିତି ମଧ୍ୟଦେଇ ଗତିକରି ବହୁପ୍ରକାର କାର୍ଯ୍ୟକରି ଏବଂ ବହୁଲୋକଙ୍କ ସମ୍ପର୍କରେ ଆସି ଶେଷରେ ମହାକାଳ ଗର୍ଭରେ ଲୀନ ହୋଇଯାଏ । ମନୁଷ୍ୟ ଜୀବନର ଏପରି ଗତି ଚିନ୍ତାକରି ଇଂରେଜ କବି ଲର୍ଡ଼ ଟେନିସନ୍ ତାଙ୍କ କ୍ରସିଂ ଦି ବାର (Crossing the Bar) କବିତାରେ ଲେଖିଛନ୍ତି, Sunset and evening star, a clear call for me, may there be no moaning of the bar, when it embark- ଅର୍ଥାତ୍ ସୂର୍ଯ୍ୟ ଅସ୍ତ ହେଲେଣି, ସନ୍ଧ୍ୟାତାରା ଦିଶିଲାଣି, ମୋ ପାଇଁ ସ୍ପଷ୍ଟ ବାର୍ତ୍ତା ଆସିଲାଣି, ମୁଁ ସାଗରବକ୍ଷକୁ ପ୍ରବେଶ କରିବାବେଳକୁ ପ୍ରବେଶ ପଥରେ ଦୁଃଖସୂଚକ ସାଗର ଗର୍ଜନ ଶବ୍ଦ ନ ହେଉ । ସେହିପରି ଚିନ୍ତାକରି ଭକ୍ତକବି ମଧୁସୂଦନ ରାଓ ତାଙ୍କ 'ଜୀବନ ଚିନ୍ତା' ପଦ୍ୟରେ ଲେଖିଛନ୍ତି

୧

ରେ ଆତ୍ମନ୍ ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ କର କର ନିରୀକ୍ଷଣ
ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କିପରି
ଭେଟିବାକୁ ମୃତ୍ୟୁ-ସିନ୍ଧୁ କରାଳ ଲହରୀ

୨

କି ବେଗରେ ଯାଉଅଛି ଚାଲି
ସେହି ସ୍ରୋତ ସଙ୍ଗେ ଭାସି, ଜୀବନର ସୁଖରାଶି
ଯାହାର ସ୍ମରଣେ ନର ଶୋକୋଚ୍ଛ୍ୱାସ ଢାଳି
ଅତୀତକୁ ଉଦ୍‌ବୋଧଇ ବୃଥା ଭାଳି ଭାଳି

୩

ସ୍ୱପ୍ନସମ ନିଦ୍ରା ପାରାବାରେ
କ୍ଷଣକେ ହୁଅଇ ଲୀନ ଗର୍ବ ଦମ୍ଭ ଅଭିମାନ
ସଂସାରର ଆଡ଼ମ୍ବର ବୁଦ୍‌ବୁଦ ଆକାରେ
ସକଳ ଗ୍ରାସଇ କାଳମୁଖ ନିର୍ବିଚାରେ

୪

ସେ ସିନ୍ଧୁ ତରଙ୍ଗ ମୁଖ ପ୍ରତି
ଆକୃଷ୍ଟ ଅଦୃଶ୍ୟ ଭାବେ ହେଉଅଛି ସବୁ ଭବେ
ମୃଦୁ ନିର୍ଝରିଣୀ, ମହାବେଗା ସ୍ରୋତସ୍ୱତୀ
ସୁଦୀନ ମନୁଷ୍ୟ, ମହାଯଶା ମହୀପତି

ସେ ତାଙ୍କର 'ନଦୀପ୍ରତି' କବିତାରେ ଆଦ୍ୟରେ ଓ ଶେଷରେ ଲେଖିଛନ୍ତି —

ଗିରିବର ନନ୍ଦିନୀ ଅଟୁ ତୁହି ତଟିନୀ
ଗଭୀର ଗହ୍ୱର ଗର୍ଭରେ
ଥିଲୁ ତୁ ଗର୍ଭାବାସେ ନିର୍ଲୋକେ ଅପ୍ରକାଶେ
ଲୋକ ଲୋଚନ ଅଗୋଚରେ

ଚାହୁଁ ଚାହୁଁ ସୁନୀଳ ସାଗରେ ତୋ ସଲିଳ
ଦେଲୁ ତୁ ଢାଳି ମହାପୁରେ
ଅନନ୍ତ ସିନ୍ଧୁ ସଙ୍ଗେ ମିଶିଗଲୁ କି ରଙ୍ଗେ
ସକଳ ଭେଦ ଫିଙ୍ଗି ଦୂରେ

୧୯୮୦ ମସିହାର ଅଗଷ୍ଟ ମାସ ଶେଷରେ ବାଣୀବିହାରରୁ ବିଦାୟ ନେବାବେଳେ ମୋ ମନରେ ମନୁଷ୍ୟ ଜୀବନର ଏହି ଅନିବାର୍ଯ୍ୟ ଚିରନ୍ତନ ଗତି ଓ ପରିଣତିର ଭାବ ଉଦ୍ରେକ ହୋଇଥିଲା । ମୁଁ ଚିନ୍ତା କରୁଥିଲି, ମୋ ଜୀବନସ୍ରୋତର ଶେଷ ପର୍ଯ୍ୟାୟ ଆସିଗଲା । ଏହାପରେ ମୁଁ ଧୀରେ ଧୀରେ ମୃତ୍ୟୁ ପଥରେ ଯାତ୍ରା କରିବି । ସେତେବେଳେ ମୋର ମନର ଭାବ ତିକ୍ତ ଥିଲା କାରଣ ମୋର କାର୍ଯ୍ୟ କରିବାର ଶକ୍ତି ହ୍ରାସ ପାଇ ନ ଥିଲା, କିନ୍ତୁ ବହୁ ବାଧାବିଘ୍ନ ହେତୁ ମୁଁ ମୋର ଈପ୍ସିତ କାର୍ଯ୍ୟ କରି ପାରୁ ନ ଥିଲି । ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟବାର କୁଳପତି ହେବାକୁ ଇଚ୍ଛା କରୁ ନ ଥିଲି । ସେଥିଯୋଗୁଁ ମୋର ବହୁ ବନ୍ଧୁ,

ଶିକ୍ଷାମନ୍ତ୍ରୀ ଏବଂ ସମାଜ ସମ୍ପାଦକ ପୂଜ୍ୟ ରାଧାନାଥ ରଥ ଏବଂ ଡକ୍ଟର ମହତାବଙ୍କ ବାରଣ ସତ୍ତ୍ୱେ ସମୟ ଶେଷ ହେବାର ଦୁଇମାସ ପୂର୍ବରୁ ଛୁଟି ନେଇଥିଲି । ଶେଷ ଜୀବନ ଶାନ୍ତିରେ କଟାଇବାପାଇଁ ବିଶ୍ୱବିଦ୍ୟାଳୟରୁ ପ୍ରାୟ ଅଠର ବର୍ଷ ପରେ ବିଦାୟ ନେଇ ନିକଟସ୍ଥ ସହିଦନଗରରେ ନିଜ ବାସଗୃହରେ ବାସ କରିବାକୁ ଆସିଲି । କିନ୍ତୁ ସେତେବେଳେ ଶାନ୍ତିରେ ରହିବା ଯୋଗ ମୋର ନ ଥିଲା । ଆଉ କେତେବର୍ଷ ଅଶାନ୍ତି ଭୋଗ କରିବାକୁ ଥିଲା ।

ମୁଁ ଅବସର ଗ୍ରହଣ କରିବାର କେତେମାସ ପରେ ଦିନେ ରାଜ୍ୟର ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଜଗତ୍‌ସିଂହପୁରର ସ୍ୱାମୀ ବିବେକାନନ୍ଦ କଲେଜର ଗଭର୍ଣ୍ଣିଂ ବଡ଼ିର ପ୍ରେସିଡେଣ୍ଟ ହେବାପାଇଁ ମୋର ସମ୍ମତି ମାଗିଲେ । ସେତେବେଳେ ମୋର ବନ୍ଧୁ ଡକ୍ଟର ଶ୍ରୀନିବାସ ସାହୁ ଉଚ୍ଚଶିକ୍ଷା ନିର୍ଦ୍ଦେଶକ ଥିଲେ ଏବଂ ଶ୍ରୀ ଗଙ୍ଗାଧର ମହାପାତ୍ର ଶିକ୍ଷାମନ୍ତ୍ରୀ ଥିଲେ । ଜଗତ୍‌ସିଂହପୁର କଲେଜ ଆମ ଗାଁପାଖ କଲେଜ ଏବଂ ୧୯୬୫ ମସିହାରୁ ସେ କଲେଜ ଆରମ୍ଭ ହୋଇ ସେତେବେଳକୁ ଗୋଟିଏ ବୃହତ୍ ବେସରକାରୀ କଲେଜ ହୋଇଥିଲା । ମୁଁ କୁଳପତି ହେବା ପୂର୍ବରୁ ବିଶ୍ୱବିଦ୍ୟାଳୟର ପ୍ରତିନିଧି କିମ୍ବା ସ୍ଥାନୀୟ ଲୋକଙ୍କ ଇଚ୍ଛାରେ ପ୍ରାୟ ଦଶବର୍ଷ ସେ କଲେଜ ଗଭର୍ଣ୍ଣିଂବଡ଼ିର ସଭ୍ୟ ଥିଲି । ସ୍ୱର୍ଗୀୟ ଶ୍ରୀପତି ନନ୍ଦ ସେ କଲେଜର ପ୍ରଧାନ ଉଦ୍ୟୋକ୍ତା ଥିଲେ ଏବଂ ସେ କଲେଜ ଆରମ୍ଭରୁ ପ୍ରାୟ ବାରବର୍ଷ ସେ କଲେଜର ସଂପାଦକ ଥିଲେ । କହିବାକୁ ଗଲେ ସେ କଲେଜକୁ ଗଢ଼ିଥିଲେ ଏବଂ ଆମ୍ଭେମାନେ ଯଥାସାଧ୍ୟ ତାଙ୍କ କାର୍ଯ୍ୟରେ ସାହାଯ୍ୟ କରୁଥିଲୁ । ସ୍ୱର୍ଗତ ବୀରେନ୍ ମିତ୍ର ଅନେକ ବର୍ଷ ସେ କଲେଜର ଗଭର୍ଣ୍ଣିଂବଡ଼ିର ସଭାପତି ଥିଲେ । ଅବସର ଗ୍ରହଣ ପରେ ସଦାଶିବବାବୁ ମଧ୍ୟ ପ୍ରାୟ ତିନିବର୍ଷ ସେ କଲେଜ ଗଭର୍ଣ୍ଣିଂବଡ଼ିର ସଭାପତି ଥିଲେ । ମୁଁ ସେତେବେଳେ ଗଭର୍ଣ୍ଣିଂବଡ଼ିର ସଭ୍ୟ ଥିଲି । ମୁଁ ବିଶ୍ୱବିଦ୍ୟାଳୟରୁ ଅବସର ନେବାପୂର୍ବରୁ ଶ୍ରୀପତିବାବୁ ସେ କଲେଜର ସଂପାଦକ ପଦ ଛାଡ଼ିଦେଇଥିଲେ । ସେ କଲେଜ ଆମ ଗାଁ ପାଖ କଲେଜ ହୋଇଥିବାରୁ ଏବଂ ବହୁବର୍ଷ ସେ କଲେଜ ସହିତ ମୋର ସମ୍ପର୍କ ଥିବାରୁ ମୁଁ ଶ୍ରୀନିବାସବାବୁଙ୍କ ପ୍ରସ୍ତାବରେ ରାଜି ହୋଇଗଲି ।

ହାଇସ୍କୁଲରେ ପଢ଼ିବାବେଳଠାରୁ, ଆମ ଗାଁପାଖରେ ସ୍କୁଲ କଲେଜ ପ୍ରତିଷ୍ଠାର ଉଦ୍ୟମରେ ମୋର ସର୍ବଦା ଆଗ୍ରହ ଥିଲା । ଆମ ପିଲାଦିନେ ଆମ ଗାଁରେ କିମ୍ବା ଗାଁ ପାଖରେ ମାଇନର ସ୍କୁଲ ନ ଥିବାରୁ ଆମ ଗାଁ ପିଲାମାନେ ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ପଢ଼ିସାରିବା ପରେ ଆଉ ଉପରକୁ ପଢ଼ି ପାରୁ ନ ଥିଲେ । ଅତି ଅଳ୍ପ ପିଲା ଦୂରରେ ଥିବା ମାଇନର ସ୍କୁଲମାନଙ୍କରେ ପଢ଼ିବାକୁ ଯାଇପାରୁଥିଲେ, ମୋର ମଧ୍ୟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପଢ଼ିସାରିବା ପରେ ପଢ଼ା ବନ୍ଦ ହୋଇଥିଲା । ପରେ ମୁଁ ବାରମାଇଲ ଦୂରରେ ଥିବା ପଞ୍ଚପଲ୍ଲୀ ମାଇନର ସ୍କୁଲରେ ପଢ଼ିବାକୁ ଯାଇଥିଲି । ମୁଁ କଟକରେ ହାଇସ୍କୁଲରେ ପଢ଼ିବା ସମୟରେ ଆମ ଗାଁର କେତେକ ନେତୃସ୍ଥାନୀୟ ଲୋକ ଗାଁରେ

ଗୋଟିଏ ମାଇନର ସ୍କୁଲ ପ୍ରତିଷ୍ଠା କରିବାକୁ ଉଦ୍ୟମ କଲେ । ଗ୍ରୀଷ୍ମ ଛୁଟିରେ ସ୍କୁଲ ବନ୍ଦଥିବା ସମୟରେ ମୁଁ ମଧ ତାଙ୍କ ସହିତ ମିଶି ଆମ ଗାଁ ଓ ପଡ଼ୋଶୀ ଗାଁମାନଙ୍କରୁ ସ୍କୁଲ ପାଇଁ ଚାନ୍ଦା ଆଦାୟ କରୁଥିଲି । ସେହି ସମୟରେ ପ୍ରାୟ ୧୯୩୩-୩୪ ମସିହାରେ ଆମ ଗାଁରେ ମାଇନର ସ୍କୁଲ ପ୍ରତିଷ୍ଠା ହୋଇଥିଲା । ପରେ ୧୯୪୫-୪୬ ମସିହା ବେଳକୁ ମୁଁ ସମ୍ବଲପୁର କଲେଜରେ ଚାକିରି କରୁଥିବାବେଳେ, ସେ ସ୍କୁଲ ହାଇସ୍କୁଲ ହୋଇଥିଲା । ସେତେବେଳେ ମଧ ମୁଁ ସେ ସ୍କୁଲକୁ କିଛି ଅର୍ଥ ସାହାଯ୍ୟ ଦେଇଥିଲି ଏବଂ ସେ ସ୍କୁଲ ପାଇଁ ଚାନ୍ଦା ଆଦାୟ କାର୍ଯ୍ୟରେ ସାହାଯ୍ୟ କରୁଥିଲି । ୧୯୫୫ ମସିହାରେ ମୁଁ ଲଣ୍ଡନରୁ ଫେରିବା ପରେ ଦେଖିଲି ଯେ ସେ ସ୍କୁଲର ପରିଚାଳନା ସମିତିରେ ବହୁ ବାଦାନୁବାଦ ଓ କଳହ ଲାଗିଛି । ଦିନେ ରାତିରେ କେହି ଜଣେ ଦୁଷ୍ଟଲୋକ ସ୍କୁଲ ଘରେ ନିଆଁ ଲଗାଇ ଦେବାରୁ ଘରଟା ପୋଡ଼ିଗଲା । ସତ୍ୟବାଦୀ ବନବିଦ୍ୟାଳୟଠାରୁ ପଞ୍ଚପଲ୍ଲୀ ମାଇନର ସ୍କୁଲପର୍ଯ୍ୟନ୍ତ ଗାଁ ସ୍କୁଲମାନଙ୍କରେ ଏପରି ବାଦବିବାଦ ଓ ଘରପୋଡ଼ି ସାଧାରଣ କଥା ଥିଲା । ଆମ ଗାଁ ସ୍କୁଲଟା ପୋଡ଼ିଯିବାରୁ ଆମେ ସମସ୍ତେ ବ୍ୟସ୍ତ ହେଲୁ । ମୋତେ ସେତେବେଳେ ଗାଁର ଅନେକ ଲୋକ ସ୍କୁଲର ସଂପାଦକ ହେବାକୁ ଅନୁରୋଧ କଲେ । ମୁଁ ଗାଁରେ ନ ରହି କଟକରେ ରହୁଥିବାରୁ ଗାଁ ସ୍କୁଲରେ ସଂପାଦକ ହେବାକୁ ଅନିଚ୍ଛୁକ ଥିଲି । ତଥାପି ଗାଁର ହିତ ଦୃଷ୍ଟିରୁ ମୁଁ ସେ ସ୍କୁଲର ସଂପାଦକ ହେଲି ଏବଂ ସେହି ପଦରେ ପ୍ରାୟ ତିନିବର୍ଷ ରହିଥିଲି । ଆମେ ସ୍କୁଲର ହେଡ୍‌ମାଷ୍ଟରଙ୍କୁ ବଦଳାଇ ଦେଇ ଆଉ ଜଣେ ଦକ୍ଷ ହେଡ୍‌ମାଷ୍ଟର ଆଣିଲୁ । ସେ ମୋର ପରାମର୍ଶରେ ସ୍କୁଲର ସବୁ କଥା ବୁଝିଲେ । ସ୍କୁଲ ପରିଚାଳନାରେ କଳିଗୋଳ ବନ୍ଦ ହୋଇଗଲା । ଶିକ୍ଷକମାନଙ୍କ ମଧରେ ମଧ ବାଦବିବାଦ ବନ୍ଦ ହେଲା ଏବଂ ସ୍କୁଲରେ ଶୃଙ୍ଖଳା ପ୍ରତିଷ୍ଠିତ ହେଲା ।

ମାତ୍ର ସଂପାଦକ ହୋଇ ମୁଁ ଦେଖିଲି ଯେ ସ୍କୁଲର ସର୍ବନିମ୍ନ ବ୍ୟୟଠାରୁ ସ୍କୁଲର ଆୟ ଯଥେଷ୍ଟ କମ୍ ଥିଲା । ସେତେବେଳେ ସ୍କୁଲ ପାଇଁ କୌଣସି ଚାନ୍ଦାଭେଦା ହେଉ ନ ଥିଲା । ଛାତ୍ରଛାତ୍ରୀମାନଙ୍କ ଦରମାରୁ ଆଦାୟ ଅର୍ଥ ଶିକ୍ଷକମାନଙ୍କ ବେତନ ଦେବାକୁ ଅଣ୍ଟୁ ନ ଥିଲା । ତାପରେ ସ୍କୁଲର ଅନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ଏବଂ ସ୍କୁଲ ଗୃହ ନିର୍ମାଣ ଓ ମରାମତି ପ୍ରଭୃତି ପାଇଁ ସବୁବେଳେ ଅର୍ଥ ନିଅଣ୍ଟ ହେଉଥିଲା । ୧୯୫୮ ମସିହା ବେଳକୁ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଶିକ୍ଷାମନ୍ତ୍ରୀ ଥିବା ସମୟରେ ଓଡ଼ିଶାର ସବୁ ଜିଲ୍ଲାରେ ଅନେକ ହାଇସ୍କୁଲ ସରକାରୀ ପରିଚାଳନା ଅଧୀନକୁ ନିଆ ଯାଇଥିଲା । ଶ୍ରୀରାମ ସ୍ୱାମୀ ସେନାପତି ସେତେବେଳେ କଟକରେ ଥିବା କେନ୍ଦ୍ର ସର୍କଲର ସ୍କୁଲ ଇନିସ୍‌ପେକ୍ଟର ଥିଲେ । ସେ ମୋର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ତାଙ୍କ ସାହାଯ୍ୟରେ ଆମ ସ୍କୁଲ ଗୋଟିଏ ସରକାରୀ ପରିଚାଳନା ଅଧୀନ ସ୍କୁଲ ହୋଇଥିଲା । ସେ ଯୋଜନାରେ କୌଣସି ଘରୋଇ ବ୍ୟକ୍ତି ସେପରି ସ୍କୁଲର ସଂପାଦକ ହୋଇ ପାରୁ ନ ଥିଲେ । ମାତ୍ର ପ୍ରତ୍ୟେକ ସେପରି ସ୍କୁଲ ପାଇଁ ସରକାର ମାନେଜିଂ କମିଟି ପରିବର୍ତ୍ତେ ଗୋଟିଏ ପରାମର୍ଶଦାତା କମିଟି ମନୋନୀତ

କରୁଥିଲେ । ମୁଁ ଆମ ଗାଁର ସେ ସ୍କୁଲର ପରାମର୍ଶଦାତା କମିଟିର ବହୁବର୍ଷ ସଭାପତି ଥିଲି । ସେ ସ୍କୁଲ ବର୍ତ୍ତମାନ ଗୋଟିଏ ବଡ଼ ସରକାରୀ ହାଇସ୍କୁଲ ହୋଇଛି ।

୧୯୬୨-୬୩ ମସିହା ବେଳକୁ ଆମ ଗାଁର କେତେକ ଯୁବକ ଗାଁରେ ଗୋଟିଏ ବାଳିକା ହାଇସ୍କୁଲ କରିବାକୁ ଉଦ୍ୟମ କଲେ । ସେମାନେ ପ୍ରଥମେ ଗୋଟିଏ ଦୁଇଟି ଶ୍ରେଣୀ ଆରମ୍ଭ କରି ସ୍କୁଲର ଗୋଟିଏ ମାନେଜିଂ କମିଟି ଗଠନ କଲେ ଏବଂ ମୋତେ ତାହାର ସଭାପତି ହେବାକୁ ଅନୁରୋଧ କଲେ । ସେତେବେଳକୁ ଆମ ଗାଁରୁ ପ୍ରାୟ ଏକମାଇଲ ଦୂର ଗୋଟିଏ ପଡ଼ୋଶୀ ଗ୍ରାମରେ ଗୋଟିଏ ବାଳିକା ହାଇସ୍କୁଲ ଆରମ୍ଭ ହୋଇଥିଲା । ଆମ ଗାଁ ବାଳିକା ହାଇସ୍କୁଲ ତାହା ସହିତ ପ୍ରତିଯୋଗିତା କରୁଥିବାରୁ ମୁଁ ତାହାର ମାନେଜିଂ କମିଟିର ସଭାପତି ହେବାକୁ ଅନିଚ୍ଛୁକ ଥିଲି । ତଥାପି ଗାଁ ଯୁବକମାନଙ୍କର ଅନୁରୋଧ ଏଡ଼ି ନ ପାରି ସେ ମାନେଜିଂ କମିଟିର ସାତ ଆଠ ବର୍ଷ ସଭାପତି ହୋଇଥିଲି । ଆମ ପଡ଼ୋଶୀ ଗାଁର ଏବଂ ଆମ ଗାଁର ଦୁଇଟିଯାକ ବାଳିକା ହାଇସ୍କୁଲ ବର୍ତ୍ତମାନ ସରକାରୀ ପରିଚାଳିତ ସ୍କୁଲ ହୋଇଛି ଏବଂ ଆମ ଗାଁ ବାଳିକା ସ୍କୁଲରେ ଗୋଟିଏ ଯୁକ୍ତ ଦୁଇ ବାଳିକା କଲେଜ ହୋଇଛି । ଆମ ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ମୋର ଆଗ୍ରହ ଥିବାରୁ ସେ ଅଞ୍ଚଳରେ କୌଣସି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାକୁ ଉଦ୍ୟମ ହେବାବେଳେ ଲୋକମାନେ ମୋର ସାହାଯ୍ୟ ଓ ସମର୍ଥନ ଚାହୁଁଥିଲେ । ଶ୍ରୀପତିବାବୁଙ୍କ ଅନୁରୋଧରେ ପ୍ରାୟ ଦଶବର୍ଷ ମୁଁ ଜଗତ୍‌ସିଂହପୁର କଲେଜର ଗଭର୍ଣ୍ଣିଂବଡ଼ିର ସଭ୍ୟ ଥିଲି ।

୧୯୮୧ ମସିହାରେ, ସରକାର ମୋତେ ତିନିବର୍ଷ ପାଇଁ ସେ କଲେଜର ଗଭର୍ଣ୍ଣିଂବଡ଼ିର ସଭାପତି ରୂପେ ନିଯୁକ୍ତ କରିଥିଲେ । ଗଭର୍ଣ୍ଣିଂବଡ଼ିରେ ଅନ୍ୟମାନଙ୍କ ସହିତ ସେ ନିର୍ବାଚନମଣ୍ଡଳୀର ବିଧାନସଭା ସଦସ୍ୟ, ପାର୍ଲିଆମେଣ୍ଟ ସଦସ୍ୟ ଏବଂ ସେ ଅଞ୍ଚଳର ଜଣେ ପ୍ରତିଷ୍ଠିତ ଲୋକ, ଗଙ୍ଗାଧର ରଥ ସଭ୍ୟ ଥିଲେ । ମୁଁ ସେ କଲେଜକୁ ଯାଇ ଦେଖିଲି ଯେ ଶ୍ରୀପତିବାବୁ ସଂପାଦକ ପଦରୁ ବିଦାୟ ନେବା ପରେ ସେ କଲେଜରେ ବିଶୃଙ୍ଖଳା ଚରମ ସୀମାରେ ପହଞ୍ଚିଥିଲା । ଶ୍ରୀପତିବାବୁ ଶାନ୍ତ ମନରେ ସେ କଲେଜରୁ ବିଦାୟ ନେଇ ନ ଥିଲେ, କଲେଜରେ ବିଶୃଙ୍ଖଳା ଏବଂ ସରକାରଙ୍କ ନୀତିରେ ବିରକ୍ତ ହୋଇ ସେ ସେ କଲେଜ ଛାଡ଼ି ଦେଇଥିଲେ । ମୋ ପୂର୍ବରୁ ବିଧାନସଭା ସଦସ୍ୟ କସ୍ତୁରୀ ମଲିକ କଲେଜ ଗଭର୍ଣ୍ଣିଂବଡ଼ିର ସଭାପତି ଥିଲେ । ମୁଁ ଦେଖିଲି ଯେ କଲେଜ ଅଧ୍ୟାପକମାନେ ସେମାନଙ୍କ ବ୍ୟକ୍ତିଗତ କଳହ ହେତୁ ଦୁଇଟି ମୁଖ୍ୟ ଦଳରେ ବିଭକ୍ତ ହୋଇଥିଲେ ଏବଂ ସେ ଦୁଇଟି ଦଳ ରାଜ୍ୟର ଦୁଇଟି ମୁଖ୍ୟ ରାଜନୈତିକ ଦଳ ସହିତ ସଂଶ୍ଳିଷ୍ଟ ହୋଇଯାଇଥିଲେ । ସେ ଦୁଇଦଳ ମଧ୍ୟରେ ତୀବ୍ର ମତଭେଦ ଥିଲା ଏବଂ ଏହା କଲେଜର ବିଶୃଙ୍ଖଳାର ଗୋଟିଏ ପ୍ରଧାନ କାରଣ ଥିଲା । ଅନେକ ଅଧ୍ୟାପକ କଟକ, ଭୁବନେଶ୍ୱର, ପାରାଦ୍ୱୀପ ଏବଂ ଛତିଆ ପ୍ରଭୃତି ସ୍ଥାନରେ ରହୁଥିଲେ । ଅନେକ ଦିନ ସେ ସ୍ଥାନମାନଙ୍କରୁ ବସ୍‌ରେ ଆସି କଲେଜରେ ଠିକ୍ ସମୟରେ ପହଞ୍ଚିପାରନ୍ତି ନାହିଁ କିମ୍ବା ପଢ଼ାଇବା ଶ୍ରେଣୀରେ ଠିକ୍

ସମୟରେ ଯୋଗ ଦେଇପାରନ୍ତି ନାହିଁ । ସେଥିଯୋଗୁଁ ପିଲାମାନେ ଶ୍ରେଣୀରେ ଗୋଳମାଳ କରନ୍ତି । ଅନେକ ବଡ଼ ବଡ଼ କ୍ଲାସରେ ପିଲାମାନଙ୍କ ପାଇଁ ବସିବାର ଜାଗା ନ ଥାଏ । ଅନୁସଂଧାନ କରି ବୁଝିଲି ଯେ କଲେଜରେ ନାମ ଲେଖାଇଥିବା ପିଲାଙ୍କ ବ୍ୟତୀତ ଚାରିଆଡ଼େ ଥିବା ଗାଁମାନଙ୍କରୁ ବହୁ ଘରୋଇ ପିଲା ଶିକ୍ଷକଙ୍କ ଅନୁମତି ନ ନେଇ କ୍ଲାସରେ ଯୋଗ ଦିଅନ୍ତି । କଲେଜରେ ବିଧିବଦ୍ଧ ଭାବରେ ନାମ ଲେଖାଇଥିବା ପିଲାମାନେ ଜାଗା ନ ପାଇ କ୍ଲାସରେ ଠିଆ ହୁଅନ୍ତି । ବହୁ ପିଲାଙ୍କ ସମାଗମ ହେତୁ କ୍ଲାସରେ ଶୃଙ୍ଖଳା ରହେ ନାହିଁ । ଅନେକ ଅଧ୍ୟାପକଙ୍କୁ କଲେଜ ହତା ମଧ୍ୟରେ ରହିବାଘର ଦିଆଯାଇଥିଲେ ମଧ୍ୟ ସେମାନେ ସେ ଘରକୁ ବାହାର ଲୋକଙ୍କୁ ଦେଇ କଟକ, ଭୁବନେଶ୍ୱର ଓ ପାରାଦ୍ୱୀପ ପ୍ରଭୃତି ସ୍ଥାନରେ ରହୁଥିଲେ । କଲେଜର ଅଧ୍ୟାପକମାନେ କଲେଜ ଇଉନିୟନ କିମ୍ବା ଖେଳ ପ୍ରଭୃତି କାର୍ଯ୍ୟପାଇଁ କଲେଜ ଅଫିସ୍‌ରୁ ହଜାର ହଜାର ଟଙ୍କା ଅଗ୍ରିମ ନେଇ ବର୍ଷ ବର୍ଷ ଧରି ସେ ଖର୍ଚ୍ଚର ହିସାବ କିମ୍ବା ଭାଉଚର କଲେଜ ଅଫିସ୍‌ରେ ଦେଇ ନ ଥିଲେ ଏବଂ ଅନେକ ଅଧ୍ୟାପକଙ୍କ ଉପରେ ସେ ବାବଦରେ ତିରିଶ, ଚାଳିଶ ହଜାର ଟଙ୍କାଯାଏ ବାକି ପଡ଼ୁଥିଲା । କଲେଜର ଆୟବ୍ୟୟ ଅନେକ ବର୍ଷ ହେଲା ଅଡ଼ିଟ୍ ହୋଇ ନ ଥିଲା । ପ୍ରିନ୍ସିପାଲ ଅଧ୍ୟାପକମାନଙ୍କୁ ନିୟମ ମାନି ଶୃଙ୍ଖଳିତ ଭାବରେ କାର୍ଯ୍ୟ କରିବାକୁ ବାଧ୍ୟ କରି ପାରୁ ନ ଥିଲେ । ଅନେକ ଅଧ୍ୟାପକ ପିଲାମାନଙ୍କଠାରୁ ମୋଟା ଚାନ୍ଦା ଆଦାୟ କରି ବି.ଏଡ୍. ଏବଂ ତିନି ଚାରି ବିଷୟରେ ଏମ୍.ଏ. କ୍ଲାସ୍ ଖୋଲିଥିଲେ । ସେଥିପାଇଁ ସରକାର କିମ୍ବା ବିଶ୍ୱବିଦ୍ୟାଳୟରୁ ଅନୁମତି ମିଳି ନ ଥିଲା । ସେମାନେ ଆଦାୟ କରିଥିବା ଅର୍ଥରେ ଶିକ୍ଷକ ଓ ଅଣଶିକ୍ଷକ କର୍ମଚାରୀ ନିଯୁକ୍ତ କରିଥିଲେ ଏବଂ ଉପକରଣ ପ୍ରଭୃତି କିଣିଥିଲେ । ତାର ଭାଉଚର ଏବଂ ହିସାବ କଲେଜ ଅଫିସ୍‌ରେ ନ ଥିଲା କିମ୍ବା ପ୍ରିନ୍ସିପାଲଙ୍କର ସେ ସବୁ କାର୍ଯ୍ୟ ଉପରେ ନିୟନ୍ତ୍ରଣ ନ ଥିଲା ।

କଲେଜର ଘର ନିର୍ମାଣ ପାଇଁ ପ୍ରାୟ ହଜାର ବସ୍ତା ସିମେଣ୍ଟ, ବହୁ ଲୁହା ଛଡ଼ ଓ ଇଟା ପ୍ରଭୃତି କଲେଜରେ ଗଚ୍ଛିତ ହୋଇ ରହିଥିଲା, କଲେଜରେ ଜଣେ ସାମୟିକ ଓଭରସିଅର ନିଯୁକ୍ତ ହୋଇଥିଲେ, ମାତ୍ର ବର୍ଷ ବର୍ଷ ଧରି ନିର୍ମାଣ କାର୍ଯ୍ୟ ବନ୍ଦ ଥିଲା ଏବଂ ସିମେଣ୍ଟ ମୁଣ୍ଡା ହୋଇ ଯାଉଥିଲା । ଶୀଘ୍ର କଲେଜ ଘରର ଗୋଟିଏ ପାଖରେ ଉପର ମାହାଲା ଘର ଶେଷ କରିବାକୁ ପ୍ରିନ୍ସିପାଲଙ୍କୁ ବାଧ୍ୟ କରିବାରୁ ଜଣାଗଲା ଯେ ଅନେକ ଝରକା ଓ କବାଟ ଚଉକାଠ ଜଣେ ଠିକାଦାର ନ ଦେଇ କଲେଜରେ ତାହା ଦାଖଲ ହୋଇଛି ବୋଲି ରସିଦ୍ ନେଇ ଯାଇଥିଲେ । ଏ ଦୁର୍ନୀତି ପାଇଁ ଯେଉଁମାନେ ଦାୟୀ ସେମାନଙ୍କ ବିଷୟରେ ଅନୁସନ୍ଧାନ କରି ଦଣ୍ଡବିଧାନ ସୁପାରିସ କରିବାକୁ ମୁଁ ଗଙ୍ଗାଧର ରଥଙ୍କୁ ଅନୁରୋଧ କରିବାରୁ ଓଭରସିଅର ଆଉ କଲେଜକୁ ଆସିଲେ ନାହିଁ । ଯେଉଁମାନେ ପାଇଥିଲେ ବୋଲି ରସିଦ୍ ଦେଇଥିଲେ ସେମାନେ ଠିକାଦାରଙ୍କ ଠାରୁ ଆଉ ଗୋଟିଏ ରସିଦ୍ ଆଣିଲେ ଯେ ନ ମିଳିଥିବା ଜିନିଷ ଖରାପ ଥିବାରୁ ସେ ତାକୁ ଫେରାଇ ନେଇଛନ୍ତି ।

ବିଧିବଦ୍ଧ ଭାବରେ ପଢ଼ା ହେଉ ନ ଥିବାରୁ କଲେଜରେ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ବ୍ୟାପକ କପି ହେଉଥିଲା । ଏପରିକି କଟକ ଓ ଅନ୍ୟ ବହୁ ସ୍ଥାନରୁ ପିଲାମାନେ ଜଗତ୍‌ସିଂହପୁର କଲେଜରେ ପରୀକ୍ଷା ଦେବାକୁ ପରୀକ୍ଷା କେନ୍ଦ୍ର ବଦଳାଇ ଦେଉଥିଲେ, କାରଣ ସେଠାରେ କପି କରିବାକୁ ବିଶେଷ ସୁବିଧା ମିଳୁଥିଲା । ମୁଁ ଏ କଥା ଶୁଣି ସେ ବର୍ଷ ଆଇ.ଏ., ବି.ଏ. ପ୍ରଭୃତି ପରୀକ୍ଷାବେଳେ ମୁଁ ନିଜେ ଯାଇ ଦେଖିବି ବୋଲି ପ୍ରିନ୍ସିପାଲଙ୍କୁ କହିଲି । ସେ ମୋତେ କହିଲେ ଯେ ଅଧ୍ୟାପକମାନେ ନିରୀକ୍ଷଣ କାର୍ଯ୍ୟ କଡ଼ାକଡ଼ି ଭାବରେ କରିବେ । ମୋର କଷ୍ଟକରି ସେଠାକୁ ଯିବାର ଆବଶ୍ୟକତା ନାହିଁ । କିନ୍ତୁ ସେ ବର୍ଷ ବିଶ୍ୱବିଦ୍ୟାଳୟର ପରୀକ୍ଷା ସମୀକ୍ଷକମାନେ ପରୀକ୍ଷାବେଳେ ସେ କଲେଜକୁ ଯାଇ ବ୍ୟାପକ କପି ହେଉଥିବା ଦେଖି ବାର୍ଷିକ ଆଇ.ଏ., ଆଇ.ଏସ୍‌ସି., ଆଇ.କମ୍, ଓ ବି.ଏ., ବି.ଏସ୍‌ସି., ବି.କମ୍. ପରୀକ୍ଷା ପ୍ରଭୃତି ପ୍ରାୟ ୧୨୦୦ ପିଲାଙ୍କ ପରୀକ୍ଷା ବାତିଲ୍ କରିବାକୁ ସୁପାରିସ କଲେ ଏବଂ ବିଶ୍ୱବିଦ୍ୟାଳୟ ତାହା ଗ୍ରହଣ କରି ପରୀକ୍ଷାଗୁଡ଼ିକ ବାତିଲ୍ କଲେ । ପରୀକ୍ଷା ବାତିଲ ପରେ ପ୍ରିନ୍ସିପାଲ ଦୀର୍ଘଦିନ ଛୁଟି ନେଇଗଲେ ଏବଂ କଲେଜର ସର୍ବବରିଷ୍ଠ ଅଧ୍ୟାପକ କାର୍ଯ୍ୟକାରୀ ଅଧ୍ୟକ୍ଷ ହୋଇଥିଲେ । ଗଭର୍ଣ୍ଣିଂବଡ଼ିର କେତେକ ସଭ୍ୟ ପରୀକ୍ଷା ବାତିଲ୍ ନ କରିବାପାଇଁ ବିଶ୍ୱବିଦ୍ୟାଳୟର କୁଳପତିଙ୍କୁ ଅନୁରୋଧ କରିବା ପାଇଁ ମୋତେ କହିଲେ । ମୁଁ ସେଥିରେ ରାଜି ହେଲି ନାହିଁ । ମାତ୍ର ମୋର ତତ୍ତ୍ୱାବଧାନରେ ସେ ପିଲାମାନଙ୍କର ଆଉଥରେ ପରୀକ୍ଷା କରିବାପାଇଁ ବିଶ୍ୱବିଦ୍ୟାଳୟକୁ ଅନୁରୋଧ କଲି । ମୋ ଅନୁରୋଧରେ ଆଉଥରେ ପରୀକ୍ଷା ହେଲା । ସେଥିରେ କଲେଜର ସବୁ ଅଧ୍ୟାପକଙ୍କୁ ନିରୀକ୍ଷକ ହେବାକୁ ମୁଁ ବାଧ କଲି ଏବଂ ପରୀକ୍ଷା ଦିନମାନଙ୍କରେ ମୁଁ ନିଜେ କଲେଜରେ ଉପସ୍ଥିତ ରହି ପରୀକ୍ଷା ହଲମାନ ବୁଲି ଦେଖିଲି । ତଥାପି ସେ ପରୀକ୍ଷାରେ କପି କରୁଥିବା ହେତୁ ପ୍ରାୟ ପନ୍ଦର ଜଣ ପରୀକ୍ଷାର୍ଥୀଙ୍କୁ ହଲମାନଙ୍କରୁ ବାହାର କରି ଦିଆଯାଇଥିଲା । ଦ୍ୱିତୀୟଥର ପରୀକ୍ଷା କରି ଫଳ ବାହାର କରିବାକୁ ପ୍ରାୟ ଚାରିପାଞ୍ଚ ମାସ ଲାଗିଗଲା । ଫଳରେ ସେ ପରୀକ୍ଷାରେ ପାସ୍ କରିଥିବା ପିଲାମାନେ ସେ ବର୍ଷ ଉପର ଶ୍ରେଣୀମାନଙ୍କରେ ନାମ ଲେଖାଇପାରିଲେ ନାହିଁ । ପରୀକ୍ଷାମାନଙ୍କରେ କପି କରାଇ ନ ଦେବାରୁ ଏବଂ ସବୁ ଅଧ୍ୟାପକଙ୍କୁ ନିରୀକ୍ଷଣ କାର୍ଯ୍ୟ କରିବାକୁ ବାଧ କରିବାରୁ ମୁଁ ଅନେକ ଛାତ୍ର ଓ ଅଧ୍ୟାପକଙ୍କର ଅପ୍ରୀତିଭାଜନ ହୋଇଥିଲି ।

ସେ କଲେଜରେ ଗଭର୍ଣ୍ଣିଂବଡ଼ିର ତିନିବର୍ଷ ଅଧ୍ୟକ୍ଷ ରହିଥିବା ସମୟରେ ଯେଉଁ ଅଧ୍ୟାପକମାନେ ନିୟମ ଅନୁସାରେ କ୍ଲାସ ନେଉ ନ ଥିଲେ ସେମାନଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା କରିଥିଲି ଏବଂ ପିଲାମାନଙ୍କଠାରୁ ଚାନ୍ଦା ଆଦାୟ କରି ନିମ୍ନମାନର ଏମ୍.ଏ. କ୍ଲାସ ଖୋଲିବା ବନ୍ଦ କରି ଦେଇଥିଲି । ଯେଉଁ ଅଧ୍ୟାପକମାନେ କଲେଜର ବିଭିନ୍ନ କାର୍ଯ୍ୟପାଇଁ ଅଫିସ୍‌ରୁ ଟଙ୍କା ଅଗ୍ରିମ ନେଇ ଖର୍ଚ୍ଚ ହିସାବ ଓ ଭାଉଚର ଦେଇ ନ ଥିଲେ, ସେମାନଙ୍କୁ ମାସକ ମଧ୍ୟରେ ତାହାକୁ ଦେବାକୁ ବାଧ କରୁଥିଲି ଏବଂ କଲେଜର ହିସାବପତ୍ର ଅଡିଟ୍

କରିବାର ବ୍ୟବସ୍ଥା କରିଥିଲି । ଯେଉଁ ଅଧ୍ୟାପକମାନେ କଲେଜ ହତାରେ ଘର ପାଇ ସେ ଘରକୁ ଅନ୍ୟମାନଙ୍କୁ ଦେଇ ଅନ୍ୟ ସ୍ଥାନରେ ରହୁଥିଲେ ସେମାନଙ୍କୁ ସେ ଘରେ ରହିବାକୁ ନଚେତ୍ ଘର ଛାଡ଼ିବାକୁ ବାଧ କରିଥିଲି । ଜଣେ ଅଧ୍ୟାପକ ବହୁବର୍ଷ ଧରି ନିୟମବିରୁଦ୍ଧ ଭାବରେ ଗୋଟିଏ ଘର ଅଧିକାର କରିଥିଲେ । ମୋ ଯିବାପୂର୍ବରୁ କଲେଜ କର୍ତ୍ତୃପକ୍ଷ ତାଙ୍କୁ ସେ ଘର ଛାଡ଼ିବାକୁ ଅନେକଥର ନୋଟିସ୍ ଦେଇଥିଲେ, ମାତ୍ର ସେ ତାହା ମାନି ନ ଥିଲେ । ତେଣୁ ତାଙ୍କୁ ସରକାରୀ ଇଞ୍ଜିନିଅରଙ୍କ ଦ୍ୱାରା ନିର୍ଦ୍ଧାରିତ ବଜାର ଦରରେ ଘରଭଡ଼ା ଦେବାକୁ ନୋଟିସ୍ ଦିଆଗଲା । ସେ ସେ ଘରେ ରହିବାକୁ ଜଣେ ରାଜନୈତିକ କର୍ମୀଙ୍କ ମାଧ୍ୟମରେ ଶିକ୍ଷାମନ୍ତ୍ରୀଙ୍କ ଠାରୁ ସୁପାରିସ ଆଣିଥିଲେ ସୁଦ୍ଧା ମୋ ସୁପାରିସ୍‌ରେ ଗଭର୍ଣ୍ଣିଂବଡ଼ି ତାହା ଗ୍ରହଣ କରି ନ ଥିଲା । କଲେଜ କାର୍ଯ୍ୟରେ ଏବଂ କଲେଜରେ ଶୃଙ୍ଖଳା ରଖିବା ଉଦ୍ୟମରେ ରାଜନୈତିକ କର୍ମୀମାନଙ୍କର ହସ୍ତକ୍ଷେପକୁ ମୁଁ ଘୋର ବିରୋଧ କରୁଥିଲି । ଫଳରେ ମୁଁ ଅନେକ ଛାତ୍ର, ଅଧ୍ୟାପକ ଓ ରାଜନୈତିକ କର୍ମୀଙ୍କର ବିରାଗଭାଜନ ହୋଇଥିଲି । ଏହିପରି ତିନି ବର୍ଷ ବିତିଗଲା । ଏଥିମଧ୍ୟରେ ମୁଁ ଭୁବନେଶ୍ୱରରେ ରହୁଥିବାରୁ କଲେଜର ଦୈନନ୍ଦିନ କାର୍ଯ୍ୟ ନିରୀକ୍ଷଣ କରିବା ସମ୍ଭବ ହେଉ ନ ଥିବାରୁ ଏବଂ ଦୀର୍ଘଦିନଧରି କଲେଜରେ ସ୍ଥାୟୀ ପ୍ରିନ୍ସିପାଲ ନ ଥିବାରୁ, ମୁଁ ଗଭର୍ଣ୍ଣିଂବଡ଼ି ସଭାପତି ପଦରୁ ଇସ୍ତଫା ଦେଇଥିଲି । ମାତ୍ର ଶିକ୍ଷାମନ୍ତ୍ରୀଙ୍କ ଅନୁରୋଧରେ ସେ ଇସ୍ତଫା ଗ୍ରହଣ ନିମିତ୍ତ ଚାପ ଦେଇ ନ ଥିଲି ।

ତିନିବର୍ଷ ପୂର୍ଣ୍ଣ ହେବା ପରେ ଶିକ୍ଷାବିଭାଗ ମୋତେ ସେହି ପଦରେ ଆଉ ତିନିବର୍ଷ ରହିବାପାଇଁ ମନୋନୀତ କଲେ ଏବଂ ନିୟମ ଅନୁସାରେ ଗଭର୍ଣ୍ଣିଂବଡ଼ିର ଅନ୍ୟ ସଭ୍ୟମାନଙ୍କର ନାମତାଲିକା ଦେବାକୁ ମୋତେ ଚିଠିଦେଲେ । ଏ କଥା ଜାଣି ମୋର କଠୋର ଶୃଙ୍ଖଳା ରକ୍ଷା କାର୍ଯ୍ୟକୁ ବିରୋଧ କରୁଥିବା କେତେକ ଅଧ୍ୟାପକ ରାଜନୈତିକ ନେତାଙ୍କ ମାଧ୍ୟମରେ ମୋତେ ସେ ପଦରେ ଆଉ ମନୋନୀତ ନ କରିବାକୁ ଶିକ୍ଷାମନ୍ତ୍ରୀଙ୍କୁ ବହୁବାର ଅନୁରୋଧ କଲେ । ଶେଷରେ ଶିକ୍ଷାମନ୍ତ୍ରୀ ମୋ ମନୋନୟନକୁ ପ୍ରତ୍ୟାହାର କରି ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଗଭର୍ଣ୍ଣିଂବଡ଼ିର ସଭାପତି କଲେ । ଏ ଆଦେଶ ଡି.ପି.ଆଇ. ମୋତେ ଜଣାଇବାକୁ ଅନିଚ୍ଛା ପ୍ରକାଶ କଲେ । ସେତେବେଳକୁ ଶ୍ରୀନିବାସବାବୁ ସେ ପଦରେ ନ ଥିଲେ । ଏ କଥା ଜାଣି ମୋ କାର୍ଯ୍ୟକୁ ସମର୍ଥନ କରୁଥିବା କେତେକ ଅଧ୍ୟାପକ ଏବଂ ରାଜନୈତିକ ନେତା ହାଇକୋର୍ଟରେ ରହିତାଦେଶ ଆଣିବାପାଇଁ ଆବେଦନ କରି ରହିତାଦେଶ ଆଣିଲେ । ଅନ୍ୟ କେତେଜଣ ଲୋକ ମୋର ସଭାପତି ମନୋନୟନ ପ୍ରତ୍ୟାହାର ନ କରି ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ନିଯୁକ୍ତି ଦେବା ବିରୋଧରେ ହାଇକୋର୍ଟରେ ମକଦ୍ଦମା କଲେ । ମୋତେ କେନ୍ଦ୍ର କରି ହାଇକୋର୍ଟରେ ଏତେ ମକଦ୍ଦମା ଏବଂ ଦଳାଦଳି ହେଉଥିବା ଦେଖି ମୁଁ ମର୍ମାହତ ହେଲି । ମାତ୍ର କଲେଜକୁ ନ ଯାଇ ଏବଂ ହାଇକୋର୍ଟରେ ମକଦ୍ଦମା କରୁଥିବା ଲୋକମାନଙ୍କ ସହିତ ଯୋଗାଯୋଗ ନ କରି ମୁଁ ଅଶାନ୍ତ ମନରେ ମୌନ ଭାବରେ ଘରେ ରହିଲି । ଶେଷରେ ମୋର ଏ ବିଷୟରେ ଉଦାସୀନତା ଜାଣି

ହାଇକୋର୍ଟ ଗହିତାଦେଶ ଉଠାଇ ଦେଲେ ଏବଂ ଜିଲ୍ଲା ମାଜିଷ୍ଟ୍ରେଟ ଗଭର୍ଣ୍ଣିଂବଡ଼ିର ସଭାପତି ହେଲେ । ମୁଁ ସେହିଦିନୁ ଆଉ ସେ କଲେଜକୁ ଯାଇ ନାହିଁ । ପରେ ଶୁଣିଲି ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଅଧ୍ୟକ୍ଷତାରେ ଗଭର୍ଣ୍ଣିଂ ବଡ଼ି ଯେଉଁ ଅଧ୍ୟାପକ ନିୟମ ବିରୋଧରେ କଲେଜ ଘର ଅଧିକାର କରିଥିଲେ, ତାକୁ ରାଜନୈତିକ ଚାପରେ ନିୟମିତ କଲେ ଏବଂ ଯେଉଁ ଠିକାଦାର ଦ୍ୱାରବନ୍ଧ, ଝରକା ପ୍ରଭୃତି ନ ଦେଇ ମିଛ ରସିଦ୍ କରାଇ ନେଇଥିଲେ, ସେ ଠିକାଦାର ସେ ଦ୍ୱାରବନ୍ଧ ଓ ଝରକା ପ୍ରଭୃତି ଦେଇଦେବାରୁ ତାର ଦୋଷ କ୍ଷମା କରିଦେଲେ । ଏ ବିଷୟରେ ମୋ ମନରେ କେବଳ ଏତିକି ପ୍ରଶ୍ନ ଉଠିଥିଲା ଯେ, ଚୋର ଚୋରି କରି ଚୋରି ଜିନିଷ ଫେରାଇଦେଲେ ଚୋରି ଅପରାଧରୁ ମୁକ୍ତ ହୋଇଯାଏ କି ? ମାତ୍ର ଆମ ଦେଶରେ ଆଜିର ସମାଜରେ ଏ ସବୁ ସମ୍ଭବ ।

ଏ ଘଟଣାର କେତେକ ବର୍ଷ ପରେ ପରିସ୍ଥିତି ବଦଳିଗଲା । ରାଜ୍ୟରେ ନିର୍ବାଚନରେ ଅନ୍ୟଦଳ ସରକାରକୁ ଆସିଲେ । ସେମାନେ ନିୟମ କଲେ ଯେ ପ୍ରତି ନିର୍ବାଚନ ମଣ୍ଡଳୀର ବିଧାନସଭା ସଦସ୍ୟ ସେ ନିର୍ବାଚନ ମଣ୍ଡଳୀରେ ଥିବା ସବୁ କଲେଜର ଗଭର୍ଣ୍ଣିଂବଡ଼ିର ସଭାପତି ହେବେ । ସେହି ନିୟମ ଅନୁସାରେ ମୁଁ କୁଳପତି ଥିବା ସମୟରେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କପି କରି ଦଣ୍ଡିତ ହୋଇଥିବା କେତେକ ଯୁବକ ଅଳ୍ପ କେତେବର୍ଷ ପରେ ବିଧାନସଭାରେ ସଭ୍ୟ ହୋଇ ତାଙ୍କ ନିର୍ବାଚନ ମଣ୍ଡଳୀରେ ଥିବା ଦୁଇ ତିନି ବା ତତୋଽଧିକ କଲେଜର ଗଭର୍ଣ୍ଣିଂବଡ଼ିର ସଭାପତି ହୋଇଥିଲେ । ସେମାନେ କଲେଜର ପରୀକ୍ଷାର୍ଥୀ ଏବଂ ଅଧ୍ୟାପକମାନଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷା କରିବାକୁ କିପରି ସମର୍ଥ ହୋଇଥିବେ ଏ ଘଟଣାମାନଙ୍କରୁ ତାହା ଅନୁମାନ କରିବା କଥା । ସେହି ସରକାରଙ୍କ ସମୟରେ ଜଗତ୍‌ସିଂହପୁର ନିର୍ବାଚନ ମଣ୍ଡଳୀର ବିଧାନସଭା ସଦସ୍ୟ ଜଗତ୍‌ସିଂହପୁର କଲେଜ ଗଭର୍ଣ୍ଣିଂବଡ଼ିର ପୁନର୍ବାର ସଭାପତି ହେବାକୁ ମୋତେ ଏକାଧିକବାର ଅନୁରୋଧ କରିଥିଲେ । ସେ ମୋତେ ବହୁ ଆଗରୁ ଜାଣିଥିଲେ ଏବଂ ମୋର କଠୋର କାର୍ଯ୍ୟକୁ ସମର୍ଥନ କରୁଥିଲେ । ମୁଁ ତାଙ୍କୁ କେବଳ ଏତିକି କହିଲି, ‘‘ଆଖ୍ୟାୟି ଭଦ୍ରେ ପ୍ରିୟ ଦର୍ଶନାୟ, ନ ଗଙ୍ଗଦତ୍ତ ପୁନରପି କୂପଂ’’ । ଯେଉଁମାନେ ସେ ସଂସ୍କୃତ ଗଳ୍ପ ପଢ଼ିଥିବେ ସେମାନେ ଏହାର ଅର୍ଥ ବୁଝିବେ ।

ଏ ଅପ୍ରୀତିକର କଥାଗୁଡ଼ାକ ଏପରି ବିଶଦ ଭାବରେ ବର୍ଣ୍ଣନା କରିବାରେ ମୋର ଗୋଟିଏ ଉଦ୍ଦେଶ୍ୟ ଅଛି । ଜଗତ୍‌ସିଂହପୁର କଲେଜ ଆମ ରାଜ୍ୟର ବେସରକାରୀ କଲେଜମାନଙ୍କର ଗୋଟିଏ ନମୁନା ମାତ୍ର । ସେ କଲେଜ ଗୋଟିଏ ବଡ଼ କଲେଜ, ସେଥିରେ ତିନିହଜାରରୁ ଅଧିକ ପିଲା ପଢ଼ନ୍ତି ଏବଂ ରାଜ୍ୟ ସରକାର ପ୍ରତ୍ୟକ୍ଷ ଭାବରେ ଶିକ୍ଷକ ଏବଂ ଅଣଶିକ୍ଷକ କର୍ମଚାରୀମାନଙ୍କର ଦରମା ପ୍ରଦାନ କରନ୍ତି । ସେଥିରେ ଶିକ୍ଷାଦାନ, ପରୀକ୍ଷା ପରିଚାଳନା, ଛାତ୍ରଛାତ୍ରୀ ଏବଂ ଅଧ୍ୟାପକମାନଙ୍କ ମଧ୍ୟରେ ଶୃଙ୍ଖଳା ଏବଂ ରାଜନୈତିକ କର୍ମୀ, ନେତା ଓ ଅପରାଧୀମାନଙ୍କର ଦୌରାତ୍ମ୍ୟ କିପରି, ତାହା

ଉପରେ ବର୍ଣ୍ଣିତ ହୋଇଛି । ସେହିପରି ଆମ ରାଜ୍ୟରେ ସ୍ୱୀକୃତିପ୍ରାପ୍ତ ଏବଂ ଅଣସ୍ୱୀକୃତି ପ୍ରାପ୍ତ ପ୍ରାୟ ଏକହଜାର କଲେଜ ଅଛି । ସେଥିରେ ହଜାର ହଜାର ଟଙ୍କା ଦେଇ ଅଧ୍ୟାପକମାନେ ଚାକିରି ପାଇଛନ୍ତି । ସେମାନେ ମାସକୁ ମୋଟେ ଚାରି ପାଞ୍ଚ ଶହ ଟଙ୍କା ଦରମା ପାଉଛନ୍ତି । କଲେଜ ସ୍ୱୀକୃତି ପାଇଲେ ଏବଂ ସରକାର ପ୍ରତ୍ୟକ୍ଷ ଭାବରେ ଦରମା ପ୍ରଦାନ କଲେ, ଭବିଷ୍ୟତରେ ସେମାନେ ନିୟମିତ ଭାବରେ ଦରମା ପାଇବା ଆଶାରେ ବର୍ଷ ବର୍ଷ ଧରି ଏପରି ହୀନ ଭାବରେ ଅଛନ୍ତି । କଲେଜମାନଙ୍କରେ ପାଠପଢ଼ାର ନିମ୍ନତମ ସୁବିଧା ନାହିଁ ଓ ବିଧିବଦ୍ଧ ପାଠପଢ଼ା ହୁଏ ନାହିଁ । ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ପାସ କରିବାକୁ ପିଲାମାନେ ବ୍ୟାପକ ଭାବରେ କପି କରନ୍ତି । କଲେଜ କରିବା, ସେଥିରେ ଛାତ୍ରଛାତ୍ରୀମାନଙ୍କର ନାମ ଲେଖାଇବା, ସେମାନଙ୍କୁ ପରୀକ୍ଷାରେ ପାସ୍ କରାଇବାକୁ ସାହାଯ୍ୟ କରିବା, ନିଜର ଲୋକମାନଙ୍କୁ କଲେଜର ଅଧ୍ୟାପକ ବା ଅନ୍ୟ କର୍ମଚାରୀ ରୂପେ ନିଯୁକ୍ତ କରିବା ଏବଂ ସେମାନଙ୍କୁ ନିଜର ବିଭିନ୍ନ କାର୍ଯ୍ୟରେ ଲଗାଇବା ସାଧାରଣତଃ ବହୁ ରାଜନୈତିକ ନେତାଙ୍କ କାର୍ଯ୍ୟ । ଏହାର ଫଳ ଯାହା ହେଉଛି ତାହା ଦେଶବାସୀ ପ୍ରତିବର୍ଷ ଦେଖୁଛନ୍ତି । ତାହାସବୁ ବର୍ଣ୍ଣନା କରିବାର ଆବଶ୍ୟକତା ନାହିଁ । ସଂସ୍କୃତରେ ଗୋଟିଏ ନୀତିବାକ୍ୟ ଅଛି, 'ଅଳମତି ବିସ୍ତରେଣ' ।

ଜଗତ୍‌ସିଂହପୁର କଲେଜର ଘଟଣାମାନଙ୍କ ପରେ ମୋର ଆଉ ବର୍ତ୍ତମାନର ଶିକ୍ଷାନୁଷ୍ଠାନମାନଙ୍କର ସଂସ୍କାର ଓ ପୁନର୍ଗଠନ କରିବାର ଆଗ୍ରହ ନ ଥିଲା । ସେ ପ୍ରୟାସରେ ମୁଁ ପରାଜିତ ହୋଇଥିଲି । ଚତୁରତା ମୋ ଚରିତ୍ରର ଗୋଟିଏ ଲକ୍ଷଣ ବୋଲି କେହି କହିବାର ମୁଁ ଶୁଣି ନାହିଁ । ବରଂ ଚତୁର ଭାବରେ ଦୁଷ୍ଟ ପିଲାମାନଙ୍କୁ ଏବଂ ବିଶୃଙ୍ଖଳିତ ଅନୁଷ୍ଠାନମାନଙ୍କୁ ଚଳେଇ ପାରେ ନାହିଁ ଏବଂ ବିଶୃଙ୍ଖଳା ଓ ଅନ୍ୟାୟ ପ୍ରତି ମୁଁ ମାତ୍ରାଧିକ କଠୋର ହୋଇଯାଏ ବୋଲି ଅନେକ ଲୋକ ମୋତେ ସମାଲୋଚନା କରନ୍ତି । ସେ ଯାହାହେଉ, ଶେଷରେ ବଙ୍କାକୁ ସିଧା କରିବା ଏବଂ ସବୁ ସ୍ଥାନରେ ଅନୀତି ସ୍ଥାନରେ ସୁନୀତି ଆଣିବାର ପ୍ରୟାସ ମୁଁ ଛାଡ଼ିଲି । ସେତେବେଳେ ମୋର ମନେହେଉଥିଲା ବର୍ତ୍ତମାନ ଆମ ଦେଶରେ ରାଜନୈତିକ ଓ ସାମାଜିକ କ୍ଷେତ୍ରରେ ଯେଉଁ ନୂତନ ପ୍ରକାର ମୂଲ୍ୟବୋଧର ଜୁଆର ମାଡ଼ିଆସୁଛି ସେଥିରେ ପୁରୁଣାକାଳିଆ ମୂଲ୍ୟବୋଧ ସହ ମୋ ପରି ଜଣେ ବ୍ୟକ୍ତି ସାମାନ୍ୟ କୁଟାଖଣ୍ଡ ପରି ଭାସି ଚାଲିଯିବ । ତେଣୁ ଶାନ୍ତି ପାଇବା ପାଇଁ ମୁଁ ମୋର ପୁରୁଣା ବ୍ୟବସାୟ ଗବେଷଣା ଓ ଲେଖାଲେଖିର ଆଶ୍ରୟ ନେଲି ।

ଲେଖା ଆରମ୍ଭ କରିବାବେଳେ ପ୍ରଶ୍ନ ଉଠିଲା, କଅଣ ଲେଖିବି ? ଇଂରାଜୀରେ ନା ଓଡ଼ିଆରେ ଲେଖିବି ? ପିଲାଦିନେ ଗୋଟିଏ ଗଳ୍ପ ପଢ଼ିଥିଲି । ସେଥିରେ ଜଣେ ବଡ଼ଭାଇ ସାନଭାଇକୁ ଗଳ୍ପ କହିବାକୁ ଯାଇ କହୁଛି, "କଅଣ କହିବି ? ଦୁଃଖ କହିବି ନା ସୁଖ କହିବି ? ଯାହା ଅଙ୍ଗେ ଲିଭାଇଛି ତାହା କହିବି ।" ସେହି ପନ୍ଥା ଅନୁସରଣ କରି ମୋର ଦୀର୍ଘ ଜୀବନରେ ଅଙ୍ଗେ ଲିଭାଇଥିବା କଥାସବୁ ମାତୃଭାଷାରେ ଲେଖିବାକୁ ଆରମ୍ଭ କଲି ।

ପଛକୁ ଚାହିଁ ଦେଖିଲି ଜୀବନର ଏକ ଶତାବ୍ଦୀର ପାଞ୍ଚଭାଗରୁ ଚାରିଭାଗ ବହିଗଲାଣି । କାଳର ସ୍ରୋତ ନଦୀର ସ୍ରୋତଠାରୁ ଅଧିକ ବେଗରେ ବହିଯାଇଛି । ଯଦିଓ ଅନନ୍ତକାଳ ମଧ୍ୟରେ ଏକଶହ ବର୍ଷ ନଗଣ୍ୟ, ତଥାପି ଏହି ଅଶୀବର୍ଷ ମଧ୍ୟରେ ଅସଂଖ୍ୟ ଲୋକଙ୍କ ସମ୍ପର୍କରେ ଆସିଛି । ସେମାନଙ୍କ ମଧ୍ୟରୁ ବହୁଲୋକ କାଳଗର୍ଭରେ ଲୀନ ହୋଇଗଲେଣି । ବହୁ ନୂତନ ଲୋକ ସେ ସ୍ରୋତରେ ଯୋଗ ଦେଇଛନ୍ତି । କାଳସ୍ରୋତରେ ବହୁ ଘଟଣା ସହ ମୁଁ ଭାସିଚାଲିଛି । ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ, ଆମ ଗାଁ ଠାରୁ ଆରମ୍ଭ କରି ପୃଥିବୀର ବିଭିନ୍ନ ଦେଶ ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନମାନଙ୍କରେ ଯେଉଁ ଘଟଣାମାନ ମୁଁ ଅନୁଭବ କରିଛି ଏବଂ ଯେଉଁ ସାଙ୍ଗ, ସାଥୀ, ଶିକ୍ଷକ, ସହକର୍ମୀ,ଗାଁଲୋକ ଏବଂ ପଡ଼ୋଶୀମାନଙ୍କ ସହିତ ମୁଁ ଚଳିଥିଲି ସେହିମାନଙ୍କ ବିଷୟ ଲେଖିଚାଲିଲି । ସେ ଲେଖାରେ ଆସିଲା ଆମ ପରିବାର ଓ ଗାଁ ଲୋକଙ୍କ କଥା, ବାଲ୍ୟବନ୍ଧୁ ଓ ଶିକ୍ଷକ, ହରିଆ ଜେନା, ମାଗୁଣି ମିଶ୍ର, ବିକଳା ଷଡ଼ଙ୍ଗୀ, ନରହରି ଆପଣେ ଓ ନାରଣମାଷ୍ଟ୍ରଙ୍କ କଥା, କଟକ, ପାଟନା, ଲଣ୍ଡନ, ପାରିସ୍‌, ନିଉୟର୍କ ସହର କଥା, ରେଭେନ୍ସା କଲେଜିଏଟ୍ ସ୍କୁଲ୍‌, ରେଭେନ୍ସା କଲେଜ, ପାଟନା କଲେଜ, ଗଙ୍ଗାଧର ମେହେର କଲେଜ ଓ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ, ଉତ୍କଳ ବିଶ୍ୱବିଦ୍ୟାଳୟ ଏବଂ ବାଣୀବିହାର କଥା, ପ୍ରାଣକୃଷ୍ଣ ପରିଜା, ଚିନ୍ତାମଣି ଆଚାର୍ଯ୍ୟ, ଘନଶ୍ୟାମ ଦାସ, ମାୟାଧର ମାନସିଂହ, ସଦାଶିବବାବୁ, ସାଧୁବାବୁ, ଶ୍ରୀରାମବାବୁ ଏବଂ ଦୁର୍ଗାପ୍ରସାଦ ବରାଳ ପ୍ରଭୃତିଙ୍କ କଥା ଏବଂ ରାଜ୍ୟର ବଢ଼ି, ମରୁଡ଼ି, ଦାରିଦ୍ର୍ୟ, ରାଜା, ଜମିଦାର, ମହାଜନ, ସ୍ୱାଧୀନତା ସଂଗ୍ରାମ ପ୍ରଭୃତି ବହୁ ଘଟଣା । ଦରିଦ୍ର ପଲ୍ଲୀଠାରୁ ପୃଥିବୀର ସର୍ବବୃହତ୍ ସହରମାନ ଏବଂ ସୁଦୀନ ମନୁଷ୍ୟଠାରୁ ମହାଯଶା ମହୀପତିମାନେ ସେଥିରେ ସ୍ଥାନ ପାଇଲେ । ଶେଷ ପର୍ଯ୍ୟାୟରେ ଅତୀତର ସ୍ମୃତି ସୁଦୂର ଓ ଅସ୍ପଷ୍ଟ ହୋଇ ଆସୁଛି, ଲେଖା ଶିଥିଳ ହୋଇଆସୁଛି ଏବଂ ଜୀବନ ସ୍ରୋତ ମନ୍ଥର ହୋଇଆସୁଛି । ଅଦୂରରେ ମହାସିନ୍ଧୁର ଅନନ୍ତ ଅସୀମ ରୂପ ଦିଶୁଛି ।

---